# ସ୍ମୃତିରେଖା

(କିଛି ଦେଖାଶୁଣା ଉପାଖ୍ୟାନ ଓ ପ୍ରସଙ୍ଗ)

## ବିଷ୍ଣୁଚରଣ ମହାନ୍ତି

ପ୍ରକାଶକ :

ଅଗ୍ନି

୧୦୪୬-ଡି, ଚଣ୍ଡିମାତା କଲୋନୀ,

ରସୁଲଗଡ଼, ଭୁବନେଶ୍ୱର-୭୫୧୦୧୦

ପ୍ରଥମ ସଂସ୍କରଣ :

ଉତ୍କଳ ଦିବସ -୨୦୦୮

ପ୍ରଚ୍ଛଦ :

କ୍ଷୀରୋଦ ଚନ୍ଦ୍ର ପତି

ମୁଦ୍ରଣ :

ଅପୂର୍ବା ଅଫ୍‌ସେଟ୍, ଭୁବନେଶ୍ୱର

ମୂଲ୍ୟ :

୧୨୦ଟଙ୍କା ମାତ୍ର

**SMRUTIREKHA**

*by* **Bishnu Charan Mohanty**

Publisher : **Agni**, Bhubaneswar

First Edition : Utkal Dibas, 2008

Printed at : Apurba Off-Set, Bhubaneswar

Cove : Kshirod C. Pati

**Price : Rs.120 /-**(One hundred twenty only)

**ହେମନ୍ତ କୁମାର ଦାସ**
*ସଦସ୍ୟ (ଅ.ପ୍ରା), ଓଡ଼ିଶା ଲୋକସେବା ଆୟୋଗ*
*୩୬୦, ଶହୀଦ୍‌ନଗର, ଭୁବନେଶ୍ୱର*

# ସ୍ମୃତିରେଖାର ପ୍ରଥମ ପାଠକ ମନକଥା

ସଜତୋଳା ବଉଳ ଫୁଲର ନିଜସ୍ୱ ସୁଗନ୍ଧତ ନିଶ୍ଚୟ ରହିଛି, ହେଲେ ଝରାବଉଳର ଭୀରୁ ମହକ ମଧ ସେହି ସୁଗନ୍ଧଠାରୁ କୌଣସି ଗୁଣରେ ନ୍ୟୁନ ନୁହେଁ । ଉଦୟ ସୂର୍ଯ୍ୟର ଅମାପ ସମ୍ଭାର ହୃଦୟକୁ ଆହ୍ଲାଦିତ କରେ, ମନକୁ ଉତଲା କରେ । କିନ୍ତୁ ରତରତ କରୁଥିବା ତାଆଣୀଆ ଖରାର ବିଦାୟ ରାଗିଣୀ ମନରେ ଭିନ୍ନ ସ୍ୱାଦର ଯେଉଁ ଭାବନା ଭରିଦିଏ ତାହାର ମାଦକତା ବି କିଛି କମ୍ ନୁହେଁ । ବେଳଗଡି ଯିବା ସହିତ ବାଟଚଲା ସରି ସରି ଆସେ । ପାଦ ଥକି ପଡ଼େ । ମନ ଡାକେ, ଅନ୍ଧାର ଘୋଟିଯିବା ପୂର୍ବରୁ, ମୁହଁ ଫେରାଇ, ପଛରେ ଛାଡ଼ି ଆସିଥିବା ସେହି ଅଙ୍କାବଙ୍କା ପକାଉଠା ଡଗର ଉପରେ ଆଉ ଥରଟାଏ କ୍ଳାନ୍ତ ଆଖି ଦୁଇଟାକୁ ପହଁରାଇ ଆଣିବାକୁ । ସତରେ, ସ୍ଥାନ କାଳ ପାତ୍ର ଉପରେ ଦୂରତ୍ୱ ଯେଉଁ ରଙ୍ଗମାଖିଦିଏ ତାହା ଏପରି ଆକର୍ଷଣୀୟ କାହିଁକି ? ପଛକୁ ଚାହିଁଲେ ବିତିଲା ଦିନ ଆଉ ହଜିଲା ମୁହଁ ଗୁଡାକ ଜୀବନ୍ତ ହୋଇ ଉଠନ୍ତି । ମନ ହୁଏ ସବୁକିଛିକୁ ସାଉଁଟି ଧରିବାକୁ । ସେଦିନର ସୁଖଦୁଃଖ, ଭଲମନ୍ଦ, ହସକାନ୍ଦ ସବୁ ଫେଣ୍ଟି ହୋଇ ଏକାକାର ହୋଇଉଠେ । ମନର ଏହି ଆବେଗିକ ପ୍ରକ୍ରିୟାକୁ ରୂପବନ୍ତ କରିବାରେ ଯେଉଁ ଅଦୃଶ୍ୟ ଶକ୍ତି କାମ କରେ ତାହାର ନାମ ହେଉଛି "ସ୍ମୃତି" । ଏହି ସ୍ମୃତି ଏପରି ଏକ ବସ୍ତୁ ଯାହାକୁ ସାଇତି ରଖିଲେ ମଉଳି ଯାଏ, ଉଜୁଡ଼ି ଯାଏ । ଅଥଚ ବାଣ୍ଟି ଚାଲିଲେ ତାହା ଶୁକ୍ଳପକ୍ଷର ଚନ୍ଦ୍ରକଳା ପରି ବୃଦ୍ଧିପାଏ । ହେଲେ ଏହି ସ୍ମୃତି ବାଣ୍ଟିବା କାମଟି ସମସ୍ତଙ୍କ ଦେହି ହୁଏ ନାହିଁ । କାରଣ, ସ୍ମୃତି ବାଣ୍ଟିବା ହେଉଛି ଏକ ସାରସ୍ୱତ ପ୍ରେରଣା ଓ ସ୍ୱତନ୍ତ୍ର କଳା । ଏହା ସମସ୍ତଙ୍କର ନଥାଏ ।

ସୁଖର କଥା, ଜୀବନରେ ୮୬ଟି ବର୍ଷାବସନ୍ତ ଅତିକ୍ରାନ୍ତ ହୋଇଥିବା ସତ୍ତ୍ୱେ, ବହୁ ବିରଳ ଗୁଣଧର ପୁରୁଷ ଶ୍ରୀଯୁକ୍ତ ବିଷ୍ଣୁଚରଣ ମହାନ୍ତିଙ୍କ ଠାରେ, ସେହି ପ୍ରେରଣା ଓ କଳା ଏବେ ମଧ ଭରପୂର ରହିଛି । ତାଙ୍କର ଅନନ୍ୟ ସ୍ମରଣଶକ୍ତି, ପ୍ରଜ୍ଞାସିକ୍ତ ସରଳତା, ନିର୍ଭୀକ ସ୍ପଷ୍ଟବାଦିତା ଓ ପ୍ରଗଳଭ ବାକ୍‌ଶକ୍ତିର ଝଲକ ତଥାପି ବିସ୍ମୟକର ଭାବେ ଅନାହତ !

ଇଂରାଜୀ, ଓଡ଼ିଆ, ବଙ୍ଗଳା ଓ ସଂସ୍କୃତ କାବ୍ୟ କବିତା ଅଧ୍ୟୟନ କରିବା ତାଙ୍କର ଏକ ଜୀବନ ବିଳାସ । ବିଚାର ଓ ଶାସନ ବିଭାଗର ଜଣେ ସୁଦକ୍ଷ ଅଧିକାରୀ ଭାବେ ଓଡ଼ିଶାର ବିଭିନ୍ନ ପ୍ରାନ୍ତ-ଉପାନ୍ତରେ କାର୍ଯ୍ୟକରିଥିବା ଶ୍ରୀଯୁକ୍ତ ମହାନ୍ତି ବହୁ ମହାର୍ଘ ଅନୁଭୂତିର ଏକ ଜୀବନ୍ତ ଭଣ୍ଡାର । ଭୁବନେଶ୍ୱର ଇନ୍ଦିରା ପାର୍କରେ ନିର୍ଦ୍ଦିଷ୍ଟ କେତେକ ବରିଷ୍ଠ ନାଗରିକଙ୍କ ସାନ୍ଧ୍ୟ ଆସରକୁ ଦିନେ ଦିନେ ଶ୍ରୀଯୁକ୍ତ ମହାନ୍ତିଙ୍କ ଆବିର୍ଭାବ ପ୍ରାଣବନ୍ତ କରିଦିଏ । ବିଭିନ୍ନ ଆଲୋଚିତ ବିଷୟର ପ୍ରାସଙ୍ଗିକତା ଭଙ୍ଗ ନକରି ସେଦିନ ସେ ତାଙ୍କ ଅନୁଭୂତି ଭରା ସ୍ମୃତିମାନ ବଖାଣି ବସନ୍ତି । ସେହି ବଖାଣ ଭିତରେ ଜୀବନ୍ୟାସ ପାଇ ଉଠେ ଅତୀତର କେତେ କେତେ ସ୍ମରଣୀୟ ଘଟଣା, ବର୍ଣ୍ଣିତ ହୋଇଯାଏ କେତେ କେତେ ଶିକ୍ଷଣୀୟ ଅନୁଭୂତି । ସେହି କ୍ରମରେ ବିଗତ ଦିନରକେତେ କେତେ ପ୍ରଣମ୍ୟ ପୁରୁଷଙ୍କର ମାନସିକ ଅର୍ଚ୍ଚନା ହୋଇଯାଏ । ପ୍ରତିଟି ବାଖ୍ୟାନ ପଛରେ ମହଯୁଦ୍ ପ୍ରାମାଣିକ ତଥ୍ୟ । ବର୍ଣ୍ଣିତ ଘଟଣାର ପ୍ରମୁଖ ଚରିତ୍ରଙ୍କ ମୁହଁରେ ସେମାନଙ୍କ ନିଜସ୍ୱ ଭାଷାର ଉଦ୍ଧୃତି । ଶ୍ରୋତାମାନଙ୍କୁ ଚମତ୍କୃତ କରି ଦେଢ଼/ଦୁଇଘଣ୍ଟା ସମୟ କାନ କୁଣ୍ଡାଇଲା ପରି ଗତ ହୋଇଯାଏ । ବିଷ୍ଣୁବାବୁଙ୍କ ସ୍ମୃତି ରୋମନ୍ଥନ ସରିବା ପରେ, ଅନ୍ୟ କାହା କଥା କହି ପାରୁନାହିଁ; ମୋର କିନ୍ତୁ ମନେ ହୁଏ, ଏତେ ସବୁ ଜଣା-ଅଜଣା କଥା ନଶୁଣିଥିଲେ, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ, ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାପନ, ଗଡ଼ଜାତ ମିଶ୍ରଣ, ଭୂସଂସ୍କାର ଆଇନ ପ୍ରଣୟନ ଓ ନକ୍ସଲ ସମସ୍ୟାର ଅସଲ ଗୁମର ଭଳି ବହୁ କ୍ରାନ୍ତିକାରୀ ବିଷୟ ଉପରେ ମୋର ଆଦୃତ ଜ୍ଞାନ ଅଧୁରା ରହିଯାଇଥା'ନ୍ତା ।

ଶ୍ରୀଯୁକ୍ତ ମହାନ୍ତି ମୋଠାରୁ କେବଳ ବୟସ ନୁହେଁ, ସାରସ୍ୱତ କୃତି, ଜ୍ଞାନଗରିମା ଓ ଅନୁଭୂତି ଆଦି ସମସ୍ତ କ୍ଷେତ୍ରରେ ବରିଷ୍ଠ । ତେଣୁ ଜଣେ ଅନୁଜର ଅଧିକାର ନେଇ ମୁଁ ତାଙ୍କୁ ଅଳିକଲା ସ୍ୱରରେ ପଚାରେ, ଏତେ ସବୁ ମହାର୍ଘ୍ୟ ଅନୁଭୂତି, ଶିକ୍ଷଣୀୟ ସ୍ମୃତି ସମ୍ପଦକୁ ନିଜ ଭିତରେ ସାଇତି ରଖି କଣ ଶେଷରେ ଚାଲିଯିବେ ? ଏସବୁକୁ ଉତ୍ତରପୁରୁଷଙ୍କ ପାଇଁ ରଖିଯିବାର ବ୍ୟବସ୍ଥା କଲେ କେତେ ଭଲ ନହୁଅନ୍ତା । ମୋ ଆଖିରେ କ୍ଷଣେମାତ୍ର ଆଖି ମିଳାଇ କହନ୍ତି-ହଁ, ମୋ ମନରେ ବି ସେହି ଚିନ୍ତା ଉଙ୍କି ମାରୁଛି । ହେଲେ, ମନ ସହିତ ହାତ ଆଉ ତାଳମେଳ ରଖୁନାହିଁ । ତାଛଡ଼ା ଅନ୍ୟାନ୍ୟ ଆନୁସଙ୍ଗିକ ସମସ୍ୟାତ ରହିଛି । ଦେଖାଯାଉ । ଏଥି ମଧ୍ୟରେ ଅନେକ ଦିନ ବିତିଗଲା । ଅକସ୍ମାତ ଦିନେ "ସ୍ମୃତିରେଖା"ର ଏକ ଡିଟିପି କରା ପାଣ୍ଡୁଲିପି ସହିତ ଏକ ଅନୁରୋଧ ପତ୍ର ମୋର ହସ୍ତଗତ ହେଲା । ଅନୁରୋଧ ଥିଲା "ସ୍ମୃତିରେଖା" ଉପରେ ମୋର ପାଠକୀୟ ପ୍ରତିକ୍ରୀୟା ରଖିବାକୁ । ଭାବିଲି, ମୋରଅଳି ଅନୁରୋଧ ଶେଷରେ କାମ ଦେଇଛି । ସାମୟିକ ଅସୁସ୍ଥତା ସତ୍ୱେ, ୨୩୪ ପୃଷ୍ଠାର ଏହି ପାଣ୍ଡୁଲିପିରେ ସ୍ଥାନିତ ହୋଇଥିବା ବିଭିନ୍ନ ୩୫ଟି ସ୍ମୃତିଧର୍ମୀ ଆଲେଖ୍ୟକୁ ବିଳମ୍ବିତ ରାତିସୁଦ୍ଧା ଶେଷ କରିଦେଲି । ମୋ ଶାରିରୀକ ଅସୁସ୍ଥତାକୁ

ଉପଶମ କରିବାରେ ସେଦିନ 'ସ୍ମୃତିରେଖା' ଜଣେ ସୁଶ୍ରୀ କୋମଳାଙ୍ଗୀ ଧାତ୍ରୀର ଭୂମିକା ନିଭାଇବା ପରି ମନେ ହେଲା । ଏହାହିଁ ହେଉଛି ସ୍ମୃତିରେଖାର ଜନ୍ମ ବୃତ୍ତାନ୍ତ ।

ବିଭିନ୍ନ ଆଖ୍ୟାନକୁ ସମାଧିକ ସୁଖପାଠ୍ୟ କରିବାକ୍ରମେ 'ସ୍ମୃତିରେଖା'ର ଅଙ୍ଗସଜ୍ଜା ପାଇଁ, ସୁନିର୍ବାଚିତ ଫଟୋଚିତ୍ରର ବ୍ୟବସ୍ଥା ରହିଛି । ପୁଣି ବିଷୟଗୁଡିକର ସଂଗତି ରକ୍ଷାକରି, ସ୍ଥାନିତ ସମସ୍ତ ୩୫ଟି ଆଖ୍ୟାନକୁ ବିଭିନ୍ନ ଚାରିଗୋଟି ଶ୍ରେଣୀରେ ଅନ୍ତର୍ଭୁକ୍ତ କରାଯାଇଛି । ସେଗୁଡ଼ିକ ହେଉଛି ସ୍ଥୁଳତଃ (୧) ଆଖ୍ୟାନ-ଉପଖ୍ୟାନ, (୨) ବିରଳ ବ୍ୟକ୍ତିତ୍ୱମାନଙ୍କ ସ୍ମୃତି ତର୍ପଣ, (୩) ସମାଜ, ଶାସନ ଓ ରାଜନୀତିର ତତ୍କାଳିକ ଚିତ୍ର, (୪) ଆଧିଭୌତିକ ଓ ଆଧ୍ୟାତ୍ମିକ ଚେତନା ସମ୍ବନ୍ଧିତ । ପ୍ରାୟତଃ-ଅନୁଭୂତିସିକ୍ତ ଏହି ସ୍ମୃତିଧର୍ମୀ ଆଲେଖ୍ୟ ଗୁଡ଼ିକରେ ସନ୍ନିହିତ ହୋଇଥିବା ତଥ୍ୟାବଳୀର ପ୍ରାମାଣିକତା ବୃଦ୍ଧି ପାଇଁ, ଆବଶ୍ୟକ ସ୍ଥଳେ, ନିର୍ଭରଯୋଗ୍ୟ ଉଦ୍ଧୃତି, ପରିସଂଖ୍ୟାନ, ଏବଂ ବିସ୍ମୃତ ପୁରାତନ ଦଲିଲ ଦସ୍ତାବୀଜର ସାହାଯ୍ୟ ନିଆଯାଇଛି । ବିଭିନ୍ନ ଉପାଖ୍ୟାନର ମୁଖ୍ୟ ଚରିତ୍ରମାନଙ୍କ ତୁଣ୍ଡରେ ସେମାନଙ୍କ ନିଜଭାଷା ଦେଇ ଲେଖକ ପୁସ୍ତକଟିକୁ ସମାଧିକ ରସାଳ କରିବାରେ ସକ୍ଷମ ହୋଇଛନ୍ତି । ଏସବୁ କିଛି ପାଠକଲା ପରେ, ୬୦/୭୦ ବର୍ଷ ତଳ ଓଡ଼ିଶାର ସମାଜ, ସଂସ୍କୃତି, ଶାସନ, ପ୍ରାକୃତିକ ପରିବେଶ, ଗ୍ରାମୀଣ ଅର୍ଥନୀତି ଓ ପ୍ରଶାସନିକ ବ୍ୟବସ୍ଥା-ଅବ୍ୟବସ୍ଥା ସମ୍ବନ୍ଧରେ ଏକ ସାମଗ୍ରୀକ ଧାରଣା ମିଳି ପାରୁଛି ।

ଜଣେ ସଫଳ ଲେଖକର ପ୍ରମୁଖ ଦାୟିତ୍ୱ ହେଉଛି ଜଣାଶୁଣା ପୁରୁଣା ବିଷୟବସ୍ତୁକୁ ନୂତନ ଓ ରଚିକର ଶୈଳିରେ ପରିବେଷଣ କରିବା ଏବଂ ଅଜଣା ନୂତନ ବିଷୟକୁ ସ୍ୱତନ୍ତ୍ରସ୍ପର୍ଶଦେଇ ପାଠକୀୟ ଗ୍ରହଣୀୟତା ବୃଦ୍ଧିକରିବା । ସେହି ଦୃଷ୍ଟିରୁ ବିଚାର କଲେ, "ସ୍ମୃତିରେଖା", ଲେଖକ ଶ୍ରୀଯୁକ୍ତ ମହାନ୍ତିଙ୍କର ଏକ ସଫଳ କୃତି ବୋଲି ମାନିବାକୁ ପଡ଼ିବ । ଇତିହାସ, ରାଜନୀତି ବିଜ୍ଞାନ, ସମାଜତତ୍ତ୍ୱ ଏବଂ ଅର୍ଥନୀତିର ଛାତ୍ର ଶିକ୍ଷକ, ଗବେଷକ ଓ ପ୍ରଶାସକମାନେ ସ୍ମୃତିରେଖାର ବିଭିନ୍ନ ଉପାଖ୍ୟାନରୁ ଓଡ଼ିଶା ସମ୍ବନ୍ଧରେ ବହୁ ମୂଲ୍ୟବାନ ତଥ୍ୟ ଶିକ୍ଷଣୀୟ ଅଜ୍ଞାତ ତଥ୍ୟ ପାଇବାକୁ ସକ୍ଷମ ହେବେ ବୋଲି ମୋର ବିଶ୍ୱାସ । ତେଣୁ ଏହି ଉପାଦେୟ ପୁସ୍ତକଟି ରାଜ୍ୟର ସ୍କୁଲ, କଲେଜ, ବିଶ୍ୱବିଦ୍ୟାଳୟ ଏବଂ ସରକାରୀ ପୁସ୍ତକାଗାରରେ ସ୍ଥାନ ପାଇବା ବାଞ୍ଛନୀୟ । ପ୍ରାସଙ୍ଗିକ ମନେ ହେବାରୁ, ପାଠକମାନଙ୍କ ଗୋଚରାର୍ଥେ, ପୁସ୍ତକର ନିର୍ଦ୍ଦିଷ୍ଟ କେତୋଟି ପରିଚ୍ଛେଦ ପ୍ରତି ସ୍ୱତନ୍ତ୍ର ଦୃଷ୍ଟି ଆକର୍ଷଣ କରୁଛି । ସେଗୁଡ଼ିକ ହେଉଛି 'ଜନ ସେବକ', 'ଦେୱାନଙ୍କ ଦରବାର', 'ବିଧାୟକ ଗଣାଧୀପ', 'ଉଡ଼େ ମୁଲ୍କ୍ୟାର ମୁଖ ଖୁଲେଛେ', 'ଏକ ବିରଳ ବ୍ୟକ୍ତିତ୍ୱ', 'ତୁ ନାଥ ପରମଦୟାଳୁ', 'ଶିଖିନାହିଁ ଚିହ୍ନିବାକୁ ପରମନ', 'ପ୍ରଜାଦୁଃଖ ଲାଘବକୁ ଗୋରାସାହେବ', 'ଦୁଷ୍ଟ ନିବାରି ସନ୍ଥପାଳୁ', 'ଭୁସଂସ୍କାରର ଭଗୀରଥ', 'ପାରଳା ମହାରାଜା', 'ପ୍ରଦେଶ ଗଠନର ନେପଥ୍ୟ ନାୟକ', 'ମାଲକାନଗିରିର ନକ୍ସଲବାଦୀ' ଓ

'ଏକ ନକ୍ସଲର ଆତ୍ମକଥା' । ବିଶେଷକରି ଶେଷୋକ୍ତ ଅଧ୍ୟାୟ ଦୁଇଟିକୁ ଆମ ରାଜ୍ୟର ଚିନ୍ତାଶୀଳ ବୁଦ୍ଧିଜୀବୀ, ପ୍ରଶାସକ, ପୋଲିସ ଅଧିକାରୀ ଏବଂ ବିଜ୍ଞ ବ୍ୟବସ୍ଥାପକମାନେ ସ୍ୱତନ୍ତ୍ର ଧ୍ୟାନ ଦେଇ ପାଠ କରିବା ଉଚିତ । ପ୍ରାୟ ଚାରିଦଶନ୍ଧିରୁ ଊର୍ଦ୍ଧ୍ୱକାଳ ପୂର୍ବେ ଲେଖକ ଶ୍ରୀଯୁକ୍ତ ମହାନ୍ତି ଅବିଭକ୍ତ କୋରାପୁଟ ଜିଲ୍ଲାର ମାଲକାନଗିରି, ନବରଙ୍ଗପୁର, ରାୟଗଡ଼ା ଏବଂ ଗୁଣୁପୁର ଭଳି ଅଗମ୍ୟ ସ୍ଥାନରେ ମାଜିଷ୍ଟ୍ରେଟ ଏବଂ ପ୍ରଶାସକ ଭାବେ କାର୍ଯ୍ୟ କରିଥିଲେ । ସେହି ମାଲଅଞ୍ଚଳର ଜନଜୀବନକୁ ଏକ ଜିଜ୍ଞାସୁମନ ଓ ଦରଦୀ ହୃଦୟ ନେଇ ଗଭୀର ଅନୁଧ୍ୟାନ କରିଥିଲେ । ନିରୀହ ନିଃସ୍ୱ ଆଦିବାସୀମାନେ ଶୁଣ୍ଢିମହାଜନ, ଦେଣାଦାର ଓ ଗୌନ୍ତିଆ ମାନଙ୍କ ଦ୍ୱାରା କିପରି ଶୋଷିତ ଓ ନିର୍ଯ୍ୟାତିତ ହେଉଥିଲେ ସେସବୁକୁ ପ୍ରତ୍ୟକ୍ଷ କରିଥିଲେ । ଏହି ଅମାନବୀୟ ଉତ୍ପୀଡ଼ନର ଅନିବାର୍ଯ୍ୟ ପ୍ରତିକ୍ରିୟା ସ୍ୱରୂପ ଗଢ଼ି ଉଠୁଥିବା ନକ୍ସଲ ଓ ମାଓବାଦୀ ସଂଗଠନ ଗୁଡ଼ିକୁ ଖୁବ୍ ନିକଟରୁ ଅନୁଧ୍ୟାନ କରିଥିଲେ । ଏପରିକି ଅଦାଲତି ମାମଲା ବାହାରେ ବିପ୍ଳବୀ ନକ୍ସଲ ଗୁରୁ ନାଗଭୂଷଣ ପଟ୍ଟନାୟକ ଏବଂ ଗୁଣୁପୁରର ଭୋବନି ଓକିଲ (ଆଡଭୋକେଟ ଭୂବନ ପଟ୍ଟନାୟକ) ସହିତ ଏହି ଶୋଷଣ-ଅତ୍ୟାଚାରର ବିଭିନ୍ନ ଦିଗ ଉପରେ ବ୍ୟକ୍ତିଗତ ଆଳାପ-ଆଲୋଚନା କରୁଥିଲେ । ତାଙ୍କ ଦୀର୍ଘ ପ୍ରତ୍ୟକ୍ଷ ଅନୁଭୂତିରୁ ସେ ସଠିକ ଠଉରାଇଥିଲେ ଯେ ନକ୍ସଲ ଓ ମାଓବାଦୀ ସମସ୍ୟା ଅସଲରେ ଏକ ଆଇନ-ଶୃଙ୍ଖଳା ପ୍ରଶ୍ନନୁହେଁ । ଉପରୋକ୍ତ ଅଧ୍ୟାୟ ଦୁଇଟିର ଅଙ୍ଗେନିଭା ବିବରଣୀ ପାଠକଲା ପରେ ଯେକେହି ବୁଝିଯିବ ଯେ ଯୁଗଯୁଗଧରି ଚାଲିଆସୁଥିବା ଆଦିବାସୀ ଶୋଷଣ, ଚରମ ଅର୍ଥନୈତିକ ବୈଷମ୍ୟ, ଆଞ୍ଚଳିକ ଉପେକ୍ଷା ଓ ଦରଦ ରହିତ ଅମଲାତାନ୍ତ୍ରିକ ବ୍ୟବସ୍ଥା ହିଁ ନକ୍ସଲ ସମସ୍ୟାର ନିର୍ଭୁଲ କାରଣ । ସ୍ମୃତିରେଖାର ଉପାଖ୍ୟାନ ଗୁଡ଼ିକ ପ୍ରଶାସକମାନଙ୍କ ଦୃଷ୍ଟିଭଙ୍ଗୀ ପରିବର୍ତ୍ତନରେ ସହାୟକ ହୋଇପାରେ ।

ଶେଷରେ, "ଅଷ୍ଟାଦଶ ପୁରାଣ ପରିଚୟ" ଅଧ୍ୟାୟଟି ଉପରେପଦେ ନଲେଖିଲେ କର୍ତ୍ତବ୍ୟ ଅଧୂରା ରହିଯିବ । ବ୍ୟାସକୃତ ଏହି ଅଷ୍ଟାଦଶ ପୁରାଣ ହେଉଛି ଦେଶର ୮୦କୋଟି ଲୋକଙ୍କ ପାଇଁ ପବିତ୍ର ଶାସ୍ତ୍ର । କିନ୍ତୁ ଲକ୍ଷେ ଭାଗରୁ ଏକ ଭାଗ ହିନ୍ଦୁ 'ସମ୍ଭବତଃ' ଏହି ଅଷ୍ଟାଦଶ ପୁରାଣର ନାମଗୁଡ଼ିକ କହିବାକୁ ମଧ୍ୟ ସକ୍ଷମ ହେବେ ନାହିଁ । ପୁରାଣ ଗୁଡ଼ିକର ବିଷୟବସ୍ତୁ ଉପରେ ସ୍ପଷ୍ଟ ଧାରଣା ଥିବା ପଣ୍ଡିତ-ବିଦ୍ୱାନଙ୍କ ସଂଖ୍ୟାଯେ ଆଙ୍ଗୁଠିଗଣାରେ ସୀମିତ ଏହା କହିବା ଅନାବଶ୍ୟକ । ବାସ୍ତବତାର ଏହି ପରିପ୍ରେକ୍ଷୀରେ, ଶ୍ରୀଯୁକ୍ତ ମହାନ୍ତି ପ୍ରତିଟି ପୁରାଣର (କଥାବସ୍ତୁର) ନିର୍ଯ୍ୟାସକୁ ନିଖୁଣଭାବେ ବର୍ଣ୍ଣନା କରିଥିବା ଦେଖି ସ୍ୱତଃ ମୁଗ୍ଧ-ଚକିତ ହୋଇଗଲି । ବିସ୍ମୃତପ୍ରାୟ ଆମ ପ୍ରାଚୀନ ପୁରାଣକୁ ମଧ୍ୟ ନିଜ ପ୍ରଚାରିତ ଜ୍ଞାନବଳୟର ଅନ୍ତର୍ଭୁକ୍ତ କରିପାରିଥା ଲେଖକ ଶ୍ରୀଯୁକ୍ତ ବିଷ୍ଣୁଚରଣ ମହାନ୍ତି ମୋ କଳ୍ପନାରେ ଜଣେ ସ୍ୱନାମଧନ୍ୟ ପ୍ରଣମ୍ୟ ପୁରୁଷ ।

ହେମନ୍ତ କୁମାର ମାସ୍

**ଡକ୍ଟର ଅରବିନ୍ଦ ପଟ୍ଟନାୟକ**
*ଏ/୧୧, ପ୍ରଥମ ମହଲା, ଲର୍ଡ ଗୁଞ୍ଜନ ପ୍ୟାଲେସ୍,*
*ବମିଖାଲ, ଭୁବନେଶ୍ୱର*

# ମୁଖବନ୍ଧ

ଶ୍ରୀଯୁକ୍ତ ବିଷ୍ଣୁଚରଣ ମହାନ୍ତିଙ୍କର "ସ୍ମୃତିରେଖା" ବହି ଖଣ୍ଡିକ ସ୍ମୃତିର ଇନ୍ଦ୍ରଧନୁ । ଏଥିରେ ନାନା ସ୍ମୃତିର ବିବିଧ ବର୍ଣ୍ଣ ଓ ସେଇ ବର୍ଣ୍ଣ ଭିତରେ କେବଳ ଔଜ୍ଜ୍ୱଲ୍ୟ ଯେ ଅଛି, ସେତିକି ନୁହେଁ, ସେଗୁଡ଼ିକ ବହୁ ଅନୁଭୂତି ଓ ନାନା ରସରେ ରସାଳ । ଉପାଖ୍ୟାନ ଓ ବ୍ୟକ୍ତିତ୍ୱର ବର୍ଣ୍ଣନା ଓ ମୂଲ୍ୟାୟନ ସହିତ ସାମାଜିକ ସମସ୍ୟା ଓ ଆଧାତ୍ମିକ ଆଲୋଚନା ଆଦିର ସାହିତ୍ୟିକ ଉପସ୍ଥାପନା ଭିତରେ ଏତେ ତଥ୍ୟ ଭରି ରହିଛି ଯେ, ଏଗୁଡ଼ିକ ପଢ଼ି ସାରିବା ବେଳକୁ ମନେ ପଡ଼େ ଦୀନକୃଷ୍ଣଙ୍କର ସେଇ ଜଣାଶୁଣା ପଦଟି 'କେତେ କଉତୁକ ଅଛଇ ଏଥି, କେବଳ କ୍ଷୀର ସିନ୍ଧୁ ପ୍ରାୟେ ମନ୍ଥି, କର ରସଜାତ, କରି ଧୀଷଣା ମନ୍ଦର ପର୍ବତ ।

ବହିର ଉଣିଶଟିଯାକ ଉପାଖ୍ୟାନ ତ ଅତି ଉପାଦେୟ, କିନ୍ତୁ ସେଥି ଭିତରେ 'ଆଣ୍ଠୁକୁଡା ପଣ୍ଡିତେ', ବର୍ଣ୍ଣନାଟି କି ପ୍ରାଣସ୍ପର୍ଶୀ ! ବହୁ ପୁରୁଣା ମାଇନର ସ୍କୁଲର, ବହୁ ପୁରୁଣା ଦିନର ମନେ ରଖିଲା ଭଳି ମନ ଛୁଆଁ କଥାଟିଏ । ସେହି ସ୍କୁଲର ପଣ୍ଡିତେ ଦିନେ ଶୁଣିଲେ, ସ୍କୁଲଠାରୁ ତିନି ମାଇଲ ଦୂରର ଗୋଟିଏ ଗାଁରେ ପ୍ରାଥମିକ ଶିକ୍ଷାରେ ବୃତ୍ତି ପାଇଥିବା ପିଲାଟିଏ, ପଢ଼ା ବନ୍ଦ କରି ଜମିଦାରଙ୍କ ଶିରସ୍ତାରେ କାମ ଶିଖୁଛି । ବାପା ଦୂର ଜାଗାରେ କାମ କରନ୍ତି । ଘରେ ରହନ୍ତି ମା । ପିଲାଟି ଆଉ ପାଠ ନପଢ଼ି କାମ କରିବ । ପଣ୍ଡିତଙ୍କ ମନ ଗୋଳେଇ ଘାଣ୍ଟି ହେଲା । ସେ ଗଲେ, ପିଲାଟିର ମା'କୁ ବୁଝାଇଲେ । ତାଙ୍କରି କଥାରେ ଓ ଭରସାରେ ପିଲାଟିର ନାଁ ଲେଖା ହେଲା । ମାଇନର ସ୍କୁଲରେ । ସେ ଦେଶବିଦେଶରେପାଠପଢ଼ାରେଭୋରି ନାଁ କରି ସର୍ବୋଚ୍ଚ ଶିକ୍ଷା ଲାଭ ପରେ ରେଭେନ୍‌ସା କଲେଜରେ ପ୍ରଫେସର ହେଲେ । ପଣ୍ଡିତେ ଛାତ୍ରଙ୍କ ଘରକୁ ଯାଆନ୍ତି । ଆଦର ଗୌରବ ପାଇ ଫେରନ୍ତି । ପରେ ସ୍କୁଲ ଫାଟକ ପାଖରେ ନୂଆ ଲୁଗା କୁରୁତା ପିନ୍ଧି, କାନ୍ଧରେ ନୂଆ ଚାଦର ପକାଇ ଛିଡ଼ା ହୋଇଥାନ୍ତି । ପୁରୁଣା ଛାତ୍ର, ସେଇ ବାଟରେ ଯାଇଥିବା କୌଣସି ପୁରୁଣା ଛାତ୍ର ଅଟକି ଯାଇ ପ୍ରଣାମ କଲାବେଳେ କହନ୍ତି- 'କଣ ଦେଖୁଛ ? କଟକ ଯାଇଥିଲି, ପାଣ୍ଡୁ ବଙ୍ଗଳାରେ ରହିଛି ତିନିଦିନ । ଛାଡୁ ନଥିଲା । ହେଲେ ସ୍କୁଲ ତ ଅଛି । ଚାଲି ଆସିଲି ।' ତା'ପରେ ଛାତ୍ରଙ୍କର ବଙ୍ଗଳା, ଗାଡ଼ି, ଚଳଣି ଆଦି ବିଭବ ବ୍ୟବହାର

ବର୍ଣ୍ଣନା କରନ୍ତି । ତା'ପରେ କହନ୍ତି - 'ହାଣ୍ଡିଏ ଲଡ଼ୁ ଦେଲା । ମୋର କିଏ ଖାଇବାକୁ ଅଛି ? ଟିକିଏ ରହ ଆଣୁଛି । ଏମିତି ଅଟକାଇ, ଛାତ୍ର ଦେଇଥିବା ହାଣ୍ଡିରୁ ଖଣ୍ଡିଏ ଖଣ୍ଡିଏ ଲଡ଼ୁ ଭାଙ୍ଗି ଆଣି ବାଣ୍ଟନ୍ତି । ୧୯୩୫ ବେଳକୁ ପଣ୍ଡିତେ ବୃଦ୍ଧ ଓ ଏକାକୀ । ସ୍ତ୍ରୀ କରିଯାଇଛନ୍ତି । ଏକମାତ୍ର ସନ୍ତାନ - ଝିଅଟିଏ । ତା'ର ବି ମୃତ୍ୟୁ ଘଟିଛି । ଦିନେ ତାଙ୍କର ସେଇ ପ୍ରିୟ ଛାତ୍ର, ତାଙ୍କୁ ଦେଖି ଆସୁଛନ୍ତି ବୋଲି ଶୁଣିଲେ । ଭାବ ବିଭୋର ହୋଇ ସମସ୍ତଙ୍କୁ କହିଲେ - "ମୋ ପାଣୁ ବିଲାତ ଫେରନ୍ତା ସାହେବ । ସେ ଆସିବ । ତମେ ସବୁ ଦେଖିବ ।" ସେଇ ସାହେବ ଯେତେବେଳେ ଗାଡ଼ିରୁ ଓହ୍ଲାଇ ପଣ୍ଡିତଙ୍କୁ ମୁଣ୍ଡିଆ ମାରିଲେ, ପଣ୍ଡିତେ ତାଙ୍କୁ କୁଣ୍ଢାଇ ଧରି କହିଲେ - କିଏ କହୁଛି ମୋତେ ଆଣ୍ଠୁକୁଡ଼ା ବୋଲି ? ଏ ପାଣୁ ମୋର ପୁଅ ଏମିତି ଯେତେ ପିଲା । ଏଇ ସ୍କୁଲରୁ ମୋରବେତ ଖାଇ ମଣିଷ ହୋଇଛନ୍ତି କି ଦି ଅକ୍ଷର ପଢ଼ିଛନ୍ତି ସେଇମାନେ ସମସ୍ତେ ମୋର ପୁଅ ।" ଏଇ ପଣ୍ଡିତେ ଥିଲେ ବାଲିକୁଦା ମାଇନର ସ୍କୁଲର ପଣ୍ଡିତ ନନ୍ଦ କିଶୋର ସେନଗୁପ୍ତ ଓ ଛାତ୍ର ଡକ୍ଟର ପ୍ରାଣକୃଷ୍ଣ ପରିଜା । ଗୁରୁ ଶିଷ୍ୟ ସଂପର୍କରେଏଇ ଭାରତୀୟ ପରମ୍ପରା କ୍ରମେ ଭାଙ୍ଗିଭାଙ୍ଗି ଯାଉଛି କାହିଁକି ? ଦୋଷ କାହା ପାଖରେ କୋଉଠି ରହିଛି ? ଆଣ୍ଠୁକୁଡ଼ା ପଣ୍ଡିତେ ଉପାଖ୍ୟାନଟି ପଢ଼ିବା ବେଳେ ଏଇ ପ୍ରଶ୍ନ ମନରେ ଘାଣ୍ଟିହୁଏ ।

ଜେ.ଜନଷ୍ଟନ, ଡଗଲାସ୍, ଉଇଲିୟମ୍ ହଥର୍ଣ୍ଣ ଲୁଇସ୍‌ଙ୍କ ପରି ବ୍ରିଟିଶ ଅମଳରେ ବିଦେଶୀ ଅଫିସରଙ୍କଠାରୁ ସେଇ ସମୟ ଓ ପରବର୍ତ୍ତୀ କାଳରେ ନିଜ ନିଜ ସାଧୁତା ଓ ଦକ୍ଷତା ପାଇଁ ସ୍ମରଣୀୟ ହୋଇଥିବା ନୀଳମଣି ସେନାପତି, ପ୍ରାଣନାଥ ମହାନ୍ତି, ହରିହର ମହାପାତ୍ର, ବାଞ୍ଛାବଟଙ୍କ ପରି ଅଫିସର, ବୀର କିଶୋର ରାୟଙ୍କ ପରି ଓକିଲ ଓ ବିଚାରପତି, ଆଦିବାସୀ ଅଞ୍ଚଳରେ ସେମାନଙ୍କର ଲୋକହୋଇ, ସେମାନଙ୍କ ମନଜିଣି କାମକରିଥିବା ଅଫିସର ଓ ପ୍ରଖ୍ୟାତ ଔପନ୍ୟାସିକ ଗୋପୀନାଥ ମହାନ୍ତି, ପାରଳା ଖେମୁଣ୍ଡିର ପ୍ରତିଭାବାନ ବିଦ୍ୱାନ ଓ ମହାରାଜ କୃଷ୍ଣଚନ୍ଦ୍ର ଗଜପତି, ପଣ୍ଡିତ ସୂର୍ଯ୍ୟନାରାୟଣ ଦାସଙ୍କ ପରି ନିରଳସ ସାଧକଙ୍କ ବିଷୟରେ କେତେକ କୌତୁହଳଉଦ୍ଦୀପକ ଘଟଣାର ସୁନ୍ଦର ବର୍ଣ୍ଣନା, ସ୍ୱାଧୀନତା ପ୍ରାପ୍ତି, ଗଡ଼ଜାତ ମିଶ୍ରଣ, ଗଣତାନ୍ତ୍ରିକ ଶାସନ ଆରମ୍ଭରେନେତା ଓ ସରକାରୀ କର୍ମଚାରୀଙ୍କ ବିଷୟରେ ବହୁ ତଥ୍ୟ ଓ ଘଟଣାର ବର୍ଣ୍ଣନା ବଡ଼ ଚମତ୍କାର ଭାବରେ ଲେଖକ ଫୁଟାଇଛନ୍ତି । ଏହି ଗ୍ରନ୍ଥଟିର ଲେଖକ କର୍ମମୟ ଜୀବନକାଳ ଭିତରେ ଅନେକ ଉଲ୍ଲେଖଯୋଗ୍ୟ ଘଟଣା ଘଟିଛି । ସେଗୁଡ଼ିକ ଲକ୍ଷ୍ୟ କରିଛନ୍ତି ଓ ଯଥା ସ୍ଥାନରେ ଲିପିବଦ୍ଧ କରିଛନ୍ତି ।

"ବରିଷ୍ଠ ନାଗରିକ କେନ୍ଦ୍ରରେ ଦିନେ" ଗୋଟିଏ ଅତି ଉପାଦେୟ ବର୍ଣ୍ଣନା । ବରିଷ୍ଠ ନାଗରିକଙ୍କର ସମସ୍ୟା ଓ ତା'ଉପରେ ଗବେଷଣା ଓ ସମସ୍ୟା ସମାଧାନ ଦିଗରେ ଆମେରିକାରେ କିପରି ପଦକ୍ଷେପ ନିଆଯାଉଛି, ଜେରେଣ୍ଟୋଲୋଜି ଏଜୁକେସନ୍ ଆଣ୍ଡ ଟ୍ରେନିଂ ସେଣ୍ଟର, ସିନିୟର ସିଟିଜନ ସେଣ୍ଟର, ସିନିୟର ଡେକେୟାର ସେଣ୍ଟରମାନ ଦେଖିବା ଓ ତା'ର କାର୍ଯ୍ୟ ପଦ୍ଧତିର ଆଲୋଚନାରୁ ଅନେକ ଜାଣିବାର ଓ ସେଇ ଢ଼ଙ୍ଗରେ

ଏଠାରେ କିଛି ଉଦ୍ୟମ କରିବାର ଆବଶ୍ୟକତା ଅବଶ୍ୟ ଅଛି । ଦୀର୍ଘ ଦିନ ଧରି ପ୍ରଶାସନ ଓ ବିଚାର ବିଭାଗରେ ଦକ୍ଷତା, ନିଷ୍ଠା ଓ ସାଧୁତାର ସହିତ ଓଡ଼ିଶାର ବିଭିନ୍ନ ସ୍ଥାନରେ କାର୍ଯ୍ୟ କରିଥିବା ଏଇ ଗ୍ରନ୍ଥର ଲେଖକ ଶ୍ରୀଯୁକ୍ତ ମହାନ୍ତି ନକ୍ସଲ ସମସ୍ୟାଟି ଯେପରି ଅନୁଧାନ କରିଛନ୍ତି ଓ ନକ୍ସଲମାନଙ୍କ କାର୍ଯ୍ୟକ୍ଷେତ୍ର ଓ ପୃଷ୍ଠଭୂମିକୁ ଯେପରି ଲକ୍ଷ୍ୟ କରିଛନ୍ତି ତାହା ପ୍ରଶଂସା ଓ ପ୍ରଣିଧାନଯୋଗ୍ୟ । ମାଲକାନଗିରି ନକ୍ସଲ ବାଦୀ ଏବଂ ଏକ ନକ୍ସଲର ଆତ୍ମକଥା ଲେଖିବା ବେଳେ, ଲେଖକ ଯେଉଁ ସ୍ୱଚ୍ଛ ନିରପେକ୍ଷ ବର୍ଣ୍ଣନା ଓ ବିଶ୍ଳେଷଣ କରିଛନ୍ତି, ତାହା ପ୍ରତ୍ୟେକ ସଚେତନ ନାଗରିକ ନିଶ୍ଚୟ ପଢ଼ିବାର କଥା । ସମସ୍ୟାଟିର ଐତିହାସିକ ଓ ଭୌଗଳିକ ପୃଷ୍ଠଭୂମି, ସାମାଜିକ, ଅର୍ଥନୈତିକ ବାସ୍ତବତା, ପ୍ରଶାସନ ଓ ସମାଜସେବକ, ନେତାମାନଙ୍କର କାର୍ଯ୍ୟକଳାପ ଉପରେ ଦୃଷ୍ଟି ନ ଦେଇ ଆଦିବାସୀମାନଙ୍କ ଉପରେ ଏଣୁତେଣୁ ପାଞ୍ଚକଥା କହିବା ଓ ସେଠାରେ ନକ୍ସଲ ବିପ୍ଳବର ନିନ୍ଦା ବା ପ୍ରଶଂସା କରିବା କେଡ଼େ ନିର୍ବୋଧତା, ଏହା ଏଇ ପ୍ରବନ୍ଧ ଦୁଇଟି ମନଯୋଗ ଦେଇ ପଢ଼ିଲେ ହୃଦୟଙ୍ଗମ କରିହେବ । ମାଲ୍‌କାନାଗିରି ଅଞ୍ଚଳ କଥା ଆଲୋଚନା ପ୍ରସଙ୍ଗରେ ଶ୍ରୀଯୁକ୍ତ ମହାନ୍ତି ଲେଖିଛନ୍ତି - ବର୍ତ୍ତମାନ ଓଡ଼ିଶା ପ୍ରଶାସନିକ ସେବାରେ ପ୍ରାୟ ଦେଢ଼ ହଜାର କର୍ମଚାରୀ ଥିବେ । ଆଦିବାସୀ ଗ୍ରାମମଙ୍ଗଳ ବିଭାଗର ଅନେକ କର୍ମଚାରୀ ମଧ୍ୟ ଅଛନ୍ତି । ଏମାନଙ୍କ ମଧ୍ୟରୁ କେତେଜଣ ଉପଜାତିମାନଙ୍କର କଥିତ ଭାଷାରେ ଦକ୍ଷତା ଅର୍ଜନ କରିଅଛନ୍ତି ? କେତେଜଣ ସେମାନଙ୍କୁ ସରକାରୀ କଳର ବିଧିଗତ ମନ୍ଥରଗତି, ଯୋଜନାର ବିଭିନ୍ନ ଦିଗ ଓ ଲାଭ ବୁଝାଇ ପାରିବେ ? ଜିଲ୍ଲାରେ ୧-୮ ଗୋଟି ଗ୍ରାମ ପଞ୍ଚାୟତ ଓ ୯୭୯ ଗୋଟି ଜନବସତି ଗ୍ରାମ । କେତେ ଜଣ ଜିଲ୍ଲାସ୍ତରୀୟ ଅଧିକାରୀ ଏହି ପଞ୍ଚାୟତ ଓ ଗ୍ରାମମାନ ପରିଦର୍ଶନ କରି ସେମାନଙ୍କର ହାନିଲାଭ ବୁଝିଅଛନ୍ତି ? ତେଣୁ ସେମାନେ ବିପଥଗାମୀ ।" ବିନୋବାଙ୍କ ଭୂମିକ୍ରାନ୍ତି ଆନ୍ଦୋଳନ ବି ଏଠାରେ ବିଫଳ ହୋଇଛି । ଉପଜାତି ଉଦ୍ଦିଷ୍ଟ ପାଣ୍ଠିର ଦୁରୂପଯୋଗ ବା ଆତ୍ମସାତ୍ ହୋଇଛି । ମନ୍ଥର ଫଳାଫଳ ଓ ବିଭ୍ରାନ୍ତକାରୀ ପ୍ରଚାର, ଏପରି ସ୍ଥଳେ ସେମାନଙ୍କୁ ଦିଗହରା ଓ ହିଂସ୍ର କରିବାରେ କିପରି ବାଟଖୋଲି ଦେଇଛି, ତାହା ଏଇ ଦୁଇଟି ଆଲୋଚନାରେ ପ୍ରତିଫଳିତ । ସେ କେବଳ ସମସ୍ୟାର ବିଶ୍ଳେଷଣ ଓ ସମୀକ୍ଷା କରିନାହାନ୍ତି । ଏହାର ସମାଧାନର ପନ୍ଥା ମଧ୍ୟ ମାଲ୍‌କାନଗିରିର ନକ୍ସଲବାଦୀ ପ୍ରବନ୍ଧର ଉପସଂହାରରେ ଉପସ୍ଥାପନ କରିଛନ୍ତି । ଏକ ନକ୍ସଲର ଆତ୍ମକଥା ଲେଖାଟି ଯେତିକି ବାସ୍ତବ ତହୁଁବଳି ହୃଦୟସ୍ପର୍ଶୀ । ବର୍ଣ୍ଣନାଟି ସତ୍ୟଘଟଣା ଉପରେ ଆଧାରିତ ବୋଲି ଲେଖକ ସୂଚନା ଦେଇଛନ୍ତି । ପୁରାଣ ମହାତ୍ମ୍ୟ ବର୍ଣ୍ଣନା ମୂଳକ ଗ୍ରନ୍ଥ, ଓଡ଼ିଶାର ବୈଷ୍ଣବ ପରମ୍ପରା ଉପରେ ମଧ୍ୟ ତାଙ୍କର ତଥ୍ୟ ଓ ଅନୁଭୂତି ଗର୍ଭକ ଆଲୋଚନା ଅତ୍ୟନ୍ତ ଉପାଦେୟ ।

# ସୂତ୍ରପାତ

"ଶକ୍ତିହରା ଜରା ଛୁଇଁଲାଣି ଦେହପୁର,
ଅଲକ୍ଷିତେ ବଳ ମୋର କରୁଅଛି ଚୂର ।
ଯୌବନ ପ୍ରାସାଦ ଭିତ୍ତି ଅବ୍ଦ ଆଘାତରେ
ଭାଙ୍ଗିପଡୁଅଛି ନିତି କମ୍ପି ଥରେ ଥରେ ।
ଲିଭି ଯାଉଅଛି କ୍ରମେ ଦୀପ୍ତି ନୟନର
ସାମର୍ଥ୍ୟ ଯାଉଛି ତୁଟି ଏ ମୋ ଚରଣର"

- ମଧୁସୂଦନ ରାଓ

ପଞ୍ଚାଅଶି ଟପିଲି । ବିଗତ ବର୍ଷମାନଙ୍କରେ କେତେକ ଦେଖାଶୁଣା ଉପାଖ୍ୟାନ ଓ ପ୍ରସଙ୍ଗ ସ୍ମୃତିପଟରେ ଗଭୀର ରେଖାପାତ କରି ଜୀବିତ ରହିଛି । ବର୍ତ୍ତମାନ ପରିବର୍ତ୍ତିତ ସାମାଜିକ ଓ ପ୍ରଶାସନିକ ବ୍ୟବସ୍ଥାରେ ସେ ସବୁ ମଧ୍ୟ ପାଠକମାନଙ୍କୁ ଆମୋଦିତ କରିବାର ଆଶା ରଖିଛି । ସ୍ମୃତି ବିଭ୍ରମ ପୂର୍ବରୁ ସେ ସବୁର ରୋମନ୍ଥନ କଲି । ଏଥିରେ ଚାରୋଟି ପର୍ଯ୍ୟାୟରେ (କ) ଉପାଖ୍ୟାନ, (ଖ) ବ୍ୟକ୍ତିତ୍ୱ, (ଗ) ସମାଜତାତ୍ତ୍ୱିକ, (ଘ), ଅଧ୍ୟାତ୍ମଚେତନା ପଇଁତିରିଶଗୋଟି ନିବନ୍ଧ ସ୍ଥାନିତ ।

- **ଲେଖକ**

# ସୂଚୀପତ୍ର

| କ୍ର.ସଂ | ବିଷୟ | ପୃଷ୍ଠା |
|---|---|---|



## (ଗ) ସମାଜତାତ୍ତ୍ୱିକ



## (ଘ) ଅଧ୍ୟାତ୍ମଚେତନା

# ଜନସେବକ

'ମୁକୁଟର ପରାଜୟ' ନାମକ ଏକ କବିତାରେ ଗଡ଼ଜାତ ମିଶ୍ରଣ ପରେ କାଳଜୟୀ କବି ଗୋଦାବରୀଶ ଲେଖିଥିଲେ-

"ଗଡ଼ଜାତ ହେଲା ମୋଗଲ ବନ୍ଦୀ
ଜାଗି ପ୍ରଜା ପରିଷଦେ
ମସ୍ତକ କର ଅବନତ ଭାଇ
ମହାଉତ୍କଳ ପଦେ ।"

ପ୍ରଜା ପରିଷଦ ନେତାମାନଙ୍କୁ କ୍ଷମତା ମିଳିଗଲା । ଦାମୁଡ଼ି ବେଶିସମୟ ଦଉଡ଼ିରେ ବନ୍ଧା ହୋଇଥିଲେ ଫିଟେଇ ଦେଲେ ଗୁଡ଼ାଏ କୁଦେ । ଗୋଡ଼ ଥକି ଗଲେ ପୁଣି ଫେରିଆସେ ଖୁଣ୍ଟପାଖକୁ । ସେମିତି ଏହି ପରିଷଦର ଛାମୁଆ, କୁଜିନେତା ସମସ୍ତେ କିଛି ନା କିଛି କ୍ଷମତା ପାଇବା ଆଶାରେ ଗୁଡ଼ାଏ ନାଚିଲେ । ଗଡ଼ଜାତର ତିନି ଜଣ ମନ୍ତ୍ରୀ ହେଲେ । ନାଁ ମାତ୍ର ହେଲା ଏକ୍‌ଜିକ୍ୟୁଟିଭ୍ କାଉନସିଲର । ତାଳଚେରରୁ ସେମିତି ଜଣେ ଲୋକ ପ୍ରତିନିଧି ମନ୍ତ୍ରୀ ହେଲେ । ଲୋକମାନଙ୍କୁ କ୍ଷମତା ମିଳିଯାଇଛି, ରାଜା ରାଜକର୍ମଚାରୀଙ୍କର ବେଇଜିତ ମାଡ଼, ବେଠି, ଘରଭଙ୍ଗା ଆଉ ଦେଖିବାକୁ ମିଳିବ ନାହିଁ । ଏଇଆ ଲୋକମାନଙ୍କୁ ବୁଝାଇ ସେମାନଙ୍କୁ ସଚେତନ କରିବାକୁ ହେବ । ବହୁତ ଜାଗାରେ ସଭାକରି ଏ ସବୁ କଥା, ଏ ନୂଆ ଦାୟିତ୍ୱ ଏ ନୂତନ ଚିନ୍ତାଧାରା ଲୋକଙ୍କୁ ଜଣାଇଦେବା ପ୍ରତିନିଧିମାନଙ୍କର କର୍ତ୍ତବ୍ୟ । ବାଲେଶ୍ୱର ଜିଲ୍ଲାର ନୀଳଗିରି ରାଜ୍ୟରୁ ମିଶ୍ରଣ ପ୍ରଥମେ ଆରମ୍ଭ ହୋଇଥିଲା । ରାଜ୍ୟରେ ଆଇନ ଶୃଙ୍ଖଳା ଭାଙ୍ଗିପଡ଼ିବାରୁ ବାଲେଶ୍ୱର ଜିଲ୍ଲା ମାଜିଷ୍ଟ୍ରେଟ ଏହା ମୋଗଲବନ୍ଦୀକୁ ମାଡ଼ି ଆସିବା ଆଗରୁ ରାଜ୍ୟ ଓ କେନ୍ଦ୍ର ସରକାରଙ୍କ ନର୍ଦ୍ଦେଶରେ ଏହାର ଶାସନ ପରିଚାଳନା ନିଜ ହାତକୁ ନେଲେ । ସମ୍ବିଧାନ ସଭାରେ ନୂତନ ସମ୍ବିଧାନ ଆଲୋଚିତ ଓ ବିଭିନ୍ନ

ଦଫାମାନ ଗୃହୀତ ହେଉଥାଏ । ଚିଠା ସମ୍ବିଧାନ ମଧ୍ୟ ଲୋକମତ ସଂଗ୍ରହ ପାଇଂବଜାରରେ ମିଳୁଥାଏ । ମନ୍ତ୍ରୀ ବାଲେଶ୍ୱରରେ ସଭା କଲେ । ଜିଲ୍ଲା ମାଜିଷ୍ଟ୍ରେଟ, ଜିଲ୍ଲା ଆରକ୍ଷୀ ଅଧିକାରୀ, ନିର୍ବାହୀ  ଇଂଜିନିୟର ମୁଖ୍ୟ ଚିକିତ୍ସା ଅଧିକାରୀ (ସିଭିଲ ସର୍ଜନ) ଜିଲ୍ଲା ସ୍ତରରେ ସର୍ବୋଚ୍ଚ ଅଧିକାରୀ । ଏମାନେ ସେହି ସଭାରେ ଯୋଗ ଦେବେ । ଲୋକେ ଜାଣିବେ ସେମାନେ ରାଜକର୍ମଚାରୀ, ସାଧାରଣ ଲୋକଙ୍କର ସେବକ । ସଭାରେ ମନ୍ତ୍ରୀ ଲୋକମାନଙ୍କୁ ଏହି ଉଚ୍ଚ ପଦାଧିକାରୀମାନଙ୍କୁ ଆଙ୍ଗୁଳି ଦେଖାଇ ବତାଇଲେ "ଦେଶ ଏବେ ସ୍ୱାଧୀନ । ଏଇ ବଡ଼ ବଡ଼ ହାକିମମାନେ ଯେ ଆମ ଉପରେ ନାନା ପ୍ରକାର କ୍ଷମତା ଜାହିର କରୁଥିଲେ ସେମାନେ ଏବେ ଆମର ଚାକର । ଆମର ହୁକୁମ ମାନିବେ ଆମେ ଯାହା କହିବୁ ତାହା କରିବେ । ନ ମାନିଲେ ଆମେ ତାଙ୍କୁ  ନିକାଲି ଦେବୁ । ଆମ ସେବା କରିବେ" । ବହୁତ କରତାଳି ହେଲା । ସମସ୍ତେ ସେହି କର୍ମଚାରୀମାନେ ବସିଥିବା ଜାଗାକୁ ଅନେଇ ଦେଖୁଥାନ୍ତି । ଜିଲ୍ଲା ମାଜିଷ୍ଟ୍ରେଟ୍ ପ୍ରାଣନାଥ ମହାନ୍ତି । ବିଶ୍ୱବିଦ୍ୟାଳୟର କୃତୀଛାତ୍ର । ଜନ୍ମ ୧୪-୧୦-୧୯୦୮ ମସିହାରେ । ଇତିହାସରେ ଏମ୍.ଏ. । ଆଇ.ସି.ଏସ୍. ପରୀକ୍ଷା ଦେଇ କୃତକାର୍ଯ୍ୟ ହୋଇ ମଧ୍ୟ ହିନ୍ଦୁ ମୁସଲମାନ କୋଟା ବଣ୍ଟାଆରା ଫଳରେ ଚାକିରି ଆଉ ଜଣେ ମୁସଲମାନ ପାଇଲା । ମାତ୍ର ସେ ପାଇଲେ ନାହିଁ । ବିହାର ଓଡ଼ିଶାରେ ୧୯୩୪ ମସିହାରେ ଡ଼େପୁଟି କଲେକ୍ଟର ହେଲେ । ନୂଆ ଆଇଏଏସ୍ ପଦବୀ ସୃଷ୍ଟି ହେବାରୁ ସେଥିରେ ୧୯୪୮ରୁ ସାମିଲ ହେଲେ । ଭାରତ ସରକାରରେ କାମ କଲେ । ଫେରି ବାଲେଶ୍ୱରରେ ଅବସ୍ଥାପିତ । ଲେଖକ ଓ ବକ୍ତା ଭାବରେ ଓଡ଼ିଶାରେ ସୁପରିଚିତ । ମନ୍ତ୍ରୀଙ୍କ ଭାଷଣ ସରିଲା । ବହୁତ କରତାଳି ମିଳିଲା । ଜିଲ୍ଲାପାଳ ମନ୍ତ୍ରୀଙ୍କ ଅନୁମତି ମାଗିଲେ । ତାଙ୍କୁ ବି' ପଦ ଲୋକଙ୍କୁ କହିବାକୁ ସୁଯୋଗ ମିଳୁ । ମନ୍ତ୍ରୀ ରାଜି ହେଲେ । ଜିଲ୍ଲାପାଳ ଶୁଣାଇଲେ -

"ମନ୍ତ୍ରୀ ମହାଶୟ ଯାହା କହିଲେ ଏଥିପାଇଁ ଆପଣମାନେ ଉତ୍‌ଫୁଲ୍ଲିତ ହୁଅନ୍ତୁ ନାହିଁ । ଆମେ Public Servant ଲୋକମାନଙ୍କର ସେବକ । ସର୍ବସାଧାରଣ ରାଜକୋଷ Public Exchequor ରୁ ଦରମା ନେଉଥିବାରୁ ଏ ପଦବୀ ମିଳିଛି । ମନ୍ତ୍ରୀମାନେ ମଧ୍ୟ ଏ ପାଣ୍ଠିରୁ ଦରମା ପାଇଥାନ୍ତି । କେହି ଘରୋଇ କର୍ମଚାରୀ ନୁହେଁ । ସମସ୍ତେ ସମାଜର ସେବା ପାଇଁ କର୍ମଚାରୀ । ଗାଁରେ ଗୋଠ ଜଗିବାକୁ ଗୋଟିଏ ଗଉଡ଼ ଥାଏ । ଗାଈ ଗୋଠ ଆୟତ୍ତରେ ରଖିବା ତା କାମ । ଓଲେଇ ଗାଈ ଗୋଟାଏ ଯା ବାଡ଼ରେ କି କିଆରିରେ ଥୋମଣି ଦେଲେ ସେ ପାଞ୍ଚଣରେ ତାକୁ ଦିପାହାର ପକାଇ ବାଟକୁ ଅଡ଼େଇ ନିଏ । ଗୋଠରେ ସୀମା ଭିତରେ ଗୋରୁଗାଈ ରହିବେ । ଗୋଠରୁ ଭଡ଼କି ଗଲେ ପାଞ୍ଚଣ ବସିବ । ଆମ ରାଜ୍ୟରେ ଆମ ଦେଶରେ ସେମିତି ଆଇନ ଶାସନ ଅଛି । ସମ୍ବିଧାନ ଅଛି । କିଏ କଣ

କରିବ, କେଉଁଠି ଚରିବ, କେଉଁଠି ମୁହଁ ଲଗେଇବ ନାହିଁ ତାର ଧରାବନ୍ଧା ନିୟମ ରହିଛି । ମନ୍ତ୍ରୀ ରାଜକର୍ମଚାରୀ ବିଧାୟକ ସମସ୍ତଙ୍କ ପାଇଁ ନିର୍ଦ୍ଦେଶନାମା ସେଥିରେ ରହିଛି । ଓଲେଇ ହେଲେ ପାଞ୍ଚଣ ଗାଈ ଦେହରେ ବସିବା ଭଳି ମନ୍ତ୍ରୀ ମଧ୍ୟ ନିଜ ପରିସୀମା ଟପିଲେ ଆଇନରେ ମାଡ଼ ଖାଇଯିବେ । ଯଦି ଦୋଷ ତ୍ରୁଟି ହେଲା, ଆଇନ ନିୟମର ବିରୁଦ୍ଧାଚରଣ ହେଲା ତାହାହେଲେ ସେ ମଧ୍ୟ ଦଣ୍ଡ ପାଇବେ । ସାଧାରଣ ଜଣେ ନାଗରିକ ପରି ସେ ମଧ୍ୟ ବିଚାରରେ ଦଣ୍ଡିତ ହେବେ । ତାଙ୍କ ହାତରେ ମଧ୍ୟ ସ୍ୱର୍ଣ୍ଣ ବଳୟ (ହାତକଡ଼ି) ପିନ୍ଧାଯିବ । ସେ କଙ୍କଣ ଆରକ୍ଷୀ ଅଧିକ୍ଷକ କି ଆଉ କେହି ଉଚ୍ଚପଦାଧିକାରୀ ଦେବେ ନାହିଁ । ସେଇ ଯେଉଁ ନାଲି ପଗଡ଼ିପିନ୍ଧା ସିପେଇ ତାଙ୍କ ଆଗେ ଆଗେ ଚାଲୁଛି ସେ ତାହା ଦେବ । ଅଧିକାରୀମାନେ ସର୍ବସାଧାରଣ ଚାକର ବୋଲି ଯଦି ତମେ କହିବ ପୁଲିସ ସାହେବ ଆମ ମାଛ ପୋଖରୀ ଜଗନ୍ତୁ କି କିଲଟର ଆମ ଗାଁରେ ଆସି ଘର ଘର ବୁଲି ଗାଁ ନିଶାପ ବୁଝନ୍ତୁ ତାହାହେଲେ ସେ ତାହା କରିବାକୁ ଅକ୍ଷମ । ଧରାବନ୍ଧା ନିୟମ ସବୁଥିରେ ଅଛି । ମନ୍ତ୍ରୀ ବିଧାୟକ ଏ ସବୁ କରିଛନ୍ତି ।  ସରକାରୀ ଚାକିରିଆ ତାକୁ ଯେମିତି ମାନିବାକୁ ବାଧ୍ୟ ସେମାନେ ମଧ୍ୟ ସେମିତି ବାଧ୍ୟ । ତେଣୁ ଆପଣମାନେ ମନ୍ତ୍ରୀଙ୍କ ଭାଷଣରେ ଭାସି ଯାଇ କାଲି ଗାଁକୁ ଲେଉଟି ନିଜ ଆଚରଣ ବିଶୃଙ୍ଖଳ କରି ଦଣ୍ଡ ମାଗି ନ ଆଣନ୍ତୁ । ଏହା ମୋର ନିବେଦନ ।" ସଭାରେ ବେଶି ଜୋରରେ ଜିଲ୍ଲାପାଳ ତାଳିମାଡ଼ ପାଇଲେ । ମନ୍ତ୍ରୀଙ୍କ ବିରୁଦ୍ଧ ଦଳ କର୍ମୀ ନାଗରିକ ଭାରି ଖୁସି । ମନ୍ତ୍ରୀ ଫେରିଲେ । ମୁଖ୍ୟମନ୍ତ୍ରୀଙ୍କ ଆଗରେ ଫେରାଦ ହେଲେ । ସବୁଶୁଣି ସେ ତାଙ୍କୁ ଆ ବଳଦ ମୋତେ ବିନ୍ଧି ତମ ଆଚରଣ ବୋଲି ତାଗିଦ୍ କରିଦେଲେ ମାତ୍ର ମନ୍ତ୍ରୀଙ୍କୁ ଖୁସି କରିବାକୁ ସରକାର ଏକ ନିର୍ଦ୍ଦେଶନାମା ଜାରିକଲେ । କୌଣସି ସାଧାରଣ ସଭାରେ ମନ୍ତ୍ରୀ ମହୋଦୟଙ୍କ ଭାଷଣ ସଭାରେ ତାଙ୍କ ଅନୁମତି ନେଇ ବା ନ ନେଇ କେହି ଆଉ କିଛି କହି ପାରିବେ ନାହିଁ ।

ଅନୁଗୁଳ ସହିତ କେତେକ ଗଡ଼ଜାତ ମିଶି ଢେଙ୍କାନାଳ ଜିଲ୍ଲା । ଢେଙ୍କାନାଳ ଗଡ଼ରେ ସେଇ ମନ୍ତ୍ରୀଙ୍କର ଆଉ ଏକ ସଭା । ପୂର୍ବ ଦିନ ସେ ଆଉ ଗୋଟିଏ ସଭାରେ କହିଥାନ୍ତି ଜିଲ୍ଲା ମାଜିଷ୍ଟ୍ରେଟ, ଏସ୍.ପି, ଏସ୍.ଡ଼ି.ଓ, ତହସିଲଦାର ସମସ୍ତେ ତମର ଚାକର । ତମର ସେବାକାରୀ । ମନ୍ତ୍ରୀଙ୍କ ସଭାକୁ ସବୁ ବଡ଼ ଅଧିକାରୀ ଆସିଥାନ୍ତି । ଉତ୍ତରାଞ୍ଚଳ ରାଜସ୍ୱ କମିଶନର ସମ୍ବଲପୁରରେ ଥାଆନ୍ତି । ଟୁରରେ ଆସିଥାନ୍ତି । ତାମିଲଆନ ଆଇସିଏସ୍ । ଖୁବ୍ ଯୋଗ୍ୟ ଜ୍ଞାନୀ ଓ ପାରିବାର ମାତ୍ର ମନ୍ତ୍ରୀମାନଙ୍କୁ ପଛରେ ତାମିଲଆନ ତେଲୁଗୁମାନଙ୍କ ମେଳରେ ଏଗ୍ରିଗଣ୍ଡାଲୁ (Iagree) କହୁଥିଲେ । ତଥାପି ସାମନାରେ ଭକ୍ତି ଦେଖାଇବାରେ କୃପଣ ନଥାନ୍ତି । ସଭାରେ କମିଶନର ଉପସ୍ଥିତ । ମନ୍ତ୍ରୀଙ୍କ ଭାଷଣ ପୂର୍ବରୁ ଦେଖାଗଲା ଏସ୍‌ଡ଼ିଓ ଉପଜିଲ୍ଲାପାଳ ନାହାନ୍ତି ।  ସଭାର ଶୃଙ୍ଖଳାରକ୍ଷା ଓ ସୁପରିଚାଳନାରେ ତାଙ୍କର

ଦାୟିତ୍ୱ ବେଶୀ । ସମସ୍ତେ ତାଙ୍କୁ ଖୋଜିବା ଅବସରରେ ଏସଡ଼ିଓ ଶ୍ୟାମସୁନ୍ଦର ପରିଚ୍ଛା ହାଜର ହେଲେ । ତାଙ୍କ ହାତରେ ଗୋଟାଏ ତେଲ ଗିନା । ସୋରିଷତେଲ ଭରିଛି । ବିଳମ୍ବ କାଇଁକିର ଉତ୍ତରରେ ସେ କହିଲେ "ମାନନୀୟ ମନ୍ତ୍ରୀ କାଲି ସଭାରେ କହିଲେ ଏସଡ଼ିଓ କଲେକ୍ଟର ସମସ୍ତେ ତମର ଚାକର । ତମେ ତାଙ୍କର ଖାଉନ୍ଦ । ମୁଁ ଆଜି ଭାବିଲି ମନ୍ତ୍ରୀଙ୍କ ସଭା ଆଗରୁ ଖାଉନ୍ଦମାନଙ୍କର ଟିକେ ପାଦସେବା କରିବି । ସେଥିପାଇଁ ଏଇ ତେଲ ଗିନାଧରି ଯେତେ ଗାଁ ପ୍ରଧାନ, ନାୟକ, ସରବରାକାର ଆସିଛନ୍ତି ସମସ୍ତଙ୍କୁ ପାଦ ବଢ଼େଇ ମତେ ଦେଲ ମାଲିସ କରିବା ସୁଯୋଗ ଦେବାକୁ କହୁଛି । ଜଣେ ହେଲେ କେହି ପାଦ ଦେଖାଉ ନାହାନ୍ତି । ତେଲ ଗିନା ସେମିତି ଭରିଛି ।" ଚାରିଆଡ଼େ ହସର ଜୁଆର । ମନ୍ତ୍ରୀଙ୍କୁ କଥାଟା ଭଲ ଶୁଣାଗଲା ନାହିଁ । ମାତ୍ର କଣ କରାଯାଏ ସେ ଗମ୍ଭୀର ହୋଇ କଲେକ୍ଟର କମିଶନରଙ୍କୁ ଅନେଇଲେ । ସେ ଦିନ ସଭାରେ ମନ୍ତ୍ରୀ ଆଉ ସେବକ ଚାକରଙ୍କ ଦାୟିତ୍ୱ ବୁଝାଇ ନାହାନ୍ତି । ମାତ୍ର ମନ୍ତ୍ରୀଙ୍କୁ ଏଗ୍ରିଗଣ୍ଡାଲୁ କହୁଥିବା କମିଶନର ଏସଡ଼ିଓଙ୍କ କାର୍ଯ୍ୟ ସମୀକ୍ଷା କରି ଲେଖିଲେ 'ଗୁରୁତର ବିଷୟକୁ ସେ ହାଲୁକା ଭାବେ ଗ୍ରହଣ କରି ଗୁରୁତ୍ୱ ନଷ୍ଟ କରନ୍ତି । ତାଙ୍କ ଦାୟିତ୍ୱବୋଧ କମ୍' । ଏହି ମନ୍ତବ୍ୟ ଫଳରେ ଶ୍ୟାମସୁନ୍ଦର ରାଜ୍ୟ ପ୍ରଶାସନିକ ସେବାରୁ ଅଧିକ ଉପରକୁ ଯାଇପାରିଲେ ନାହିଁ । ଅଥଚ ଯେତେବେଳେ ଗଡ଼ଜାତ ଓଡ଼ିଶାରେ ମିଶିଲା ୧୯୪୯ ମସିହା ଓଡ଼ିଶା ସିଭିଲ୍ ଲିଷ୍ଟ ମୁତାବକ ଯେତେବେଳେ ପ୍ରଥମେ ଅଳ୍ପ କେତେଜଣ ଗଡ଼ଜାତ ଅଧିକାରୀଙ୍କୁ ଡେ଼ପୁଟି କଲେକ୍ଟର ପାହିଆ ପାଇ ଯୋଗ୍ୟ ବିବେଚନା କରିବା ନିଷ୍ପତ୍ତି ନିଆଯାଇଥିଲା ଶ୍ୟାମସୁନ୍ଦର ସେଥିରେ ଅନ୍ତର୍ଭୁକ୍ତ ହୋଇଥିଲେ । ଖାଲି ଯେ ଓଡ଼ିଶାରେ ଏମିତି ହୋଇଥିଲା ତାହା ନୁହେଁ ।

ସ୍ୱାଧୀନତା ପ୍ରାପ୍ତି ପରେ ରାଜନୈତିକ ନେତାମାନେ ଅଧିକାରୀମାନଙ୍କ ପ୍ରତି ଅବିଶ୍ୱାସ ବିରାଗ ଓ ଆଚରଣରେ ସନ୍ଦେହ ଦେଖାଇବା ଚାରିଆଡ଼େ ଦେଖାଦେଇଥିଲା । ଆର ସି ନୋରୋନ୍ହା ୧୯୩୯ ମସିହାରେ ଆଇସିଏସ୍‌ରେ ନିଯୁକ୍ତି ପାଇଥିଲେ । ମଧ୍ୟ ପ୍ରଦେଶ ତାଙ୍କର କର୍ମକ୍ଷେତ୍ର ଥିଲା । ଆଦିବାସୀ ବହୁଳ ବସ୍ତର ଓ ଦଣ୍ଡକାରଣ୍ୟରେ କାମ କରି ସେ ଆନନ୍ଦ ପାଉଥିଲେ । ମୁଖ୍ୟ ଶାସନ ସଚିବ ବାଛିବାରେ ତାଙ୍କ ପ୍ରତି ଅବହେଳା ଦେଖାଯାଉଥିଲା । ଶେଷରେ ଯେତେବେଳେ କରାଗଲା ସେ ମୁଖ୍ୟମନ୍ତ୍ରୀଙ୍କୁ ସାକ୍ଷାତ କରି ସର୍ତ୍ତ ଦେଲେ 'ମୋର କଲମଟିର ମୂଲ୍ୟ କେଇଟଙ୍କା । ମୁଁ ସେଇ ଦାମ ଦେଇ କିଣିଛି । ତାହା କେବଳ ମୋର କଥା ଓ ବିବେକ ମାନି ଲେଖିବ । ଆଉ କାହା କଥାରେ ଚାଲିବ ନାହିଁ । ତା ପରେ ମୋ ଉପରେ ମୁଖ୍ୟମନ୍ତ୍ରୀଙ୍କ ଯେଉଁଦିନ ଆସ୍ଥା ରହିବ ନାହିଁ ସେ ମତେ ଜଣାଇଲେ ମୁଁ ଏହି ପଦରୁ ଚାଲିଯିବି' । ତାଙ୍କ ଆତ୍ମଜୀବନୀର ନାମ ସେ ଦେଇଛନ୍ତି A

tale told by an idiot । ସେଥିରେ ସେ ନିଜର ଅଭିଜ୍ଞତା ଲେଖିଛନ୍ତି । ସେ ଜିଲ୍ଲାପାଳ ଥାଆନ୍ତି । ଗୋଟିଏ ସଭାରେ ଜଣେ ମନ୍ତ୍ରୀ ଲୋକଙ୍କୁ ଶୁଣାଇଲେ "ଆଇସିଏସ୍‌ରେ ଏ ଯେଉଁ କର୍ମଚାରୀ ତମ ଆଗରେ ବସିଛନ୍ତି ସେ ଏ ପର୍ଯ୍ୟନ୍ତ ତମର ଖାମିନ୍ଦ ଥିଲେ ବର୍ତ୍ତମାନ ସେ ତୁମର ଚାକର । ସେ ତୁମ୍ଭର କୁକୁର । ତୁମ୍ଭେମାନେ ତାଙ୍କ ପ୍ରତି ଯେପରି ଚାହିଁବ ସେପରି ବ୍ୟବହାର କରି ପାରିବ । ବର୍ତ୍ତମାନ ଲୋକମାନଙ୍କର ଯୁଗ ଆସିଛି । ନୋରୋନ୍ନ ଅନୁମତି ସହିତ ସେ ସଭାରେ ଲୋକମାନଙ୍କୁ ବୁଝାଇକରି କହିଲେ ।

"ଏଇଟା ନିପଟ ସତକଥା ଆମେ ସରକାରୀ ଚାକିରିଆ । ଆପଣଙ୍କର ବର୍ତ୍ତମାନ ଭୃତ୍ୟ । ଆମ୍ଭେମାନେ ସବୁବେଳେ ଆପଣଙ୍କର ସେବାକାରୀ ଆପଣମାନେ ନିଶ୍ଚୟ ସ୍ୱୀକାର କରିବେ ଯେ ଆମ୍ଭେମାନେ ନିଜର ଶକ୍ତି ଅନୁସାରେ ଆପଣମାନଙ୍କର ସେବା କରିବାକୁ ପ୍ରସ୍ତୁତ ହୋଇଅଛୁ । କୁକୁରର ଉଦାହରଣ ଯାହା ଦିଆଗଲା ମୁଁ ମୋ କୁକୁରକୁ ଅତିଶୟ ଶ୍ରଦ୍ଧା କରେ । ମୋର ବିଶ୍ୱାସ ମୋ କୁକୁରକୁ ମୁଁ ଯେପରି ଶ୍ରଦ୍ଧା ସହିତ ପାଳୁଛି ଆମ ପ୍ରତି ଆପଣମାନେ ସେହିପରି ମାନବିକତା ଓ ସହୃଦୟତା ଦେଖାଇଲେ କେହି କିଛି ଆପତ୍ତି କରିବେ ନାହିଁ । ସଭା ସରିଲା । ସେହି ମନ୍ତ୍ରୀଙ୍କୁ କିଛିଦିନ ପରେ ମୁଖ୍ୟମନ୍ତ୍ରୀ ରବିଶଙ୍କର ଶୁକ୍ଲ ମନ୍ତ୍ରୀମଣ୍ଡଳରୁ ବାଦ ଦେଇଥିଲେ ।

ମୁଖ୍ୟମନ୍ତ୍ରୀ ଥରେ ନୋରାନ୍ନାଙ୍କୁ କହିଲେ ଆପଣ ଯେମିତି ମୋର ସବୁ କଥାରେ ନାସ୍ତିବାଣୀ ଶୁଣାଉଛନ୍ତି ଜଣାଯାଉଛି ଆପଣ ଚିଫ୍ ସେକ୍ରେଟ୍ରେରୀ ହେବାକୁ ଇଚ୍ଛାକରୁ ନାହାନ୍ତି । ନୋରୋନ ଉତ୍ତର ଦେଲେ ମହାଶୟ ଆପଣ ଠିକ୍ ଧରିଛନ୍ତି । ଆପଣଙ୍କ" ସରକାର ମତେ ତହସିଲଦାର କରି ପଠେଇଦେଲେ ମୁଁ ରାଜିଅଛି ମାତ୍ର ମତେ ଅଳ୍ପ କାମ ମିଳିବା ସହିତ ସରକାର ଚିଫ୍ ସେକ୍ରେଟ୍ରେରୀ ଦରମା ଦେଇ ମତେ ପୋଷିବେ । ମନ୍ତ୍ରୀ ଚୂପ ହେଲେ ।

ଏମିତି ଥିଲା ସ୍ୱାଧୀନୋତ୍ତର ଦେଶର ପ୍ରଶାସନିକ ପରିସ୍ଥିତି ।



# ଦେଓ୍ୱାନଙ୍କ ଦରବାରରେ

ବନ୍ଧୁ ବଳିବର୍ଦ୍ଦଙ୍କର ନାମଟି ପିତୃଦତ୍ତ ନୁହେଁ । ଏକ ପ୍ରକାର ସ୍ୱନିର୍ବାଚିତ । ପିତୃଦତ୍ତ ନାମରେ ପଦ୍ମଲୋଚନ କଣା ବି ହୁଏ । ସୁଧୀର କୁମାର ଶ୍ରେଣୀର ସର୍ବାପେକ୍ଷା ଦୁଷ୍ଟ ଛାତ୍ର ହୁଏ । ମାତ୍ର ତାଙ୍କ ଦେଶୀୟ ରାଜ୍ୟରେ ରାଜଅନୁଗୃହୀତ ନାମରେ ସେ ପ୍ରକାର ଦୋଷ ଆରୋପ ହୋଇ ନ ପାରେ । ବାପା ଦୁଇଭାଇଙ୍କର ନାମ ଦେଇଥିଲେ ବଦଳି ଓ କଦଳୀ । ବଦଳି ଯେତେବେଳେ ଇସ୍କୁଲରେ ପାଠ ପଢ଼ିଲେ ମହାଜନ ବାପାଙ୍କ ପଇସା ଖରଚ କରିବା ସଙ୍ଗେ ସଙ୍ଗେ ନିଜେ ଟିକେ ମଣିଷ ପରି ଦେଖାଗଲେ, ସାହେବ ହେବାର ପ୍ରବୃତ୍ତି ମନରେ ତୀବ୍ର ଭାବରେ ଜାଗ୍ରତ ହେଲା । ବିଂଶ ଶତାବ୍ଦୀରେ କଳାଚମଡ଼ା ଦେଶୀ ସାହେବ ହେଲେ ନାଁ ଟା ଗନ୍ଧିଆ ମନ୍ଧିଆ ହେଲେ ଚଳିବ ନାହିଁ ଏକଥା ତାଙ୍କୁ ଭଲ ମାଲୁମ ଥିଲା । ନାଁଟା ବଦଳାଇବାର ଅଦମ୍ୟ ଆଶା ଦିନକୁ ଦିନ ପ୍ରବଳ ହେବାକୁ ଲାଗିଲା । କେତେ ପ୍ରକାର ନାଁ ମନକୁ ଆସେ 'ଉଦ୍ଦାମ କୁମାର', 'ଅନୀଳମୋହନ', 'କୃଷ୍ଣ ଦ୍ୱୈପାୟନ', 'ଅଳର୍କ' ଇତ୍ୟାଦି । ମୋଟ ଉପରେ ପୌରାଣିକ ଓ ପ୍ରାଗ ଐତିହାସିକ ଯୁଗରୁ ବିଂଶ ଶତାବ୍ଦି ପର୍ଯ୍ୟନ୍ତ ଶ୍ରାବ୍ୟ ଅଶ୍ରାବ୍ୟ ସବୁ ପ୍ରକାର ନାମ ଯାଇ ଯେଉଁ ନାଁ ଟି ସେ ଉପଯୁକ୍ତ ମନେକଲେ ତାହା 'ରାଜକୁଳ ସାରମେୟ' । ନାଁଟି ଏକଦମ୍ ନୂଆ । ତା ନିଶ୍ଚିତ ରାଜ ଅନୁଗ୍ରହ ପ୍ରାପ୍ତି ନିମିତ୍ତ ଷୋଳଅଣା ଉପଯୋଗୀ । ଠିକ୍ ହେଲା ମାଟ୍ରିକୁଲେଶନ ପରୀକ୍ଷା ସମୟରେ ନାମଟିକୁ ବଦଳିରୁ ପରିବର୍ତ୍ତନ କରି ରାଜକୁଳ ସାରମେୟ କରାଯିବ । ହେଲେ କାଳସ୍ୟ କୁଟିଳଗତି । ବଦଳିଙ୍କର ବିଦ୍ୟାଉନ୍ନତି ଅଧ୍ୟୟନରେ ଗତି ଆହୁରି କୁଟିଳତର । ମାଟ୍ରିକୁଲେଶନ ପର୍ଯ୍ୟନ୍ତ ପହଞ୍ଚିବାକୁ ଯେଉଁ ଅଠର ବର୍ଷ ଲାଗିଗଲା ସେଥିପାଇଁ କେବେ ଆଖି ଦାୟୀ ତ କେବେ ମୁଣ୍ଡ ଦାୟୀ । ପୁଣି ଯା ଭିତରେ ଦନ୍ତା ପଣ୍ଡିତଙ୍କ ଅନୁଗ୍ରହରୁ ବଦଳି ନାଁଟା ଲୋକମୁଖରେ ବଳୀବର୍ଦ୍ଦ ନାମରେ ଚାଲୁ ହୋଇଗଲାଣି । କିପରି ଏପରି ଏକ ସଂସ୍କୃତ ଶବ୍ଦ ବନ୍ଧୁ ମୁଖରୁ ବନ୍ଧୁ ପରିଜନ ବିଦ୍ୟାଳୟର ଶ୍ରେଣୀଭିତରୁ କିପରି ସବୁ ଶ୍ରେଣୀ ହିତାକାଂକ୍ଷୀମାନଙ୍କ ପାଖରେ ପହଞ୍ଚିପାରିଲା ତାହା ଗବେଷଣା ସାପେକ୍ଷ । ତେବେ ନାଁଟା

ସଂସ୍କୃତ ଶବ୍ଦ ହୋଇଥିବାରୁ ସେ ଷଣ୍ଢପରି କର୍ମଠ ଥିବାରୁ ତାଙ୍କର ଗର୍ବ ଓ ଗୌରବର ବସ୍ତୁ ହୋଇ ଉଠିଲା । ମାଟ୍ରିକ୍ୟୁଲେଶନ ପରୀକ୍ଷା ଦେବାକୁ ଯେତେବେଳେ ବଦଲି ତ୍ରିକନ୍ୟା-ଜନକ ଭାବରେ ରାଜ୍ୟର ଏକମାତ୍ର ହାଇସ୍କୁଲ ଭିତରେ ପଶିଲେ ସେତେବେଳକୁ ତାଙ୍କର ଜଣେ ହିତାକାଂକ୍ଷୀ ବନ୍ଧୁ ପରୀକ୍ଷା ଫର୍ମ ପୂରଣ କରି ଫିସ ଦେଇସାରିଥିଲେ । ବହୁଦିନରୁ ଇପ୍ସିତ ନାମ ପରବର୍ତ୍ତନ ମଧ୍ୟ ତାହା ସହିତ ହୋଇସାରିଥିଲା। ମୁଣ୍ଡରୁ ଗୋଟାଏ ବୋଝ ଗଲା । ବଦଳି ବଳୀବର୍ଦ୍ଦରେ ପରିଣତ ହେଲେ ।

ଏସବୁ ଢ଼େରଦିନର ପୁରୁଣା କଥା - ବଦଳି ଗଣିତ ଶାସ୍ତ୍ରରେ କୃତିତ୍ୱର ସହିତ ଶିକ୍ଷା ଲାଭ କରି ଯେତେବେଳେ କଲିକତାରୁ ଫେରିଲେ ସେତେବେଳେ ମହାରାଜାଙ୍କର ଆୟୁ କ୍ଷୀଣ ହୋଇ ଆସୁଥିଲା- ରାଜ୍ୟ କୋର୍ଟ ଅଫ ୱାଡ଼ସ୍ ହୋଇଯିବ । ଧଳା ଚମଡ଼ା ଗୋରୁ ମାଉଁସ ଖିଆ ସାହେବ ଗୁଡ଼ାକ କାଳେ ଗୁଣୀଗୁଣ ନ ଚିହ୍ନିବେ ଧୁଆମୂଳା ଅଧୁଆମୂଳା ସବୁ ସମାନ କରିଦେବେ ଏଇ ଡରରେ ମହାରାଜା ଯଥେଷ୍ଟ ତୈଳମର୍ଦ୍ଦନ ଓ ନଜରାନା ପ୍ରାପ୍ତି ପରେ ତାଙ୍କୁ ଫାଇନାସିଆଲ ଆଡ଼ଭାଇଜର ଅର୍ଥାତ ଅର୍ଥନୈତିକ ପରାମର୍ଶଦାତା ପଦରେ ନିଯୁକ୍ତି କରିଦେଲେ । ନାଁଟା ରାଜକୁଳ ସାରମେୟ ଥିଲେ କେତେ ଉପକାରରେ ଆସି ଥାଆନ୍ତା ସେ କଥା ସେତିକି ବେଳେ ମନେ ପଡ଼ିଲା । ହେଲେ ନେଡ଼ିଗୁଡ଼ ତ କହୁଣିକି ବୋହି ଗଲାଣି । କ'ଣ କରିହେବ ଆଉ ! ସମୟ ତ କାହାକୁ ଅନେଇ ରହୁନାହିଁ । ସତକୁ ସତ ମହାରାଜା ଆଖି ବୁଜିଲେ । ସର୍ବଗ୍ରାସୀକାଳ ମହାବଳୀଠାରୁ ବଳୀ । ସବୁ ନଜରାନା ମାମୁଲି, ତେଲ ମାଲିସ ପଛରେ ପକାଇ ଦେଇ ରିକ୍ତ ହସ୍ତରେ ସେ ଲେଉଟି ଗଲେ । ସେଇ ଗୋରୁ ମାଉଁସଖିଆ ସାହେବ ପାଳି ପଡ଼ିଲା । ପଞ୍ଝହତା ମରଦ । ଏତେ ବଡ଼ ଚେକା ମୁହଁ । ଦେଖିଲେ ଡ଼ର ଲାଗିବ । ଆସି ପହଞ୍ଚିଗଲେ ଦେୱାନ ହୋଇ । ସାହେବଟାର ସିନା ଚେହେରାଟା ଦେଖିବାକୁ ଦୁର୍ଦ୍ଦାନ୍ତ ହେଲେ ଅନ୍ତରର କୋମଳତା ବବୁରଚି ଅସରଫ ଖାଁ ଠାରୁ ଆରମ୍ଭ କରି ସିରସ୍ତାଦାର ସୁନ୍ଦରାଲାଲ ପର୍ଯ୍ୟନ୍ତ ସମସ୍ତେ ଅନୁଭବ କଲେ । 'ଡଗଲାସ ସା'ବ ପରି ଫେରେ ସାଆବ ଅଛନ୍ତି' । ପାନଖିଆ କଳାଦାନ୍ତ କେତୋଟି ଦେଖାଇ ଟାଙ୍ଗର ମୁଣ୍ଡର ଏକାଂଶରେ ଥିବା ଧଳାବାଳରୁ ଧୂଳି ଝାଡୁ ଝାଡୁ ସିରସ୍ତାଦାର ଏବେ ବି କହିବାର ଶୁଣାଯାଇଛି । 'ବାପରେ ବାପ, ଆସିବାର ସାତ ଦିନ ଭିତରେ ସା'ବ ଦିନେ ଅଫିସରେ ପଶିଗଲା- ସା'ବ ବାପୁଡ଼ା ଫେରେ ଅଫିସକୁ ଯିବ, ପୁଣି ଚପରାଶି ବରକନ୍ଦାଜ କାହାକୁ ସାଙ୍ଗରେ ନ ନେଇ ରବର ତଳଦିଆ ଯୋତା ମଡ଼ାଇ ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ ବୁଲିବ । ଏତ ମୋର ସ୍ୱପ୍ନରେ ବି କଳ୍ପନା କରିବାର ବି ନୁହେଁ । ହେଲେ କଣ ହେବ ସା'ବଟା ସେମିତିଆ । ଗୋଡ଼ ଦି'ଟାକୁ ଟେବୁଲ ଉପରେ ପକାଇ ମୁଁ ଟିକେ ଆଖିବୁଜି ଥିବି କି ନାଁଇ, ସାଇବ ପିଠିରେ ଟିକେ ହାତ ଥାପୁଡ଼ାଇ

ଦେଲା "ବାବୁ ଯାଅ ଟିକେ ବୁଲିଆସ, ଚା ଯଦି ଖାଅ କପେ ଖାଇଦିଅ।" ମୋର ତ ପିଳେଇ ପାଣି । ଭାବିଲି ପିତୃପୁରୁଷରୁ ଗଡ଼ି ଆସୁଥିବା ଚାକିରିଟା ଗଲା । ହେଲେ ଦିନେ ବି କଥାଟା ଉଠିନାଇଁ । ଆଉ ସାଅବଟା ଯେତେଦିନ ରହିଲା ଦିନେ ହେଲେ ମଣିଷ ଟିକେ ଏବପରି ଅଫିସରେ ଶୋଇବାର ସୁବିଧା ହେଲେ କ'ଣ ପାଇଛ ?"

ଡଗଲାର ସାହେବ ଇଂରାଜି ସାହିତ୍ୟରେ ଏମ୍.ଏ. । ଅନର୍ଗଳ ଇଂରାଜି କହନ୍ତି। ସବୁ ପ୍ରକାର ଆଲେଚନାରେ ଯୋଗ ଦିଅନ୍ତି । ଅର୍ଥନୀତି, ରାଜନୀତିଠାରୁ ପଦାର୍ଥବିଜ୍ଞାନ ରସାୟନଶାସ୍ତ୍ର ପର୍ଯ୍ୟନ୍ତ ସବୁଥିରେ କିଛି ନାଁ କିଛି ଦଖଲ ଅଛି । ଦେଓ୍ୱାନ ହେବାର ସାତ ଦିନ ପରଠାରୁ ସାହେବ ଡାକନ୍ତି ଦିନକୁ ଦୁଇ ଜଣ ହିସାବରେ ଉଚ୍ଚ କର୍ମଚାରୀମାନଙ୍କୁ ଡିନର ପାଇଁ । ସାହେବ ଏକୁଟିଆ, ଅବିବାହିତ, ଗପସପ ସବୁ ଚାଲେ । ତା ସହିତ ବାବୁ ମାନଙ୍କର ମୁଣ୍ଡର ମସଲା କେତେ ତା ମଧ୍ୟ ନଜର ଉପରକୁ ଧରାଯାଏ । ସେ ପରୀକ୍ଷା ବିଷମ ପରୀକ୍ଷା ମାନେ ବହି ପଢ଼ି ପାସ କରିବା ପରି ସରଳ ଉପାୟ ସେଥିରେ କିଛି ନାହିଁ।

ଦିନେ ପାଳି ପଡ଼ିଲା ବଳବର୍ଦ୍ଧ ବାଗ ଓ କରଭୋରୁ କରଙ୍କର । ଅର୍ଥନୈତିକ ପରାମର୍ଶଦାତା ତାଙ୍କ ସାଙ୍ଗକୁ ଆୟକର ବିଶାରଦ । ସାହେବ କଥାବାର୍ତ୍ତା ଭିତରେ ଯାହା ପଚାରୁଥିଲେ ସେଗୁଡ଼ାକ ସବୁର ଉତ୍ତର ଦେବା ତ ସହଜେ ଦୁହିଁଙ୍କ ପକ୍ଷରେ ଅଡୁଆ- ଏ କ'ଣ ? ଆମେ ତ ଘରେ କ୍ଲବରେ ରଜାଘରେ ସଭାରେ ସବୁ ଟ କଲୁ ଆଲୋଚନା କରୁ ମହାରାଣୀଙ୍କର ନୂଆ କୁକୁରଟାର ଦାମ୍, ମହାରାଜାଙ୍କର କୁରୁତା ତିଆରି କଲା ଦରଜିର ମଜୁରୀ, ରଜାଘର ଉଆସରେ ପ୍ରଥମ ପାହାଚରେ ପଡ଼ିଥିବା ଶଙ୍ଖ ମଲ ମଲ ପଥରର ଜାତି, ଶ୍ରୀଛାମୁଙ୍କର ' କାଠିଲାଗି ବଦଳରେ କ୍ଲୋରୋଫିଲଯୁକ୍ତ କଲିନସ-ଲାଗି । ହେଲେ ସାଆବ ପଚାରୁଛି ଫାସିଦଣ୍ଡ କେତେଦୂର ମାନବିକତା ସାପେକ୍ଷ, ମଧ୍ୟ ପ୍ରାଚ୍ୟ କମ୍ୟୁନିଷ୍ଟ ପ୍ରଭାବ, ଜର୍ମାନିର ଏକୀକରଣ । ଆମେ କଣ ଇସ୍କୁଲ କଲେଜ ପିଲା । ରଜାଘର ଚାକର ବାକର ପୋଇଲି ପରିବାରୀ ହଗାମୁତା ଏସବୁ ଛାଡ଼ି ଏ ଗୁଡ଼ାକର ଖବର ରଖିବୁ । ଯାହାହେଉ କରେ ଭାବୁଥିଲେ ବଳୀବର୍ଦ୍ଧ ଯାହା କହୁଛନ୍ତି ଠିକ୍ । ବଳୀବର୍ଦ୍ଧ ଭାବନ୍ତି କରେ ଯାହା କହନ୍ତି ତାହା ଠିକ୍ । ହେଲେ ଉପର ହାକିମ ଯେ ସେଇ ତ ସାହେବଙ୍କୁ ଦେଖାଇଦେବେ ତାଙ୍କର ଏସବୁ ବିଷୟରେ ଦଖଲ । କରଭୋରୁ କରଙ୍କଠାରୁ ସେ ଢ଼େର ଉପରେ । ସୁଯୋଗ ମିଳୁଛି କୁଆଡୁ ? ମଝିରେ ସାହେବ ପଚାରିଲେ ଓମର ଖାୟାମ ତମକୁ କିପରି ଲାଗେ ? ମୋର ଦୁଃଖ ହୁଏ ମୁଁ ତା ଭଲ ରୂପେ ଉପଭୋଗ କରି ପାରିଲି ନାହିଁ ।' ପ୍ରଶ୍ନଟା କରଭୋରୁ କି ବଳୀବର୍ଦ୍ଧ କାହାପ୍ରତି ଉଦ୍ଦିଷ୍ଟ ଜାଣି ହେଲା ନାହିଁ । ଉପରହାକିମଙ୍କ ପକ୍ଷରେ ମୌନତା ଶ୍ରେୟ ନୀତିରେ ବଳୀବର୍ଦ୍ଧ ରହିଲେ ତୁନି ।

ହେଲେ କରଭୋରୁ କହି ପକାଇଲେ "ହଜୁର ହିଜ ହାଇନେସ ତ ସେରିକୁ ଭାରି ପସନ୍ଦ କରନ୍ତି । ଆମେ ତ ସେଇଥିରେ ଅଭ୍ୟସ୍ତ । ଅନ୍ୟ ଜିନିଷ ବ୍ୟବହାର କରିବାର ସୁଯୋଗ ଆମକୁ ମିଳିଲା ବା କେତେବେଳେ । ହଜୁରଙ୍କ ଦୟା ହେଲେ କେଜାଣି ...? ତାଙ୍କୁ ସମାପ୍ତିରୁ ବଞ୍ଚିତ କରି ବଳୀବର୍ଦ୍ଧ ବୟୋଜନୋଚିତ ଗାମ୍ଭୀର୍ଯ୍ୟ ଓ ପଣ୍ଡିତମନ୍ୟ ଦର୍ପରେ ଆରମ୍ଭ କଲେ "କରଭୋରୁ ବାବୁ , ଆପଣ ଯାହା ଜାଣନ୍ତି ନାହିଁ ସେ ବିଷୟରେ ହିଜ ହାଇନେସଙ୍କ ସମ୍ପର୍କରେ ଆଲୋଚନା କରନ୍ତି କାହିଁକି ? ଆପଣଙ୍କର ଅଜ୍ଞତା ମୋ ମନକୁ ବ୍ୟଥା ଦେଉଛି । ଓମର ଖାୟାମ କ'ଣ ସରାବ। ମୁଁ କଣ ସରାବ ଖାଏ । ମୁଁ ନିଜେ ପରା ଦେଖିଥିବି ପାରିସରୁ ହଜାରେ ଥର ହିଜ ହାଇନେସ ମଗାଇଥିବେ ଏକୁ । ସେଇଟା ଏକ ପ୍ରକାରର ବିଳାତି ଛେନା - ଚିଜ୍ ଛି, ଛି, ଏ ପ୍ରକାର ଉତ୍ତର ଶୁଣି ହଜୁର ଆମ୍ଭମାନଙ୍କ ବିଷୟରେ ବି କ୍ଷୁଦ୍ର ଧାରଣା କରିବେ ।" ହଜୁରଙ୍କୁ ଲକ୍ଷ୍ୟ କରି କହିଲେ, 'ହଜୁର ତାଙ୍କର ଅଜ୍ଞତା ମାପ କରିବେ' । ହଜୁରଙ୍କର ଧୈର୍ଯ୍ୟ ସୀମା ଅତିକ୍ରମ କରିଯାଇଥିଲା ସେତେବେଳକୁ । କର୍ମଚାରୀ ଦୁଇଜଣଙ୍କୁ ଡିନରକୁ ନିମନ୍ତ୍ରଣ କରିଛନ୍ତି ଏ କଥା ଡଗଲାସ ସାହେବ ଭୁଲିଗଲେ । ହଠାତ୍ ଚୌକିରୁ ଉଠି ଆରମ୍ଭ କଲେ " ଆଜି ଦିନଟା ଏତିକିରେ ଶେଷ ହେଉ" । ସଲାମ ଦୁଇଟାକୁ ଅପେକ୍ଷା ନ କରି ସାହେବ ବୈଠକଖାନାଘରୁ ଶୋଇବା ଘର ଆଡ଼େ ପାଦ ପକାଇଲେ ।

କେହି କାହାକୁ ପାଟି ନ ଫିଟାଇ ବଳୀବର୍ଦ୍ଧ ଓ କରଭୋରୁ ସ୍ୱସ୍ଥାନରୁ ଉଠି ବଙ୍ଗଳାର ଫାଟକ ପାଖରେ ହାଜର । ଘର ଧରିବା ଯାକେ କେହି କାହାର ମୁହଁ ଖୋଲି ନାହାନ୍ତି । ବଳୀବର୍ଦ୍ଧଙ୍କ ଘରଟାତ ଦେଓ୍ୱାନ ଘରର ପାଖ । ଘରେ ପହଞ୍ଚି ପହିଲେ ଅଭିଧାନ ଦରକାର । ଚାକିରି କରିବାର ଦଶ ବର୍ଷ ପରେ ଆଜି ସେଇଟା ପ୍ରଥମେ ଖୋଲିବାକୁ ପଡ଼ିଲା । ଏ କଣ ସାହେବ କହିଲା ଓମର ଖାୟାମ ଏ ପ୍ରକାର ଶବ୍ଦ ଡିକ୍ସନାରୀରେ ତ ମିଳିବାର ନାଇଁ - ଏ କ'ଣ ପୁରୁଣା ଡିକ୍ସନାରୀରେ ନାଇଁ - ଏ ପୁଣି ନୂଆଟାଏ ତ ଏବେ ଅଫିସରେ କିଣା ଯାଇଛି - ଅଫିସ ଘରେ ପୃଷ୍ଠା ଓଲଟାଇ ଓଲଟାଇ ସେଥିରେ ମଧ୍ୟ ନାହିଁ । ଆଉ କ'ଣ ଏଇଟା ଓଡ଼ିଆ ଅଭିଧାନରେ ମିଳିବ । ହଉ ଦେଖାଯାଉ - ଓଡ଼ିଆ ଅଭିଧାନଟା ତ କେଜାଣି ଥରେ ଖୋଲିବା ପରି ମନେ ପଡୁନାହିଁ । ଓଡ଼ିଆରୁ କେଉଁଟା ଜଣା ନାହିଁ ଯେ ଫେର ବହି ଖୋଲିବା ଦରକାର ପଡ଼ିବ । କାହାପରେ କଣ ଦେଖି । ପୃଷ୍ଠା ଓଲଟାଇ ଓଲଟାଇ ପଡ଼ିଲା ବି । ଏଁ ସବା ଉପରେ ଶବ୍ଦ କଣ ବଳୀବର୍ଦ୍ଧ ଅର୍ଥ ବୃଷଭ ନ ହେଉ ବଳଦ ଯେଁ ଯେଁ ....ଧରମଛଡ଼ା କଥା ସବୁ ଏଥିରେ । ମୋ ନାଁରେ ଅର୍ଥ ପୁଣି କଣ ଏଇଆ । ଚଣ୍ଡାଳ ଦନ୍ତା ପଣ୍ଡିତ ମଲାଣି ନଇଲେ ....ତେଣିକି ଅଶ୍ରାବ୍ୟ ଶବ୍ଦ ଗୁଡ଼ିକ ଯାହା ସେ ଅଭିଧାନରେ ନାହିଁ । ଦନ୍ତା ପଣ୍ଡିତଙ୍କ ଅମଳରେ ଅଲେଖ ଅଭିଧାନରେ ଥିଲା କି

ନାଇଁ । ଓମର ଖାୟାମ ଶବ୍ଦ ମିଳିଲା ନାହିଁ ।

....ରାତିଟା ଏମିତି ପାହିଲା -

ସକାଳେ ମନେ ପଡ଼ିଲା ବାଇଶ ବରଷ ହେଲା ନାଁ ବଦଳାଇବାର ଭୁଲଟା ଜଣାଗଲା ସାଆବ କହିବା ଶବ୍ଦ ଅର୍ଥ ବି ଅମାଲୁମ ରହିଲା । ସକାଳେ ସବୁଦିନ ପରେ କରଭୋରୁ କର ଆସିଲେ । ଗତରାତିର କଥା ସବୁ ଆଲୋଚନା ହେଲା । ବଳୀବର୍ଦ୍ଧ କଣ ମନ ଦୁଃଖ କରିବା ଲୋକ । ସବୁ ବୁଝାଇଲେ କହିଲେ "ଜାଣିନା କିହୋ ନାଁରେ କଣ ଅଛି ? କିଏ କାଳିଦାସ କହି ନାହାନ୍ତି ନାଁରେ କ'ଣ ଅଛି ଗୋଲାପ ଯେ କୌଣସି ନାଁରେ ଭାବିଲେ ମଧ୍ୟ ତାର ସୁଗନ୍ଧ ରହିବ । ମୁଁ ସେଇଟା ଇଂରେଜି ଅନୁବାଦରେ ପଢ଼ିଥିଲି । ଢ଼େର ଦିନ ତଳେ । ଟିକେ ଟିକେ ମନେ ଅଛି । ସାହେବ ଆମ କହିବା ନାଁରେ କାହିଁକି ଖପା ହେଲା ଜଣାଗଲା ନାହିଁ । ଏମିତି କିଛି ଦିନର ଅଭିଜ୍ଞତା ପରେ ଡଗଲାସ ସାହେବ ଗୋଟିଏ ମୁଦା ଲଫାପାରେ ଅଧା ସରକାରୀ ଚିଠି ପଲିଟିକାଲ ଡିପାର୍ଟମେଣ୍ଟକୁ ଲେଖିଲେ ମତେ ଏ ଅଧା ସ୍ୱର୍ଗରୁ ଅବ୍ୟାହତି ଦିଅ - ଅବସର ସମୟରେ ଏଠିକାର ପଣ୍ଡିତ ମଣ୍ଡଳିର ଜ୍ଞାନ ଗୌରବ ଖୋଜ କରିବାକୁ ମୁଁ ଅକ୍ଷମ - ଅଫିସର କାମ ମଧ୍ୟ ମତେ ପୁରା ସମୟ ଉପଯୋଗପାଇ ଯଥେଷ୍ଟ ନୁହେଁ ।

ଗଡ଼ଜାତ ସ୍ମୃତିଧରି ବରଷକ ନ ପୁରୁଣୁ ଡଗଲାସ ସାହେବ ନିଜ ପଲିଟିକାଲ ସର୍ଭିସକୁ ଫେରିଗଲେ । ବିଶାଳ ଉତ୍କଳରେ ଗଡ଼ଜାତର ମିଶ୍ରଣ ଫଳରେ ଉଭୟ ବଳୀବର୍ଦ୍ଧ ଓ କରଭୋରୁ ଉଚ୍ଚ ପଦରେ ଅଧିଷ୍ଠିତ ହେଲେ, ପୂର୍ବ ଅଭିଜ୍ଞତା ବ୍ୟବହାର କରି ଉନ୍ନତିର ଶୀର୍ଷରେ ପହଞ୍ଚିଲେ । ଖାଲି ଗୁଣ ଚିହ୍ନିବାକୁ ଡଗଲାସ ଭଳି ସାହେବମାନଙ୍କର ଅଭାବ ଜଣା ପଡ଼ିଥିଲା ।



# ବିଧାୟକ ଗଣାଧିପ

ଅଫିସରେ ଏସ୍.ଡ଼ି.ଓ. ଙ୍କୁ ମିଶାଇ ଚାରି ଜଣ ଗେଜେଟେଡ୍ ଅଫିସର । ସମସ୍ତେ ବେନାମୀ ଚିଠି ପାଇ ବ୍ୟସ୍ତ ହୋଇ ପଡ଼ିଲେଣି । କାହାର ସରକାରୀ କାର୍ଯ୍ୟ ସନ୍ତୋଷଜନକ ନୁହେଁ । କାହାର ପାରିବାରିକ ଜୀବନ ସାମାଜିକ ଶୃଙ୍ଖଳାରେ ନିୟନ୍ତ୍ରିତ ନୁହେଁ । କେହି ଅବା ଦୁର୍ନୀତିଗ୍ରସ୍ତ ବୋଲି ଅଭିଯୁକ୍ତ । ବେନାମୀ ପତ୍ରରେ ଏଇ ସବୁର ବର୍ଣ୍ଣନା । ଅକ୍ଷର ଏମିତି ଚାରି କୋଣ ଭାବରେ ଲେଖା ଯେ କାହାର ଏ ଅକ୍ଷର ସହଜରେ ଠଉରାଇ ହେବ ନାହିଁ । ସବୁ ଠାରୁ ବେଶୀ ପୀଡ଼ାଦାୟକ, ଲଫାପାରେ ଚିଠି ପଠାଇବାରେ ବେନାମି ପତ୍ରଲେଖକଙ୍କ ହାତରୁ ଡାକ ଖରଚ ପଡୁନାହିଁ । ସବୁ ଲଫାପା ଚିଠି ଗୁଡ଼ାକ ଉପରେ ସରକାରୀ ସରଭିସ୍ ଷ୍ଟାମ୍ପ ଲଗାଇଯାଇଥାଏ । ଏସ୍.ଡ଼ି.ଓ. ସବୁ ସ୍ଥାନୀୟ ଅଫିସର କର୍ମକର୍ତ୍ତାମାନଙ୍କୁ ସେମାନଙ୍କର ସରଭିସ୍ ପୋଷ୍ଟେଜ ଆକାଉଣ୍ଟ ଯାଞ୍ଚ କରିବାକୁ ପରାମର୍ଶ ଦେଲେ । ସମସ୍ତେ ଯାଞ୍ଚ କରି ଜଣାଇଦେଲେ । ସେମାନଙ୍କର ହିସାବ ଠିକ୍ ଅଛି । ବାହାରକୁ ଯିବା ଚିଠି ସହିତ ଷ୍ଟାମ୍ପ ଖରଚ ମିଳିଯିବା ପରେ ଜଣା ପଡୁଛି ହାତରେ ମହଜୁଦ ଷ୍ଟାମ୍ପ ଓ ହିସାବ ଠିକ୍ ଭାବରେ ଲେଖାଯାଇଛି । ଏସଡ଼ିଓ ବାଞ୍ଛାବଟ ରାଜସ୍ୱ ବିଭାଗର ପୋଖତ ବରିଷ୍ଠ କର୍ମଚାରୀ । ବିହାର ଓଡ଼ିଶା ରେକର୍ଡ଼ ମାନୁଏଲର ନିୟମ ଅନୁସାରେ ପ୍ରତି ସୋମବାର ଦିନ ତାଙ୍କର ହେଡ଼କ୍ଲର୍କ ଷ୍ଟାମ୍ପ ଯାଞ୍ଚ କରନ୍ତି । ତେଣୁ ତାଙ୍କ ନିଜ ଅଫିସର ଷ୍ଟାମ୍ପ ସେ କାହିଁକି ଯାଞ୍ଚ କରିବେ ।

ସବୁରି ଉତ୍ତର ମିଳିବା ପରେ ବାଞ୍ଛାବଟଙ୍କ ମନରେ ଗୋଟାଏ ଭାବନା ଆସିଲା ନିଜ ଅଫିସରେ ଷ୍ଟାମ୍ପ ହିସାବ ଦେଖିବାକୁ । ଏ ଛୋଟିଆ କାମ କଣ ଏସଡ଼ିଓ କରିବାର କଥା । ହେଡ଼ଗୁମାସ୍ତା କଥାଟା ଉଡ଼େଇ ଦେବାକୁ ବସିଲେ ମାତ୍ର ବାଞ୍ଛାବଟ ସେଇ ମୂହୁର୍ତ୍ତରେ ତାହା କାମରେ ପରିଣତ କଲେ । ଗଣାଧିପ ଏସ ଏସଏଲ୍‌ସି ପାସ୍ କରି ଲିଟେରେଟ୍ ଆଟେଣ୍ଡର (ପାଠୁଆ ପିଅନ) ଭାବରେ ଚାକିରି ଆରମ୍ଭ କରିଥିଲେ । ଚାଭି

ବରଷ ଭତ୍ତାରେ ଏବେ ଗୁମାସ୍ତା । ତାଙ୍କ କାମ ଅଫିସକୁ ଆସିବା ଚିଠିର ତାଲିକା ରଖିବେ । ବିଭିନ୍ନ ବିଭାଗକୁ ତାହା ପଠାଇବେ । ସେମିତି ବହିର୍ଗମନ ଚିଠିରେ ନମ୍ବର ପକାଇ ଡାକ ଟିକେଟ ଲଗାଇ ସେ ଗୁଡ଼ିକ ବାହାରକୁ ପଠାଇବେ । ପ୍ରତି ସପ୍ତାହରେ ଗୋବିନ୍ଦରାଓ ହେଡ୍ ଗୁମାସ୍ତା ଯାଞ୍ଚ କରି ସାଟିଫିକେଟ ଦେଇଛନ୍ତି ସରକାରୀ ଡାକ ଟିକେଟର ହିସାବ ଠିକ୍ ଭାବରେ ସଂରକ୍ଷିତ । ବାଞ୍ଛାବଟଙ୍କ ଆଖିରୁ କୌଣସି ତ୍ରୁଟି ଖସିଯିବା କଷ୍ଟକର । ଇସୁରେଜିଷ୍ଟର ଧରିଲେ । ବରଷ ଆରମ୍ଭରୁ ଚିଠି ନମ୍ବର ପଡ଼ିଛି ଏକରୁ ଆରମ୍ଭ ୬୭, ପରେ ଆର ପୃଷ୍ଠାରେ ୭୭ ପଡ଼ିଛି । କେତେ ପୃଷ୍ଠା ପରେ ସେମିତି ୩୨୩ ଆର ପୃଷ୍ଠାକୁ ଯିବାବେଳକୁ ୪୨୪ ହୋଇଛି । ଗୋବିନ୍ଦରାଓ ହିସାବ ଦେଖିଲା ବେଳେ ପ୍ରତି ଚିଠି ଉପରେ ନିର୍ଦ୍ଧାରିତ ହିସାବରେ ଡାକ ଟିକେଟ ଖରଚ ଦେଖି ମୋଟ ଷ୍ଟାମ୍ପ ଖରଚ ଜାହାର କରିଛନ୍ତି । ବଡ଼ ବଡ଼ ରେକର୍ଡ଼ମାନ ରେଜିଷ୍ଟ୍ରି ଡାକରେ ପଠାଯାଇଛି । ତାର ଅଲଗା ନମ୍ବର ହିସାବ ଅଛି । ସେଥିରେ ବେଶୀ ପଇସା ଷ୍ଟାମ୍ପ ଖରଚ ହୋଇଛି ମାତ୍ର ଯାଞ୍ଚ ସମୟରେ ହେଡ୍ ଗୁମାସ୍ତା ଷ୍ଟାମ୍ପ ଖରଚ ପ୍ରତି ଦୃଷ୍ଟିରଖି ଚିଠି ନମ୍ବରମାନଙ୍କରେ କ୍ରମିକ ନମ୍ବରର ଶୁଦ୍ଧି ପ୍ରତି ନଜର ରଖିନାହାନ୍ତି ।

ବାଞ୍ଛାବଟ ଜାଣି ନେଲେ ଷ୍ଟାମ୍ପ ବଳକା କିପରି ହୋଇଛି ଓ କିପରି ତାହା ବ୍ୟବହୃତ ହୋଇଛି । ଏତେ ସହଜରେ ନିଜ କୃତକର୍ମ ପ୍ରକାଶ ପାଇଯିବ ଏଥିପ୍ରତି ଗଣାଧିପ ପ୍ରସ୍ତୁତ ନ ଥିଲେ । କର୍କଶ ସ୍ୱରରେ ବାଞ୍ଛାବଟଙ୍କର ନିର୍ଦ୍ଦେଶ ମୋ ନିଷ୍ଠୁରତା ତମକୁ ଅଜଣା ନୁହେଁ । ତମେ ସତ କହିଲେ ମୋର ସହାନୁଭୂତି ପାଇବ । ତମେ ତମର ଚାଲାଖି ଓ ସତ୍ୟେବୟାନ ଭିତରୁ ଯେଉଁଟା ଇଚ୍ଛା ମନ ମୁତାବକ ବାଛି ନେଇ ମୋର ଖାସ କାମରାରେ ମତେ ଦେଖା କର । ତମକୁ ଦୁଇଘଣ୍ଟା ସମୟ ଦେଲି" । ଅଫିସରେ ହଇଚଇ ପଡ଼ିଯାଏ । ନିର୍ଦ୍ଧାରିତ ସମୟ ଭିତରେ ଗଣାଧିପ ନିଜର ସମସ୍ତ ଅପକର୍ମ ପ୍ରକାଶ କରିଦେଲେ ବୋଲି ବାଞ୍ଛାବଟଙ୍କର ହୃଦ୍‌ବୋଧ ହେଲା । ଗଣାଧିପ ଖଞ୍ଜ । ବାଡ଼ି ଖଣ୍ଡେ ନ ଧରି ଯିବା ଆସିବା କରିବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ । ଶାରୀରିକ ଅକ୍ଷମତା ପ୍ରାପ୍ତ ବ୍ୟକ୍ତିମାନଙ୍କୁ ସ୍ୱାଧିନୋତ୍ତର ଶାସନରେ ବିଶେଷ ସୁବିଧା ସୁଯୋଗ ଦିଆଯାଉଛି । ସେତେବେଳେ ଏସବୁ ଅଜଣା କଥା ମାତ୍ର ଜଣେ ବିକଳାଙ୍ଗ କର୍ମଚାରୀ ପ୍ରତି ଅହେତୁକ ସହାନୁଭୂତି ପ୍ରଦର୍ଶନ କରି ବାଞ୍ଛାବଟ ତାଙ୍କୁ କ୍ଷମା ଦେଲେ । କେବଳ ଅଫିସରେ ସ୍ଥାନ ପରିବର୍ତ୍ତନ କରାଗଲା । ଗଣାଧିପ ଓ ତାଙ୍କର ସହକର୍ମୀ ସମସ୍ତେ ଉଚିତ୍ ନ୍ୟାୟ ମିଳିଛି ଜାଣି ସନ୍ତୁଷ୍ଟ । ବାଞ୍ଛାବଟଙ୍କ ତୀକ୍ଷ୍ଣ ଦୃଷ୍ଟି ଆଢୁଆଳରେ କୌଣସି କ୍ଷତି ଘଟାଇବା ଅସମ୍ଭବ ଜାଣି ଗଣାଧିପ କେତେବର୍ଷ ନୀରବ ରହିଯାଆନ୍ତି । କାଳକ୍ରମେ ସେ ନିମ୍ନବର୍ଗରୁ ଉଚ୍ଚ ବର୍ଗକୁ ପଦୋନ୍ନତି ପାଇଲେ ।

ଗୋଷ୍ଠି ଉନ୍ନୟନ ଯୋଜନାର ଆରମ୍ଭ ସମୟ । ଅମଲା ସଂଖ୍ୟା ଜିଲାସ୍ତରରେ

ଆଶାତୀତ ଭାବରେ ବୃଦ୍ଧିପାଇଛି । କାର୍ଯ୍ୟଦକ୍ଷତା ଆନୁପାତିକ ହାରରେ ହ୍ରାସ ପାଇଛି । ଭ୍ରଷ୍ଟାଚାର ଲମ୍ପଟତା ଓ ଆଳସ୍ୟର ବିକେନ୍ଦ୍ରୀକରଣ ହୋଇଛି । ପଦୋନ୍ନତି ପାଇ ଗଣାଧିପ କଲ୍ୟାଣସିଂହପୁର ପଞ୍ଚାୟତ ସମିତିର ମୁଖ୍ୟ ଅମଲା / ଅଫିସର ମୁଖ୍ୟ ଗ୍ରାମଗୋଷ୍ଠୀ ଉନ୍ନୟନ ଅଧିକାରୀ । ସେ ସଦ୍ୟ ବିଶ୍ୱବିଦ୍ୟାଳୟ ସ୍ନାତକ । ଜୀବନର ଅଭିଜ୍ଞତା ସ୍ୱଳ୍ପ । ସରକାରୀ ଦପ୍ତର କାର୍ଯ୍ୟନିୟନ୍ତ୍ରଣ ଅଭିଜ୍ଞତା ସ୍ୱଳ୍ପତର । ସରକାରଙ୍କର ଉପର ସ୍ତରରେ ଥିବା ଅଧିକାରୀମାନେ ଅଭିଜ୍ଞତା ବିଚାରକୁ ନ ନେଇ ସବୁ କଥାରେ ଡ଼ରି ଯାଉଥିବା କର୍ମଚାରୀଙ୍କୁ ଓ ମନ୍ତ୍ରୀଙ୍କଠାରୁ ଗାଁର କୁଜିନେତା ପର୍ଯ୍ୟନ୍ତ ସବୁ ରାଜନୈତିକ କର୍ମଚାରୀମାନଙ୍କୁ ସନ୍ତୁଷ୍ଟ କରି ରଖି ପାରୁଥିବା ବ୍ୟକ୍ତିମାନଙ୍କୁ ଗ୍ରାମଗୋଷ୍ଠୀ ଯୋଜନା ସଫଳ କରିବାକୁ ମଫସଲରେ ନିଯୁକ୍ତି ଦେଇଛନ୍ତି । ଜିଲା ସ୍ତରରେ ଜିଲାପାଳଙ୍କର ମତର ମୂଲ୍ୟ ରହୁନାହିଁ । ଯେ ଯେଉଁ କାର୍ଯ୍ୟ ପାଇଁ ଅନୁପଯୁକ୍ତ, ଅନଭିଜ୍ଞ ତାକୁ ସେମିତି କାମ ଦିଆଯାଉଛି । ସରକାରଙ୍କର ଦାୟିତ୍ୱ ନିଜ କର୍ମଚାରୀଙ୍କୁ ସବୁ କ୍ଷେତ୍ରରେ ସେବା କରିବା ଓ ପାରଦର୍ଶିତା ଦେଖାଇବାର ସୁଯୋଗ ଦେବା। ମାତ୍ର ଏ ମୂଳନୀତି ବିସ୍ମୃତ । ପୁଣି ସେ ନୀତିରେ ସମର୍ଥକ ଉଚ୍ଚ ପଦାଧୀକାରୀମାନେ ମଧ୍ୟ ହତାଦୃତ । କଲ୍ୟାଣ ସିଂହପୁର ବ୍ଲକର ଅଧିକାରୀ ବିଡ଼ିଓ ଭୈରବଚନ୍ଦ୍ର । ମୁଖ୍ୟ ଅମଲା ଗଣାଧିପ । ଭୈରବଚନ୍ଦ୍ର ସନ୍ଧ୍ୟା ସମୟରେ ତାଆସ ଦିବାଜି ନ ପକାଇଲେ ତାଙ୍କୁ ନିଦ ହୁଏ ନାହିଁ । ଗଣାଧିପ ମୁଖ୍ୟ ଅମଲା ଭାବରେ ସମିତିର ଖାଜାଞ୍ଚି । ବ୍ଲକରେ ସମୁଦାୟ ଅର୍ଥ ଖଜଣା ଖାନାରୁ ତାଙ୍କ ମାରଫତରେ ଆସେ । ଖରଚ ମଧ୍ୟ ତାଙ୍କ ମାରଫତରେ ହୁଏ । ତାଙ୍କର ଦାୟିତ୍ୱ ବିଡ଼ିଓ ମଞ୍ଜୁର କରିବାପରେ ସେ ରସିଦରଖି ଟଙ୍କା ବଣ୍ଟନ କରିବେ । ପ୍ରାପ୍ତିସ୍ୱୀକାରର ନିର୍ଦ୍ଧାରିତ ଫାର୍ମର ବ୍ୟବସ୍ଥା ନାହିଁ । ଟଙ୍କା ନେବା ଲୋକର ଯୋଗ୍ୟତା ଦକ୍ଷତା ଓ ଆଗମନର ସମୟ ଉପରେ ରସିଦର ଭାଷା ଓ ଆକାର ନିର୍ଭର କରିଥାଏ । ବ୍ରିଜ ଖେଳରେ ବିଡ଼ିଓ ନିମଗ୍ନ । ଥ୍ରିନୋଟ୍ରମ୍ପ ଖେଳ ହୋଇଯିବ ଉପରେ, ଗ୍ରାମସେବକର ଚିଠି ଧରି ପ୍ରାର୍ଥୀ ହାଜର। ସାହାର୍ଯ୍ୟ ଶହେଟଙ୍କା ଦିଆଯିବ । ତାଙ୍କୁ ଆଉ ଅଧିକା ସମୟ ଅଟକାଇବା ଅନୁଚିତ୍ । ରସିଦ୍ ଲେଖିବାକୁ ଅଫିସକୁ ଯିବା ଦରକାର କଣ । ପ୍ରାର୍ଥୀ ଲେଖିଦେଲେ ରସିଦ୍ । କାଗଜ ଖୋଜିବାକୁ ଦରକାର ନାହିଁ । ଉଇଲସ ସିଜର ସିଗାରେଟ ଖୋଳ ଭିତର ମୋଟ କାଗଜ ଚଳିବ । ଇଞ୍ଚରେ ଦୁଇ ଇଞ୍ଚ । ପ୍ରାପ୍ତ ସ୍ୱୀକାର ସେଇଥିରେ ଲେଖାଗଲା । ଟଙ୍କା ନେଇ ହିତାଧିକାରୀ ବିଦାୟ ନେଲେ । ରସିଦ୍ ଖାଜାଞ୍ଚିକ ପାଖରେ ରହିଲା । ଜରୁରି ଆଦେଶ ମଧ୍ୟ ସେମିତି ଦିଆଯାଏ । ହାତ ପାଖରେ ଯାହା କାଗଜ ମିଳିଯାଏ ସେଇଥିରେ ଲେଖାଯାଏ 'ଖାଜାଞ୍ଚି, ପ୍ରାର୍ଥୀ ଅମୁକକୁ ସମୁକ ବାବଦରେ ପ୍ରାର୍ଥୀତ ଅର୍ଥ ଦିଆଯାଉ', ଖାଜାଞ୍ଚି ଗଣାଧିପ ଖୁସି ବରଂ ସେ କାଗଜ ଖୋଜିବାର ଦାୟିତ୍ୱ ନିଜେ ନେଇ ଯାଆନ୍ତି । ଖବରକାଗଜର ଅଛପା ଅଂଶ, ସିଙ୍ଗଡ଼ା ଆସିଥିବ ଠୁଙ୍ଗାର ବହଳିଆ ନିମ୍ନାଂଶ, ସିଗାରେଟ ଖୋଳର ଭିତର ରାପର ।

ଏ ସବୁରେ କାମ ଚଳେଇଦେବା ତାଙ୍କ ଉପସ୍ଥିତ ବୁଦ୍ଧି ଓ କାର୍ଯ୍ୟ ଦକ୍ଷତାର ପରିଚୟ ଦିଏ । ଗାନ୍ଧି ଜୟନ୍ତୀ ଦିନ ବ୍ଲକ ଉଦଘାଟନ ହୋଇଥିଲା । ଗୋଟିଏ ଗାନ୍ଧି ଜୟନ୍ତୀ ଗଲାଣି। ଆଉ ଦି ମାସରେ ଦ୍ୱିତୀୟଟି ଆସିଯିବ । କଲ୍ୟାଣ ସିଂହପୁରକୁ ଯିବାକୁ କେହି ବଡ଼ ଅଧିକାରୀ ମନ ବଳେଇ ନ ଥାନ୍ତି । ରାଜ୍ୟ ସ୍ତରୀୟ ଅଧିକାରୀ ମଟରକାର ଯିବା ଜାଗାମାନ ସିନା ଦେଖିବେ । ଅନ୍ୟମାନେ ଜିପରେ ଯେତେଦୂର ଯାଇହେବ ସେତିକି ବାଟ ଯିବେ । କଲ୍ୟାଣସିଂହ ପୁରକୁ ଜିପ ରାସ୍ତା ତିଆରି ସରିନାହିଁ । ବହୁ କ୍ଷେତ୍ରରେ ଅଭିଜ୍ଞ ବହୁ ନାଟକର ନାୟକ ବର୍ଷୀୟାନ କର୍ମକୁଶଳୀ ବାଞ୍ଛାବଟ ଜିଲାପାଳ । ପ୍ରଥମେ କଲ୍ୟାଣସିଂହପୁର ପରିଦର୍ଶନକୁ ମନ ବଳେଇଲେ । ମୁଖ୍ୟ ଆକର୍ଷଣ ଯେଉଁ ଗଣାଧିପଙ୍କୁ ସେ ନିମ୍ନବର୍ଗର ଅମଲା ଭାବରେ କ୍ଷମା କରିଥିଲେ ତାଙ୍କ କାର୍ଯ୍ୟଦକ୍ଷତାର ପ୍ରମାଣ ସେ ସ୍ୱଚକ୍ଷୁରେ ଦେଖିବାକୁ ଚାହାନ୍ତି । ହଠାତ୍ ଦିନେ ପଞ୍ଚାୟତ ସମିତି ଅଫିସରେ ଜିଲାପାଳଙ୍କର ଆବିର୍ଭାବ ସମସ୍ତଙ୍କୁ ଚକିତ କରିଦେଲା। କଲ୍ୟାଣସିଂହପୁର ଇତିହାସରେ ଏହା ବିରଳ । ବୟସ୍କ ଲୋକେ ବ୍ରିଟିଶ ଯୁଗର ମାଆବାପ ବୋଲାଉଥିବା ଜିଲା ମାଜିଷ୍ଟ୍ରେଟ୍ ଆଗମନରେ ଯେତିକି ଆନନ୍ଦିତ, ବିନା ପରିଶ୍ରମରେ ପଞ୍ଚାୟତ ସମିତି ବାରଣ୍ଡାରେ ଟହଲମାରି ଦିନର ଖୋରାକ ଓ ମାସିକ ରୋଜଗାର କରୁଥିବା ପୋଲାଖିଆଙ୍କର ସେତିକି ଭୟ ଓ ମାନସିକ ଅବସାଦ । ଆଗେ ଗାଁରେ ଢଗ ଥିଲା 'ଅମିନ ଗାଁରେ ମାଇଲେ ମେଖ, ପୋଲାଖିଆଙ୍କର ମଲାଟି ଭେକ' । ବୁଢ଼ାଏ ଜିଲା ମାଜିଷ୍ଟ୍ରେଟ ଆସିବା ଶୁଣି ପୁଣି ଥରେ ସ୍ୱାଧିନତା ପୂର୍ବ ଯୁଗର ହାକିମ ବୋଲି ଜାଣି ଏଇ ଢଗ ବୋଲିବା ଆରମ୍ଭ କଲେ ।

ବାଞ୍ଛାବଟ ପ୍ରଥମେ ପହଞ୍ଚି ଗଣାଧିପଙ୍କ ଅଭିବାଦନ ଗ୍ରହଣ କରି ତାଙ୍କର ସ୍ୱାସ୍ଥ୍ୟ, ପରିବାର ସନ୍ତାନସନ୍ତତି ପ୍ରଭୃତି ବିଷୟରେ ବ୍ୟକ୍ତିଗତ ସମ୍ବାଦ ସଂଗ୍ରହ କଲେ । ଗଣାଧିପ ବିଶେଷ ଆନନ୍ଦିତ । ଦୀର୍ଘ ଦିନ ପରେ ମଧ ଜିଲ୍ଲାପାଳ ତାଙ୍କୁ ମନେ ରଖି ତାଙ୍କ କୁଶଳ ଜିଜ୍ଞାସା କଲେ। ବ୍ରିଟିଶ ଯୁଗର ଏହା ଥିଲା ପରମ୍ପରା । ନିଜ ଅଧସ୍ତନ କର୍ମଚାରୀଙ୍କର ବ୍ୟକ୍ତିଗତ ସୁଖସ୍ୱାଚ୍ଛନ୍ଦ୍ୟ, କାର୍ଯ୍ୟ ପ୍ରତି ଅନୁରାଗ, କାର୍ଯ୍ୟରେ ବାଧା ଓ ଏହାର ସମାଧାନ ଏ ସବୁ ବୁଝି ଏମାନଙ୍କର କର୍ମ ସମୀକ୍ଷା କରାଯାଉଥିଲା । ସ୍ୱାଧୀନୋତ୍ତର ଯୁଗରେ ଏହା ବଦଳି ଗଲା । କର୍ମଚାରୀ ରହିବାକୁ ଘର ପାଇଲେଣି କିନା ତାଙ୍କ ସ୍ୱାସ୍ଥ୍ୟ କିପରି, ତାଙ୍କର ଅସୁସ୍ଥତା ଥିଲେ ସ୍ଥାନୀୟ ଚିକିତ୍ସା ସେବା ତାଙ୍କ ପକ୍ଷରେ ଯଥେଷ୍ଟ କି ନା ଏହା ଜାଣିବାକୁ ଚେଷ୍ଟା ନ କରି ତାଙ୍କୁ କାର୍ଯ୍ୟାଳୟରେ ତାଙ୍କୁ କଣ କାର୍ଯ୍ୟ କରିବାକୁ ହେବ କିପରି ତାହା ତ୍ୱରାନ୍ୱିତ ହେବ ତାହା ବରାଦ ହୋଇ ଯାଉଛି । ଫଳରେ ଉପରିସ୍ଥ କର୍ମଚାରୀ ନିଜେ ସମ୍ମାନ ପାଉନାହାନ୍ତି । ବ୍ୟକ୍ତିଗତ ଆନୁଗତ୍ୟ ଆସୁନାହିଁ ଓ ନିମ୍ନସ୍ଥ କର୍ମଚାରୀ ଅସନ୍ତୁଷ୍ଟ ବୋଲି ଯୁକ୍ତିଯୁକ୍ତ କାରଣ ଦର୍ଶାଉଛନ୍ତି । ବାଞ୍ଛାବଟ ଜାଣନ୍ତି ମୁଖ୍ୟ ଅମଳା ଖାଜାଞ୍ଚି ।

ପଞ୍ଚାୟତ ସମିତି ମାନଙ୍କରେ ଅର୍ଥବ୍ୟୟ ଆଶନୁରୂପ ନୁହେଁ । ତଥାପି ଧର୍ମକୁ ଆଖି ମିଟିକା ମାରିବା ଉଦ୍ଦେଶ୍ୟରେ ବଜେଟ ବର୍ଷର ଟଙ୍କା ଟ୍ରେଜେରିରୁ ଅଣାଯାଇ ସିଲ ବ୍ୟାଗରେ ଭରତି କରାଯାଇ ଭବିଷ୍ୟତ ଖରଚ ନିମିତ୍ତ ରଖାଯାଉଛି । ଏହି ଅର୍ଥର ଅପବ୍ୟୟ ମଧ ହେଉଛି ।

ସବୁ ଔପଚାରିକ ପରେ ବାଞ୍ଛାବଟ କାମରେ ଲାଗିଲେ । ନଗଦ ଅର୍ଥ କେତେ ମହଜୁଦ ଅଛି ତାହା ଯାଞ୍ଚ କରାଗଲା ଓ ତାହାପରେ ଜମାଖରଚର ବିଭିନ୍ନ ରେଜିଷ୍ଟରମାନ ମିଳାଗଲା । ଦୁଇହଜାର ଟଙ୍କା ପାଖାପାଖି ଅମେଳ ଜଣାଗଲା । ଗଣାଧିପଙ୍କର କୈଫିୟିତ ଯେମିତି ପୂର୍ବରୁ ପ୍ରସ୍ତୁତ ଥିଲା । ଏହା ଖୋଦ ହାକିମଙ୍କୁ ନଗଦ ଆକାରରେ ଦିଆଯାଇଛି ।' ତାହାର ପ୍ରମାଣ ଛୋଟ ଆଠ ଦଶଗୋଟି ଚିରୁକୁଟ । ସେଥିରେ ଅର୍ଥ ମାଗି ନେବାର ସୂଚନା ସ୍ପଷ୍ଟ । ହାକିମ ଖୋଦ ଯାଞ୍ଚ ସମୟରେ ଉପସ୍ଥିତ । ନିଜର ନିର୍ବୋଧତା ଜାଣି ନିଜେ ଦୋଷୀ ପ୍ରମାଣିତ ହେବାର ଅଲଘ୍ୟ ସୂଚନା ଦେଖି ସେ ଅଶ୍ରୁ ସମ୍ବରଣ କରିବାରେ ଅକ୍ଷମ ହେଲେ। ଗଣାଧିପ କାଳେ ଜିଲାପାଳ ଏ ପ୍ରକାର ଛୋଟ ରସିଦ ଦେଖି କିଛି ସନ୍ଦେହ ରଖିବେ ସେଥିପାଇଁ ପୂର୍ବ ରସିଦ ବିଡ଼ା ମାନଙ୍କରେ ଏ ପ୍ରକାର ଚିରକୁଟ ରସିଦ ଚଳନୀୟ ଭାବରେ ଦେଖାଇଲେ । ଅଭିଜ୍ଞ ବାଞ୍ଛାବଟଙ୍କୁ ଦୋଷୀ ଠାବ କରିବାରେ ସମୟ ଲାଗି ନ ଥିଲା । ସବୁ ବୁଝିଲେ ବିଡ଼ିଓଙ୍କ କାମରାରେ । କୌଣସି ଫାଇଲରେ ତାଙ୍କର ଦସ୍ତଖତ ପୂର୍ବର ଖାଲି ସ୍ଥାନକୁ କାଟିରଖି ରସିଦ ତିଆରି । ଏହା ଅନଭିଜ୍ଞତା ଓ ଅବହେଳାର ଦଣ୍ଡ ବୋଲି ବୁଝିବାକୁ ତାଙ୍କୁ ବାକି ରହିଲା ନାହିଁ । ପୁଣି ଗଣାଧିପଙ୍କୁ ଡକରା । ତମର ଚାଲାକି ମୋର ଦୃଷ୍ଟିରୁ ଆଗଥର ବାଦ ଯାଇ ନ ଥିଲା । ମୁଁ ତମର ଭବିଷ୍ୟତ ଉନ୍ନତି ଆଶାରେ ତମ ଚରିତ୍ରର ଦୁର୍ବଳତା ତୁମ୍ଭକୁ ବିକଳାଙ୍ଗ ଜାଣି କ୍ଷମା କରିଥିଲି । ଏଥର ମଧ ମୋର ଦୃଷ୍ଟିରୁ ଏହା ଅପସରି ଯାଇଛି ବୋଲି ଆଶା କରନାହିଁ । ତମକୁ ପୁଣି ସୁଯୋଗ ଦେଉଛି ତମ ନାଁରେ ଅର୍ଥ ଆତ୍ମସାତ ଏତାଲା ଦେବା ଆଗରୁ ଚବିଶ ଘଣ୍ଟା ମଧରେ ତମେ ଏହି ଅର୍ଥ ପୂରଣ କର । ବୈଠକ ସରିଲା । ପରଦିନ ଅଧିକ ଖୋଳତାଡ଼ରେ ଅଭିଜ୍ଞ ଜିଲାପାଳ ଯେ ଅନେକ କିଛି ତ୍ରୁଟି ବାହାର କରିବେ ଓ ତାହା ତାଙ୍କୁ ହାଜତରେ ପଶିବାର ସୁନିଶ୍ଚିତ ସୁଯୋଗ ଆଣିବ ଏହା ଉପଲବ୍ଧ କରି ଗଣାଧିପ ଟଙ୍କା ଭରଣା କରି ନଗଦ ମହଜୁଦ ଅର୍ଥ ରେଜିଷ୍ଟରମାନଙ୍କ ସହିତ ମେଳ ଖୁଆଇଲେ । ଜିଲାପାଳ ଉପଦେଶ ଛଳରେ କହିଲେ ତମର ବୁଦ୍ଧି ବଳରେ ତମେ କାର୍ଯ୍ୟ କ୍ଷେତ୍ର ପରିବର୍ତ୍ତନ କର । ଭିନ୍ନ ଧନ୍ଦା ଦେଖ । ଏ ସରକାରୀ ଟାଣ କଟକଣାରେ ତମର ବହୁତ ଦିନ ହୋଇଗଲା । ସେହି ଦିନ ଗଣାଧିପ ଅସମୟରେ ପେନସନ ନେବାକୁ ଦରଖାସ୍ତ କଲେ । ଜିଲା ମହକମାରୁ ସ୍ଥଳାଭିଷିକ୍ତ ବ୍ୟକ୍ତି ପଠାଇଦେଇ ଜିଲାପାଳ ତାଙ୍କୁ ଦାୟିତ୍ୱରୁ ମୁକ୍ତି ଦେଲେ ।

ତାଙ୍କର ଦକ୍ଷତା ରାଜନୈତିକ ଦଳମାନଙ୍କୁ ବ୍ଲକ ସ୍ତରରୁ ଅଜ୍ଞାତ ନ ଥିଲା । ସେ ଦଳୀୟ କର୍ମୀଭାବରେ ସ୍ୱାଗତ ହେଲେ । ଦଳୀୟ ପ୍ରାର୍ଥୀ ନିର୍ବାଚନରେ ବିଜୟୀ ହେଲେ । ଦୁର୍ନିତୀଗ୍ରସ୍ତ କର୍ମଚାରୀମାନଙ୍କର ଆୟପନ୍ଥା ତାକୁ ଅମାଲୁମ ନ ଥିଲା । ସେଥିରେ ତାଙ୍କୁ ମଧ୍ୟ ସିଂହାଶ ମିଳିଲା । ଟାଣ ବିଧାୟକ ଭାବରେ ଖ୍ୟାତି ଅର୍ଜନ କଲେ । ମାତ୍ର ଦୈବହି ଦୂରତିକ୍ରମ । ନିଜର ପ୍ରତିଭା ସଂପୂର୍ଣ୍ଣ ବିକଶିତ ହେବା ପୂର୍ବରୁ ଉଚ୍ଚତର ଆସନ ଲାଭ ନ କରି ସେ ଇହଲୋକରୁ ବିଦାୟ ନେଲେ । ବାଞ୍ଛାବଟଙ୍କ ଭଳି ଟାଣୁଆ ହାକିମ ଦିନକୁ ଦିନ ଦୁର୍ଲଭ ହୋଇ ଆସୁଥିଲେ ।



# ବଜାର ମାଲ୍ ବନାମ ପରୀକ୍ଷିତ

୧୯୫୦ ମସିହା । ବରଗଡ଼ ସବଡ଼ିଭିଜନ ପଦ୍ମପୁର ସହିତ ମିଶି ଅବିଭକ୍ତ ଉପଖଣ୍ଡ । ବ୍ରିଟିଶ ଶାସନ ସମୟରେ ଏହା କେବଳ ଆଇସିଏସମାନଙ୍କ ପାଇଁ ସଂରକ୍ଷିତ ଥିଲା । ବହୁତ ବିଜ୍ଞ ସଚିବ, ରାଷ୍ଟ୍ରଦୂତ ଏଇ ସବଡ଼ିଭିଜନରେ ସେମାନଙ୍କର ଆଦ୍ୟ ସେବା ଆରମ୍ଭ କରିଥିଲେ । ଆଇସିଏସ୍ ମାନଙ୍କ ପରେ ଖୁବ୍ ପୋଖତ ଡ଼େପୁଟି କଲେକ୍ଟର ଏଠାକୁ ଆସିଲେ ସବଡ଼ିଭିଜନାଲ ଅଫିସର ଭାବରେ । ଏଇଠୁ ଯାଉଥିଲେ ଲିଷ୍ଟେଡ଼ ପୋଷ୍ଟ ଧାରଣ କରି କଲେକ୍ଟର ହୋଇ । ଆଇସିଏସ୍ ସଂସ୍ଥାରେ କେବଳ ଜନ୍ମରୁ ବ୍ରାହ୍ମଣ ସ୍ଥାନ ପାଉଥିଲେ । କର୍ମ ଓ ପ୍ରତିଭାବଳରେ ଉଠିଲେ ସେମାନଙ୍କୁ ଅଲଗା ଶ୍ରେଣୀଭୁକ୍ତ ରଖାଯାଉଥିଲା ସିନା ସେମାନେ ବ୍ରାହ୍ମଣ ପଦବାଚ୍ୟ ହୋଇପାରୁନଥିଲେ । ଆଇସିଏସ୍ ପଦକୁ ଦେଖିଲେ ତାଙ୍କର କୃତୀ ଛାତ୍ର ଜୀବନ, ବିଲାତରେ ଶିକ୍ଷା, ଭାରତବାହାରର ଅଭିଜ୍ଞତା ଆପେ ଆପେ ମନକୁ ଆସୁଥିଲା । ଇଂରେଜମାନେ ଚାଲିଗଲେ । ନୂଆ ଆଇଏଏସ୍ ପଦବୀ ସୃଷ୍ଟି ହେଲା । ବାରଜାତି ତେରଗୋଲା ବୈଷ୍ଣବ ହେଲେ ସବୁଗଲା ନ୍ୟାୟରେ "ନାନା ଦିଗଦେଶାଭ୍ୟାଗତ ପକ୍ଷିଣଃ" ଆସି ବାସ କଲେ ଏଇ ବିଶ୍ରାମ ସ୍ଥଳରେ । ସେମିତି ଜଣେ କେ (କୃଷ୍ଣମୂର୍ତ୍ତି) ସୀତାପତି । ଜନ୍ମ କେରଳରେ ବିଦ୍ୟା ଇଂଜିନିୟରିଂରେ ସ୍ନାତକ । କେନ୍ଦ୍ର ଟ୍ରାକ୍ଟର ଅନୁଷ୍ଠାନରେ କାର୍ଯ୍ୟକାଳ ଆରମ୍ଭକରି ସେଠାରୁ ଗଲେ ଯୁଦ୍ଧରେ । ଯୁଦ୍ଧରୁ ଫେରି ପୂର୍ବ କୃତିତ୍ୱର ପୁରସ୍କାର ଆଇଏଏସ୍ ହେବାକୁ ମନୋନୀତ ହେଲେ । ଜଣେ କେନ୍ଦ୍ର ମନ୍ତ୍ରୀଙ୍କର ଜାମାତା ହେବା ଭରାରେ ବହୁ ଗଧପାଦ ଧରି ସମସ୍ୟା ଶୂନ୍ୟ ଉତ୍କଳପ୍ରାନ୍ତକୁ ପ୍ରେରିତ ହେଲେ । ବରଗଡ଼ରେ ଏସଡ଼ିଓ ହେଲେ ।

ନିଜର ଯୋଗ୍ୟତା ଯାହା ଥାଉ ପଛକେ ପରର ଅଯୋଗ୍ୟତା ଦେଖାଇ ପାରିଲେ ନିଜେ ବଡ଼ ବୋଲି ପ୍ରମାଣିତ ହେବେ ଏଇ ନୀତିବାକ୍ୟ ସହିତ, ସୀତାପତିଙ୍କ ଶିକ୍ଷା ଦୀକ୍ଷା ଅଭିଜ୍ଞତା ତାଙ୍କୁ ହୃଦବୋଧ କରାଇ ଥାଏ । ପ୍ରଥମରୁ ନିଜ ସହକାରୀ ବା ସହଯୋଗୀମାନଙ୍କୁ

ରକ୍ତ ଚକ୍ଷୁ ପ୍ରଦର୍ଶନ କଲେ, ଦଣ୍ଡର ଧମକ ଦେଲେ ଓ ନିଜର ମତାମତ ସର୍ବଜନ ଆଦୃତ ଓ ସରକାର ସ୍ତରରେ ସର୍ବଥା ଗୃହୀତ ବୋଲି ବୁଝାଇ ଦେଲେ ସେ ଶ୍ରେଷ୍ଠ ପ୍ରଶାସକ ବୋଲି ବିବେଚିତ ହେବେ । ସବଡ଼ିଭିଜନର ସେ ସର୍ବବରିଷ୍ଠ ଦଣ୍ଡାଧିକାରୀ ସବଡ଼ିଭିଜନାଲ ମାଜିଷ୍ଟ୍ରେଟ, ତାଙ୍କରି ପାଖେ ନାଲିଶ ଦାଏର ହେବ । ତାଙ୍କରି ପାଖେ ପୋଲିସ ମକଦ୍ଦମାର ଅଭିଯୋଗପତ୍ର ବା ଅନ୍ୟ ଫଏସଲା ପେସ୍ କରିବ । ମକଦ୍ଦମା ଗ୍ରହଣ ଯୋଗ୍ୟ କି ନାହିଁ ସେଇ ସର୍ବୋଦୌ ବିଚାର କରିବେ । ପଦ୍ମପୁରରେ ଥାଆନ୍ତି ଜଣେ ତହସିଲଦାର ଯୋଗ୍ୟତା ଏମଏବିଏଲ । ଆଇନ ବିଭାଗରେ ସେବା ଆରମ୍ଭକରି ପଦୋନ୍ନତି ବଳରେ ସବ୍ ଡେପୁଟି । ବୟସ ୩୫ ପାଖାପାଖି । ଭକ୍ତି ଯୋଗଠାରୁ କର୍ମଯୋଗରେ ତାଙ୍କର ନିଷ୍ଠା ବେଶୀ । ନିଜ କାମରେ ଥାଆନ୍ତି । ନିହାତି ଗରଜ ନ ପଡ଼ିଲେ ତାଙ୍କର ସୀତାପତିଙ୍କ ସାଙ୍ଗେ ସାକ୍ଷାତ ହୁଏ ନାହିଁ । ସୀତାପତି ଏହାକୁ ତାଙ୍କ ପ୍ରତି ଅନାସ୍ଥା ଭାବ ମନେକଲେ । "ଜାଣି ନାହାନ୍ତି କେବେ ନର ପ୍ରଭାବ ତେଣୁ ତାଙ୍କର ଏହି ଅନାସ୍ଥାଭାବ" ଆଲେକଜାଣ୍ଡର ସେଲକାର୍କଙ୍କର ପିଲାଦିନେ ପଢ଼ିଥିବା କବିତା ତାଙ୍କ ମନକୁ ଆସୁଥାଏ ।

ତାଙ୍କୁ ଏ କଥା ମନେ ରଖିବାକୁ ହେବ । ସୁଯୋଗ ମିଳିବା ଯାଏ ଅପେକ୍ଷା କରିବାକୁ ହେବ । ସୋହେଲା ବଜାରରେ ସୀତାପତି ବସିଛନ୍ତି । ସମୟ ମଧ୍ୟାହ୍ନ । କଣ୍ଟ୍ରୋଲ ଜିନିଷ ବଣ୍ଟନ ପାଇଁ ଆସି ଗାଁ ମାନଙ୍କୁ ଠିକ୍ ସମୟରେ ପହଞ୍ଚୁଛି କି ନା ଦେଖିବା ଉଦ୍ଦେଶ୍ୟ । କାମ ଆରମ୍ଭ ହେବା ଆଗରୁ ଛଗନଲାଲ ପହଞ୍ଚିଲେ ଏକ ଦରଖାସ୍ତ ଧରି । ଦରଖାସ୍ତ ନୁହେଁ କୋଟଫିଜ ଲାଗିଛି ନାଲିଶ ଦରଖାସ୍ତ - ପିଟିସନ ଅଫ୍ କମ୍ପ୍ଲେନ୍ । ଅଭିଯୋଗକାରୀ ଛଗନଲାଲ ଗ୍ରାମ/ଥାନା- ସୋହେଲା, ଜି: ସମ୍ବଲପୁର ମୁଦାଲା, ତହସିଲଦାର- ପଦ୍ମପୁର । ତାଙ୍କର କୌଣସି ନାମ ଉଲ୍ଲେଖ ନାହିଁ । ଅଭିଯୋଗ ମୁଁ ସାଇକେଲ ବେପାର କରେ । ତହସିଲଦାରଙ୍କର ଟୁର ଏବେ ବଢ଼ିଯାଇଛି । ବହୁତ କ୍ଷୁଦ୍ର ଜଳ ସେଚନ ଯୋଜନାର ତଦାରଖ କାମ ତାଙ୍କ ହାତରେ । ସେ ମତେ ଖଣ୍ଡେ ସାଇକେଲ ତାଙ୍କପାଇ ଆଣି ନେବାକୁ ବହୁତ ଦିନୁ ଅନୁରୋଧ କରି ଆସୁଥିଲେ । ତାଙ୍କର ଦରକାର ଗୋଟିଏ ଗ୍ରିନ ମଡ଼େଲ ରାଲେ । ଗତକାଲି ମୁଁ ଗୋଟିଏ ନୂଆ ରାଲେ ସାଇକେଲ ଦୋକାନକୁ ମଗେଇଲି । ତାର ବିକ୍ରି ପାଇଁ ଗରାଖ ଠିକ୍ ହୋଇଥାଏ । ସେ ଆସିଲେ ନେଇଥାଆନ୍ତେ । ମାତ୍ର ଦୈବାତ ଆସି ପହଞ୍ଚିଲେ ତହସିଲ୍‌ଦାର । ଦର କେତେ ପଚାରିଲାରୁ ମୁଁ ଟ.୪୮୮ଙ୍କା କହିଲି । ଗରାଖ ଠିକ୍ ହୋଇଛି ବୋଲି ମଧ ଶୁଣାଇଲି । ସେ ମୋତେ ଏ ଯାଏ ମୁଁ ତାଙ୍କୁ ଠକି ଆସୁଛି ବୋଲି କହିଲେ । ମୁଁ ଏହା ମନାକଲି । ସେ ଫେରିଗଲେ । ଅଧ ଘଣ୍ଟା ଯାଇଛି କି ନା ଫେରିଆସି ମୋ ଉପରକୁ ଚାରିଖଣ୍ଡ ଶହେଟଙ୍କିଆ ନୋଟ୍ ଓ ନଅଖଣ୍ଡ ଦଶ ଟଙ୍କିଆ ନୋଟ୍ ବିଡ଼ା କରି ପିଙ୍ଗିଦେଇ ସାଇକେଲଟାକୁ ଜବରଦସ୍ତ

ଟାଣିନେଇ ଚଢ଼ି ଚାଲିଗଲେ । ମୋର ନୌକର ଗୋବିନ୍ଦ ଧିଣ୍ଡା ମୋ ପଡ଼ୋଶୀ ଦୋକାନୀ ରଘୁ ପଟେଲ ଓ ଭାନୁ ମେହେର ଏହା ଦେଖିଛନ୍ତି । ହଜୁର ଦୋଷୀକୁ ଉଚିତ୍ ଦଣ୍ଡ ପଦାନ କରନ୍ତୁ । ସୁଯୋଗ ମିଳିଗଲା, ଅଭିଯୋଗ ଗୃହୀତ ହେଲା । ହଲପଯୁକ୍ତ ବୟାନ ଲେଖାଗଲା । ସାକ୍ଷୀ ଦୁଇ ଜଣ ଥିଲେ । ତାଙ୍କୁ ପଚରା ଗଲା । ସେମାନେ ଠିକ୍ ଏଇପ୍ରକାର କହିଲେ । ଜଣେ କହିଲା ଛଗନଲାଲ ତାଙ୍କୁ ସବୁ ଥର କହେ ଆରଥରକୁ ଆସିଲେ ସାଇକେଲ ଦେବି । ଏଥର ଗରାଖ ଠିକ୍ ହୋଇଛି । କାଲି ତହସିଲଦାର କହିଲେ ଏଥରର ସାଇକେଲ ମୋର ମୁଁ ନେଲି କହି ଟଙ୍କା ବିଡା କରି ତା ଉପରକୁ ଫୋପାଡ଼ି ଦେଇ ଚାଲିଗଲେ । ମକଦ୍ଦମା ଗ୍ରହଣ ଯୋଗ୍ୟ ବୋଲି ଆଦେଶ ଲେଖି ମୁଦାଲାକୁ ସମନ କରିବାକୁ ଯାଉଛନ୍ତି ପେସ୍କାର ଈଶ୍ୱର ମହାପାତ୍ର ଜଣାଇଲେ । ଷ୍ଟେନୋବାବୁ ଅଛନ୍ତି । ବଙ୍ଗଳାକୁ ଫେରି ସେଇଠି ହଜୁର ହୁକୁମ ଡାକି ଦେଲେ ଭଲ ହେବ । ବଙ୍ଗଳାକୁ ଫେରିବା ହେଲା । କଣ୍ଟାକ୍ଟର କଣ୍ଟ୍ରୋଲ ଜିନିଷ ତଦାରଖ କାମ ଆର ଥରକୁ ରହିଲା । କଣ୍ଟ୍ରୋଲ ଦୋକାନୀ ଭାରି ଖୁସି । ଈଶ୍ୱର ମହାପାତ୍ର ବୁଝାଇ ଦେଲେ ଉଚିତ୍ ମୂଲ୍ୟ ଦେଇ ପୂର୍ବବରାଦ ଅନୁସାରେ ସାଇକେଲଟି ଦୋକାନୀଠାରୁ ନେଇଯିବା ଚୋରୀ ଅପରାଧଭୁକ୍ତ ହେବ ନାହିଁ । ବହିରୁ ଉଦାହରଣ ଦେଖାଇଲେ । ଅନିଚ୍ଛା ସତ୍ତ୍ୱେ ସୀତାପତି ହୁକୁମ ଡାକି ଦେଲେ । ଛଗନଲାଲ ଗ୍ରାମ ଥାନା ସେହେଲାଙ୍କଠାରୁ ତହସିଲଦାର ପଦ୍ମପୁରଙ୍କ ବିରୁଦ୍ଧରେ ମୋର ସୋହେଲା କ୍ୟାମ୍ପରେ ସାଇକେଲ ଚୋରି ଅଭିଯୋଗ ଦରଖାସ୍ତ ଗ୍ରହଣ କଲି । ମୁଦଲାର ବୟାନ ନେଲି । ମୁଦାଲାର ଦୁଇଜଣ ସାକ୍ଷୀ ହାଜର । ସେମାନଙ୍କର ଜମାବନ୍ଦୀ ଲେଖିଲି । ମୋର ବିଶ୍ୱାସ ହେଉଛି ଏହା ଚୋରି ହୋଇ ନ ପାରେ । ଉଚିତ୍ କାର୍ଯ୍ୟାନୁଷ୍ଠାନ ନିମିତ୍ତ ଜିଲା ମାଜିଷ୍ଟ୍ରେଟଙ୍କ ପାଖକୁ ନଥିପତ୍ର ପ୍ରେରଣ କଲି । ସ୍ୱା କେ ସୀତାପତି ଏସଡ଼ିଓ । ଈଶ୍ୱର ମହାପାତ୍ର ଜାଣନ୍ତି ଏ ଆଦେଶର ଅସାରତା । ଦଣ୍ଡବିଧି ବା କାର୍ଯ୍ୟବିଧି ଆଇନରେ ଜିଲା ମାଜିଷ୍ଟ୍ରେଟଙ୍କୁ ଏହା ପଠାଇବାର କୌଣସି ବ୍ୟବସ୍ଥା ବା ଯୋକ୍ତିକତା ନାହିଁ । ସେ ମଧ୍ୟ ଜାଣନ୍ତି ସୀତାପତି ଥରେ ଶୁଣିଛନ୍ତି ତାଙ୍କ କଥା ଅନିଚ୍ଛା ସତ୍ତ୍ୱେ । ଆଉ ଥରେ ଶୁଣାଇଲେ ନିଜେ ଅପମାନିତ ହେବେ । ସେ ଚୁପ୍ ରହିଲେ । ନଥି ପଠାଗଲା, ଜିଲା ମାଜିଷ୍ଟ୍ରେଟଙ୍କୁ ।

ଜିଲା ମାଜିଷ୍ଟ୍ରେଟ ରାୟ ବାହାଦୂର କାଳୀଚରଣ । ବହୁଦିନ ଲିଷ୍ଟେଡ୍ ପୋଷ୍ଟ କଲେକ୍ଟର ଥାଇ ଏବେ ଆଇଏଏସ୍ । ନଥି ଡାକରେ ପାଇଲେ । ଅତିରିକ୍ତ ଜିଲାପାଳଙ୍କୁ ଓ ଅନ୍ୟ ଦୁଇ ଚାରିଜଣ ସହକର୍ମୀଙ୍କୁ ଡାକିଲେ । ବରିଷ୍ଠ ଦଣ୍ଡାଧିକାରୀମାନେ କିପରି ନିର୍ବୋଧ ଆଦେଶ ଦେଇ ପାରନ୍ତି ତାହା ଶୁଣାଇଲେ । ଆଇସିଏସ ମାନେ ଆଇନ ପାସ ନ କରି ମଧ୍ୟ ଜିଲାଜଜ୍, ହାଇକୋଟଜଜ୍ ପଦବୀ ଗ୍ରହଣ କରୁଥିଲେ । ନ୍ୟାୟ ସମ୍ମତ ଆଦେଶ ଦେଉଥିଲେ । ତା ମୂଳରେ ସେମାନଙ୍କର ପ୍ରତିଭା ଅପେକ୍ଷା ପରିଶ୍ରମ ଓ ପଚାରି

ବୁଝିବା ମନୋବୃତ୍ତି ବେଶୀ ନିହିତ ଥିଲା ।· ଏ ପଣ୍ଡିତଙ୍କ ଆଗରୁ ଆଉ ଜଣେ ସେଇ ପଦବୀରେ ଥିଲେ । ସେ ଜିଲାମାଜିଷ୍ଟ୍ରେଟଙ୍କୁ ପଚାରିଲେ ହୀରାକୁଦ ବନ୍ଧ ଆନ୍ଦୋଳନର ଆଇନ ଅମାନ୍ୟ ରୋକିବାକୁ ୧୪୪ ଧାରା ଜାରି କରାଯାଉଛି । ତାର ଆୟୁଷ ମାତ୍ର ୬୦ଦିନ । ତାଠାରୁ ବେଶୀ ଦିନ ପରମାୟୁ ବଢ଼େଇ ପାରିବେ କେବଳ ସରକାର । ମୋର ସେମିତି କେତୁଟା, ଆଦେଶ ଦରକାର, ପରମାୟୁ ବଢ଼େଇବାକୁ । ଆପଣ ସରକାରଙ୍କୁ ପଠେଇବେ । କାଳିଚରଣ ଜଣାଇଲେ "ଧେତ୍ ତମେ ବଢ଼େଇଦେବ" ଉତ୍ତର ମିଳିଲା "ଆଇନରେ ମୋର କ୍ଷମତା ନାହିଁ" । କାଳୀଚରଣ ହସିଲେ । ମୁଁ କଣ ସେ କଥା ବଢ଼େଇବି, ତମେ ଏଇ ପିଲାମାନଙ୍କୁ ପଚାରି ନିଅ । ପିଲା ଅର୍ଥ ୨/୩ ବରଷ ଚାକିରି କରିଥିବା କନିଷ୍ଠ ସହଯୋଗୀମାନଙ୍କୁ । ବରିଷ୍ଠ ଦଣ୍ଡାଧିକାରୀଙ୍କୁ ସେମାନଙ୍କଠାରୁ ପଚାରି ବୁଝିବାଟା ଅପମାନଜନକ ଲାଗିଲା । ଜିଲାମାଜିଷ୍ଟ୍ରେଟଙ୍କ ନିର୍ଦ୍ଦେଶ ଆକ୍ଷରିକ ପାଳନ କଲେ । ନିଜେ ନିଜେ ୬୦ ଦିନ ପରେ ଆୟୁ ବଢ଼େଇ ଦେଲେ । ହାଇକୋର୍ଟରେ ରିଭିଜନ ଦାଏର ହେଲା । ହାଇକୋର୍ଟ ତାଙ୍କୁ ଭର୍ତ୍ସନା କରି ଲେଖିଲେ ବରଗଡ଼ ଭଳିଆ ସବଡ଼ିଭିଜନ ସମସ୍ୟା ବହୁଳ ଉପଖଣ୍ଡ । ଏଠି ସରକାରଙ୍କର ଏମିତି ଅଜ୍ଞ ଅଧିକାରୀ ଅବସ୍ଥାପନ ଆଦେଶ ବିଜ୍ଞତାର ପରିଚାୟକ ନୁହେଁ ।" ହାଇକୋର୍ଟରେ ଏସଡ଼ିଓଙ୍କ ଆଦେଶ ଖାରଜ ହେଲା । ଜିଲା ମାଜିଷ୍ଟ୍ରେଟ ଯାହା ସେ ଦିନ ଶୁଣାଇଲେ ନାହିଁ ତାର ସାରାଂଶ ଥିଲା ଷାଠିଏ ଦିନ ପରେ ପୁଣି ସାନି ଆଦେଶ ଦିଆଯାଇପାରିବ । ଖାଲି ମଝିରେ ଦିନେ ଦିଦିନ ବାଦ ଦେଲେ ହେଲା । ସେ ଦିନେ ଦିଦିନ ଚଳେଇ ନେବ ସ୍ଥାନୀୟ ପରିସ୍ଥିତି ପ୍ରତି ଲକ୍ଷ୍ୟ ରଖି ଓ ବେତାର ଯୋଗେ ସରକାରରୁ ବର୍ଦ୍ଧିତ ପରମାୟୁ ଆଦେଶ ଆସି ଯାଉଛି ବୋଲି ଆଶ୍ୱାସନାବାଣୀ ଶୁଣାଇକରି । ବରିଷ୍ଠ ପ୍ରଶାସକ ମହାଶୟ କନିଷ୍ଠ ସହଯୋଗୀମାନଙ୍କଠାରୁ ଏହା ଶୁଣି ପାରିଥାନ୍ତେ । ଜିଲା ମାଜିଷ୍ଟ୍ରେଟ ନିଜେ ଏମିତି ପରାମର୍ଶ ଦେବା ନୀତି ଗର୍ହିତ ବୋଲି ବିବେଚନା କରିପାରୁଥିବାରୁ ସେ କଥା ଶୁଣାଇଲେ ନାହିଁ । ସୀତାପତିଙ୍କ ଆଦେଶ ଯାଞ୍ଚକରି ସେଥିରେ ଥିବା ଆଇନଗତ ତ୍ରୁଟି ମାନ ତାଲିକା କରାଯାଇ ତାହା ତାଙ୍କର ଭବିଷ୍ୟତ ମାର୍ଗଦର୍ଶନ ନିମିତ୍ତ ପ୍ରେରିତ ହେଲା । ସୀତାପତି ନିଜର ଆଦେଶର ନିର୍ବୋଧତା ନିମିତ୍ତ ଲଜ୍ଜିତ ନ ହୋଇ ଏ ପ୍ରକାର ସମାଲୋଚନା ଖୋଲା ଚିଠିରେ ଆସିବା ଓ ଜଣେ କନିଷ୍ଠ ସହଯୋଗୀ ଜିଲା ମାଜିଷ୍ଟ୍ରେଟଙ୍କ ତରଫରୁ ତାହା ଦସ୍ତଖତ କରିଥିବା ଯୋଗୁଁ ନିଜକୁ ଅପମାନିତ ମନେ କଲେ । ଅନ୍ୟ କିଛି ରଣ କୌଶଳ ବାଛିବା ପୂର୍ବରୁ ସେ ଜିଲା ମାଜିଷ୍ଟ୍ରେଟ ଭାବରେ ଜିଲା ମହକୁମାକୁ ସ୍ଥାନାନ୍ତରିତ ହେଲେ । ସ୍ଥଳାଭିଷିକ୍ତ ହେଲେ ସୂର୍ଯ୍ୟ ନାରାୟଣ । ସେ ମଧ୍ୟ ଆଇଏଏସ୍ ମାତ୍ର ସେ ପରୀକ୍ଷାରେ ପାସ କରି ନିଜ କୃତୀତ୍ୱର ପରାକାଷ୍ଠା ଦେଖାଇ ଓଡ଼ିଶାକୁ ଆସିଛନ୍ତି । ବିନା ପରୀକ୍ଷାରେ ବାରଜାତି ତେରଗୋଲା ଖୋଲା ବଜାରରୁ ଆସିଥିବା ନିଜ ସହଯୋଗୀମାନଙ୍କୁ ସେ ବଜାର କା

ମାଲ ବୋଲି ନ୍ୟୁନ କରୁଥିଲେ । ଅବଶ୍ୟ ସୂର୍ଯ୍ୟ ନାରାୟଣ ସମଗ୍ର ଭାରତରେ ପ୍ରତିଯୋଗୀତାରେ ଷଷ୍ଠସ୍ଥାନ ଅଧିକାର କରିଥିଲେ ଓ ତାଙ୍କ ପୂର୍ବରୁ ଓଡ଼ିଶାକୁ କେହି ପ୍ରତ୍ୟକ୍ଷ ପ୍ରତିଯୋଗୀତାରେ ଉଚ୍ଚ ସ୍ଥାନ ଅଧିକାର କରିଥିବା କର୍ମଚାରୀ ଆସି ନ ଥିବାରୁ ତାଙ୍କର ଗର୍ବର କାରଣ ଥିଲା । ସୀତାପତି ନିଜ କାର୍ଯ୍ୟପ୍ରଣାଳୀ ଫଳରେ ନିନ୍ଦିତ ହେଲେ ମାତ୍ର ନିଜକୁ ସୁଧାରିବାର ପ୍ରବୃତ୍ତି ତାଙ୍କ ଠାରେ ସଂପୂର୍ଣ୍ଣ ଅନୁପସ୍ଥିତ । ତହସିଲଦାର ରକ୍ଷା ପାଇଲେ ତାଙ୍କ ପାଗଳାମୀରୁ । ସରକାର ଏହା ଜାଣି ବରଗଡ଼ରୁ ତାଙ୍କୁ ଅନ୍ୟତ୍ର ବଦଳି କଲେ । ଓଡ଼ିଶାରେ ତାଙ୍କ ଅଯୋଗ୍ୟତା ପ୍ରମାଣିତ ପାଇଁ ଆଉ ସୁଯୋଗ ମିଳିଲା ନାହିଁ ।

ସୂର୍ଯ୍ୟ ନାରାୟଣ ପଚାଶ ବରଷ ହେଲାଣି ମୃତ । ତାଙ୍କର ସ୍ତ୍ରୀ ଓ ଏକମାତ୍ର କନ୍ୟା ହୁଏତ ବର୍ତ୍ତମାନ ଜୀବନରେ ମାତ୍ର ତାଙ୍କ ସ୍ମୃତି ଚାରଣ କରି ମୋର ବିଶ୍ୱାସ ମୁଁ ତାଙ୍କୁ ଅବମାନନା କରୁନାହିଁ । ସ୍ତ୍ରୀ କନ୍ୟାମାନଙ୍କ ମନରେ ଆଘାତ ଆଣୁନାହିଁ । ମୋର ପ୍ରଥମ ସାକ୍ଷାତ ହୁଏ ତାଙ୍କ ସହିତ ୧୯୪୯ ମସିହାରେ । ସେ ବରଗଡ଼ ଏସଡ଼ିଓ । ଅତି ପତଳା ଚେହେରା । ଉଜ୍ଜଳ ଦୀର୍ଘ ଆଖି । ଗୋଟିଏ ସ୍ଥାନରେ ବେଶୀ ସମୟ ବସି କରି ରହିବା ପ୍ରକୃତି ବିରୁଦ୍ଧ । ସର୍ବଦା ଚଞ୍ଚଳ ପ୍ରଖର ଗିରିନଦୀ । ଖାଦ୍ୟ ମଧ ସ୍ୱଳ୍ପ । ଜିଲା ମହକୁମାରେ ସବୁ ଏସଡ଼ିଓ ମାନଙ୍କର ମାସିକ ବୈଠକ ବସେ । ବିଭିନ୍ନ ସମସ୍ୟାର ଆଲୋଚନା ହୁଏ । ଅଭିଜ୍ଞତା ସ୍ୱଳ୍ପ ତଥାପି ତାଙ୍କର ଦୃଷ୍ଟିକୋଣ ଭିନ୍ନ ଜଣା ପଡ଼େ । ଏସଡ଼ିଓମାନଙ୍କୁ ସେମାନଙ୍କ ପାଖରେ କେତେଟା ଚିଠି ଉତ୍ତର ଦେବାକୁ ମାସାଧିକ କାଳ ପଡ଼ିରହିଛି ତାର ଗୋଟିଏ ତାଲିକା ଧରାଇଦିଆଯାଇଥାଏ । ଆଲୋଚନା ହୁଏ । ପରବର୍ତ୍ତୀ ବୈଠକରେ ଯେପରି ଉତ୍ତରମାନ ଆସିଥିବ ସେଇଥିପାଇଁ ତାଗିଦ ଦିଆଯାଏ । ଏମିତି ଗୋଟିଏ ବୈଠକରେ ମୁଁ ସଭ୍ୟ ନ ଥାଇ ମଧ ବିଶେଷ ନିମନ୍ତ୍ରିତ । ସେଇଠି ମୋର ପ୍ରଥମ ସାକ୍ଷାତ ସୂର୍ଯ୍ୟ ନାରାୟଣଙ୍କ ସହିତ । ଜିଲାପାଳ ସୀତାପତି ଆଗରୁ ସେଇ ବରଗଡ଼ର ଅଧିକାରୀ ଥିଲେ । ତାଙ୍କ ବଦ୍ଧମୂଳ ଧାରଣା ତାଙ୍କଠାରୁ ବେଶୀ କର୍ମଠ ଓ ଦକ୍ଷ ଆଉ କେହି ନାହାନ୍ତି । ସେ ଆସିବା ପରଠାରୁ ସେ ଗଢ଼ିଥିବା ଦକ୍ଷ କାର୍ଯ୍ୟାଳୟ ଗତିହୀନ ହୋଇ ଯାଇଛି । ବୈଠକରେ ଶୁଣାଇଲେ "ଆର ମାସ ପରି ଏ ମାସ ମଧ ବରଗଡ଼ରେ ସବୁଠାରୁ ବେଶୀ ଚିଠି ଉତ୍ତର ଦେବାପାଇଁ ବାକି ପଡ଼ିଛି । ମୋର ଦୁଃଖ ହୁଏ ସେଠି ସେମାନେ ଆଜିକାଲି କାମଦାମ କରୁଛନ୍ତି କି ନାଁ ?" ବକ୍ରୋକ୍ତି ସୂର୍ଯ୍ୟ ନାରାୟଣ ପ୍ରତି । କାରଣ ସେ ନିଜେ ସର୍ବଭାରତୀୟ ପ୍ରତିଯୋଗୀତାରେ ଷଷ୍ଠସ୍ଥାନ ଅଧିକାର କରି ଓଡ଼ିଶାକୁ ଆସିଛନ୍ତି ଓ ଜିଲାପାଳ ଓ ତାଙ୍କ ପରି ଅନ୍ୟ ବାରଜାତି ତେରଗୋଲାରୁ ସଂଗୃହୀତ ବୈଷ୍ଣବମାନଙ୍କୁ ଶସ୍ତା ବଜାର ମାଲ ବୋଲି ଉପହାସ କରିଥାନ୍ତି । ସବୁରି ଦୃଷ୍ଟି ବୈଠକରେ ପଡ଼େ ସୂର୍ଯ୍ୟ ନାରାୟଣ ଉପରେ । ସେ ନୀରବ । ବୈଠକ ଶେଷରେ ମୁଁ ମୋର କାର୍ଯ୍ୟାଳୟରେ । ଅଫିସ ବନ୍ଦ ହେବାକୁ ପାଞ୍ଚ

ଦଶ ମିନିଟ୍ ବାକି । ହଠାତ୍ ସୂର୍ଯ୍ୟ ନାରାୟଣ ପହଞ୍ଚି ମତେ ଜଣାଇଲେ ତାଙ୍କର ଜଣେ କ୍ଷିପ୍ର ଲେଖକ ଦରକାର । ତାଙ୍କୁ ସେ ଦୁଇ ଘଣ୍ଟାରୁ ଅଧିକା ଅଟକାଇବେ ନାହିଁ । ଯାହାର କ୍ଷିପ୍ର ଲେଖକ ତା ଦପ୍ତରରେ । ସେମାନେ ସଂଧ୍ୟାବେଳେ ନ ଥାନ୍ତି । ମୁଁ ନାଚାର । ମନେ ପଡ଼ିଲା ବାମଣ୍ଡା ଦରବାରର ଜଣେ ପୂର୍ବତନ କର୍ମଚାରୀ ବଦଳି ହୋଇ ସମ୍ବଲପୁର ଆସିଛନ୍ତି । ସେ ଦରବାର ସହିତ ନିବିଡ଼ ଭାବରେ ସଂପୃକ୍ତ ଯୋଗୁ ତାଙ୍କୁ କୌଣସି ଦାୟିତ୍ୱ ଦିଆଯାଉନାହିଁ । ସେ ଅଳସୁଆ ହୋଇ ବସି ରହି ଦରମା ନେଉଛନ୍ତି । ତାଙ୍କୁ ପଚାରେ । ଡକାଇ ପଠାଇଲି । ଅତି ଆଗ୍ରହର ସହିତ ସେ ରାଜି ହେଲେ । ସୂର୍ଯ୍ୟ ନାରାୟଣଙ୍କୁ ବୁଝାଇ ଦେଲି କୌଣସି ଗୁପ୍ତ ଦଲିଲ ତାଙ୍କ ଦ୍ୱାରା ଯେପରି ବ୍ୟବହୃତ ନ ହୁଏ । ସେ ରାଜି ହେଲେ । ବାଇଶଟି ଚିଠିର ତାଲିକା ଅଛି । ମତେ ଅନୁରୋଧ 'ଶରତଚନ୍ଦ୍ର ଏଇ ବାଇଶଟି ନଥିପତ୍ର ମୋର ଦରକାର । ତା ସହିତ ତମ କୋଠରୀର ଚାବି । ତାହା ମୁଁ ଯିବାବେଳେ ଚଉକିଦାର ପାଖେ ରଖିଯିବି । କ୍ଷିପ୍ର ଲେଖକ ହେମନ୍ତ ଟାଇପ୍ ରୁମକୁ ଖୋଲିବାକୁ ଚାବି ମଧ୍ୟ ରଖିଥିବେ । କାମ ଶେଷରେ ସେଇ ଚଉକିଦାରକୁ ଚାବି ଦେଇଯିବେ । ମୁଁ ରାଜି ହେଲି । ତାଙ୍କୁ ହେମନ୍ତ ଓ ମୋ କୋଠରୀରେ ବାଇଶଟି ନଥି ଧରାଇ ଦେଇ ମୁଁ ବିଦାୟ ନେଲି। ପରଦିନ ୧୦ଟା ସମୟରେ କୋଠରୀ ଖୋଲି ଦେଖେ ଗୋଟିଏ ବଡ଼ ଲଫାପା ରଖାଯାଇଛି ସେ ନଥିମାନଙ୍କ ପାଖରେ । ସେଇ ଲଫାପାରେ ବାଇଶଟିଯାକ ଚିଠିର ଉତ୍ତର । ନମ୍ବର ଚିଠି ମାନଙ୍କରେ ଦିଆଯାଇଛି । କ୍ୟାମ୍ପ ୧ରୁ କ୍ୟାମ୍ପ ୨୨ ତାରିଖ ସହିତ। ଚିଠି ପଢ଼େ । ଅନ୍ୟ ସବଡ଼ିଭିଜନରୁ ଆସିଥିବା ଉତ୍ତରମାନ ଦେଖି ସେ ନିଜର ଉତ୍ତର ଦେଇଛନ୍ତି। ଖାଲି କୌଣସି ସଂଖ୍ୟା ଥିଲେ ଲେଖିଛନ୍ତି ମୋର ଭୟ ହେଉଛି ଏ ସଂଖ୍ୟାଟି ଠିକ୍ ନ ଥିଲେ ପରେ ସଂଶୋଧନ କରୁଛି । ମୁଁ ଏତେ ସହଜରେ ବାଇଶଟି ଚିଠିର ଉତ୍ତର ଆସିପାରେ ତାହା କଳ୍ପନା କରି ନ ଥିଲି । ମୋ ଘ୍ରାଣେନ୍ଦ୍ରିୟ ଜାଣି ପାରୁଥାଏ ଗତ ରାତ୍ରରେ ସେଇ କୋଠରୀରେ କୌଣସି ମାଦକଦ୍ରବ୍ୟର ପ୍ରଚୁର ବ୍ୟବହାର ହୋଇଛି । ରଦି କାଗଜ ପେଟି ମଧ୍ୟରେ ପଡ଼ିଛି ଗୋଟିଏ ହୁଇସ୍କି ବୋତଲ । ଚଉକିଦାର ତାକୁ ସବୁ ଫିଙ୍ଗି ଦେବାକୁ ନେବା ଆଗରୁ ଦେଖିନେଲି । ଦ୍ୱିତୀୟବାର ସାକ୍ଷାତ ହୁଏ ତାଙ୍କ ନିଜ ବାସଗୃହରେ ମୁଁ ଯାଇଛି ବରଗଡ଼ ମୋର ନିଜ କାମରେ । ଅତିରିକ୍ତ ଜିଲାପାଳ ଉକ୍ତ ବଙ୍ଗଳାରେ କ୍ୟାମ୍ପ କରୁଛନ୍ତି । ସଂଧ୍ୟାରେ ସେ ମତେ ଡାକିଲେ ତାଙ୍କ ସାଙ୍ଗରେ ସୂର୍ଯ୍ୟ ନାରାୟଣଙ୍କ ପାଖକୁ । ଆଗ୍ରହର ସହିତ ଗଲି । ସେ ଆସିଛନ୍ତି ସୂର୍ଯ୍ୟ ନାରାୟଣଙ୍କ କୋର୍ଟ ପରିଦର୍ଶନ ନିମିତ୍ତ । ଅଭିଯୋଗ ମିଳିଛି ବହୁତ ଚୂଡ଼ାନ୍ତ ଆଦେଶ ସେ ଘୋଷଣା କରି ସାରିଛନ୍ତି । ପକ୍ଷମାନେ ନକଲ ମାଗୁଛନ୍ତି । ମାହାଫିଜ ଖାନାକୁ ଆଦେଶ ଯାଉ ନାହିଁ । ଶୁଣାଯାଏ ସେ ଆଦେଶମାନ ଲେଖିନାହାନ୍ତି । ଅପିଲର ସମୟ ସୀମା ଅଛି । ତେଣୁ ପକ୍ଷମାନେ ଅଭିଯୋଗ ଆଣୁଛନ୍ତି । ସୂର୍ଯ୍ୟ ନାରାୟଣଙ୍କର

ବିଶ୍ୱାସ ପକ୍ଷମାନଙ୍କୁ ନ୍ୟାୟ ଦେଇ ସେ ଯେପରି ବିସ୍ତୃତ ଆଦେଶ ଦେଇ ପାରିବେ ସେମିତି ଆଉ କେହି ଲେଖିପାରିବେ ନାହିଁ । ତେଣୁ ଯେତେ ଜଟିଳ ଫୌଜଦାରୀ ମକଦ୍ଦମାମାନ ସବଡ଼ିଭିଜନରେ ଥାଏ ସବୁଗୁଡ଼ିକ ସେ ନିଜ ପାଖରେ ବିଚାର ନିମିତ୍ତ ରଖିଥାନ୍ତି । ନିଜେ ବହୁତ ପରିଶ୍ରମ କରନ୍ତି । କଚେରୀ କାମ ସରିଲେ ଟୁର୍‌ରେ ଯାଇ ନିବିଡ଼ ମଫସଲର ଡ଼େରା ଘରେ ରାତି କଟାଇ ଦିଅନ୍ତି । ଡେରା ଘର ନ ଥିଲେ କୌଣସି ମହୁଲ ଗଛ ତଳେ ଦଉଡ଼ିଆ ଖଟ ଖଣ୍ଡେ ମାଗି ପକାଇ ସେଥିରେ ୨/୪ ଘଣ୍ଟା ଶୋଇ ପଡ଼ନ୍ତି । କ୍ଷୁଦ୍ର ଜଳସେଚନ ଯୋଜନାମାନ ସଂପୂର୍ଣ୍ଣ କରିବାରେ ସମଗ୍ର ରାଜ୍ୟରେ ତାଙ୍କ ସବଡ଼ିଭିଜନ କିପରି ପ୍ରଥମ ହେବ ଏଇଆ ଲକ୍ଷ୍ୟ । ଅତିରିକ୍ତ ଜିଲାପାଳ ସବୁ ପ୍ରକାର ସାହାର୍ଯ୍ୟ ଦେଇ ବାକିଆ କାମର ନିଷ୍ପତ୍ତି ନିମିତ୍ତ ପରାମର୍ଶ ଦେଲେ । ସୂର୍ଯ୍ୟ ନାରାୟଣଙ୍କର ଗୋଟିଏ ଉତ୍ତର । ଆପଣ ରାଜ୍ୟ ପ୍ରଶାସନର, ମୁଁ ଭାରତୀୟ ପ୍ରସାଶନ ସେବାର ସଭ୍ୟ । ମୋର ଅଦାଲତ ପରିଦର୍ଶନ କରିବା ଆପଣଙ୍କର କ୍ଷମତାର ବହିର୍ଭୁତ । ଫୌଜଦାରୀ କାର୍ଯ୍ୟବିଧି ଆଇନରୁ ଦଫା ଦେଖାଇ ଦିଆଗଲା । ଜିଲାର ସବ୍‌ଡ଼ିଭିଜନ ମାଜିଷ୍ଟ୍ରେଟ ଜିଲାମାଜିଷ୍ଟ୍ରେଟଙ୍କର ଅଧସ୍ତନ । ଅତିରିକ୍ତ ଜିଲ୍ଲାମାଜିଷ୍ଟ୍ରେଟଙ୍କ ଉପରେ ଜିଲା ମାଜିଷ୍ଟ୍ରେଟଙ୍କର ସମସ୍ତ କ୍ଷମତା ସରକାର ନ୍ୟସ୍ତ କରିଛନ୍ତି । ରାତିଟା ବୃଥା ଉପଦେଶ ଓ ଯୁକ୍ତି କଟାକଟିରେ ଗଲା । ପରଦିନ ସକାଳେ ପୁଣି ସ୍ୱର୍ଗୀୟ ପ୍ରଭାତଚନ୍ଦ୍ର ପାତ୍ର ବୁଝାଇଲେ ଆପଣ ମୋର ପୁତ୍ର ସ୍ଥାନୀୟ । ମୋର ଅଯାଚିତ ସାହାର୍ଯ୍ୟ ଅବାରିତ ଭାବରେ ରହିଛି । ମୁଁ ନିଜେ ସବୁ ଆଦେଶ ତମ କହିବା ଅନୁସାରେ ଲେଖିଦେବି । ମତେ ଅପ୍ରିୟ ରିପୋର୍ଟ ନ ପଠାଇବାରୁ ରକ୍ଷା କରନ୍ତୁ । ମାତ୍ର ସୂର୍ଯ୍ୟ ନାରାୟଣ ଅଟଳ । ସହରକୁ ଫେରିବା ପରେ ସରକାରଙ୍କୁ ରିପୋର୍ଟ ଗଲା । ବହୁତ ମକଦ୍ଦମା ନିଷ୍ପତ୍ତି ହୋଇଛି । ଆଦେଶ ବିସ୍ତାରିତ ଭାବେ ଲେଖାଯାଇନାହିଁ । ପକ୍ଷମାନେ ନକଲ ନ ପାଇ ଅପିଲ ଦାଖଲ କରିପାରୁ ନାହାନ୍ତି । ଦୁର୍ଯୋଗକୁ ପରୀକ୍ଷା ଦେବାକୁ ଦିଲ୍ଲୀରେ ଥିବା ସମୟରେ ଋଣ କରି ତାହା ନ ସୁଝି ଦେଓ୍ୱାନି ମକଦ୍ଦମାରେ ଏକ ତରଫା ଡିଗ୍ରିରେ ଖାତକ ଶ୍ରେଣୀଭୁକ୍ତ ଥାଇ ଦରମା ଜବଦ ଆଦେଶ ସେତେବେଳେ ସୂର୍ଯ୍ୟ ନାରାୟଣ ପାଇଥାଆନ୍ତି । ଗଣାଧିପ ଭୋଇ ଭବାନିପାଟଣାରେ ଜଣେ ଓକିଲ । ବାରିଷ୍ଟରି ପଢ଼ିବାକୁ ବିଲାତ ଗଲେ । ତାଙ୍କ ମଟର ଗାଡ଼ି ସୂର୍ଯ୍ୟ ନାରାୟଣ କିଣିଲେ । ପରେ ବୈଦେଶିକ ମୁଦ୍ରା ଆକାରରେ ଟଙ୍କା ତାଙ୍କ ପାଖକୁ ପଠାଇଦେବାର ପ୍ରତିଶ୍ରୁତି ଦେଲେ । ସେ ବିଲାତରେ । ଟଙ୍କା ନ ପହଞ୍ଚିବାରୁ ଦୁଃଖରେ ଥାଇ ହାଇକମିଶନରଙ୍କୁ ଲେଖନ୍ତି । ରାଜ୍ୟ ସରକାର ସବୁ ଅଭିଯୋଗ ଗୁଡ଼ିକର ପୁଞ୍ଜିଭୂତ ପ୍ରତିକ୍ରିୟା ସ୍ୱରୁପ ସୂର୍ଯ୍ୟ ନାରାୟଣଙ୍କୁ ଅସ୍ଥାୟୀ ଭାବରେ କାର୍ଯ୍ୟଚ୍ୟୁତ କରନ୍ତି । ସ୍ୱାଧୀନ ଭାରତରେ ଓ ଓଡ଼ିଶାରେ ଆଇଏଏସ୍ ଅଫିସର ଜଣେ ଏ ପ୍ରକାର ଦଣ୍ଡ ପାଇବାରେ ସେ ପ୍ରଥମ । ପରବର୍ତ୍ତୀକାଳରେ ସ୍ଥଳାଭିଷିକ୍ତ ହୋଇ ସେ କହନ୍ତି ଜୀବନରେ ମୁଁ ଦୁଇଜଣଙ୍କୁ

ଭୟ କରେ ମୋର ମାଆ ଓ ୨ୟ ବ୍ୟକ୍ତି ଓଡ଼ିଶାର ଜଣେ ସର୍ବଶକ୍ତିମାନ କର୍ତ୍ତା ।

କଟକ କଲେଜ୍‌ରେ ଥିବା ସମୟରେ ୧୯୫୫ ମସିହାରେ ନିଜେ ସ୍ୱେଚ୍ଛାକୃତ ଗୋପନ ରଖିଥିବା ଯକ୍ଷ୍ମା ରୋଗରେ ଏହି କର୍ମମୟ ଜୀବନର ପରିସମାପ୍ତି ଘଟେ । ତାଙ୍କର ଜୀବନ ଦର୍ଶନରେ ସେ ଶୁଣାଉଥିଲେ ସମସ୍ତଙ୍କୁ ମୁଁ ଜଣେ ଜଣେ ପାଜି ସୟତାନ ବୋଲି ଧରିନେଇଥାଏ । ସେମାନେ ନିଜ ଆଚରଣ ଦ୍ୱାରା ମତେ ପ୍ରମାଣିତ କରାଇ ଦେଖାନ୍ତୁ ଯେ ସେମାନେ ସଜ୍ଜନ' । ଏହା ବିକୃତ ମସ୍ତିଷ୍କର ଚିନ୍ତାଧାରା ବୋଲି ଜଣାଶୁଣା ଲୋକେ ସ୍ମରଣ କରନ୍ତି ।



# "ଉଡ଼େ ମୁକ୍ତାର ମୁଖ ଖୁଲେଛେ"

ଓଡ଼ିଶା ପ୍ରଦେଶ ଗଠନ ହେବା ପର୍ଯ୍ୟନ୍ତ ଓଡ଼ିଶାରୁ କଲିକତା ବା ପାଟଣା ହାଇକୋର୍ଟରେ କେହି ଜଜ ହୋଇ ନ ଥିଲେ । ପ୍ରଥମ କଂଗ୍ରେସ ମନ୍ତ୍ରୀମଣ୍ଡଳ ସମୟରେ ୧୯୩୮/୩୯ ବେଳକୁ ଓଡ଼ିଶାର ସୁବୋଧ ଚନ୍ଦ୍ର ଚାଟର୍ଜି ପାଟଣା ହାଇକୋର୍ଟରେ ଜଜ ଥିଲେ । ତାଙ୍କୁ ଉତ୍କଳୀୟ ବଙ୍ଗାଳୀ ବୋଲି ଧରାଗଲା । ତାଙ୍କ ସାନଭାଇ ପ୍ରବୋଧ ଚନ୍ଦ୍ର ଚାଟର୍ଜି ପିସି ଚାଟର୍ଜି ବା ପଛିବାବୁ ନାମରେ ପରିଚିତ ଥିଲେ । ଓଡ଼ିଶା ହାଇକୋର୍ଟରେ ସେ ବହୁତ ଦିନ ଓକିଲାତି କରି ସୁନାମ ଓ ବହୁତ ଅର୍ଥ ଉପାର୍ଜନ କରିଥିଲେ । ସୁବୋଧ ଚାଟର୍ଜିଙ୍କର ଆଇନଗତ ଦକ୍ଷତା ବିଶେଷ ନ ଥିଲା ବୋଲି ସେତେବେଳେ କୁହାଯାଉଥିଲା । ପାଟଣା ହାଇକୋର୍ଟରେ ସେତେବେଳେ ସାର କୋଟନି ଟେରେଲ ପ୍ରଧାନ ବିଚାରପତି । ସିଧା ସଳଖ ବିଲାତରୁ ଜଜ ହୋଇ ଭାରତକୁ ଆସିଥାନ୍ତି । ତାଙ୍କ ସହିତ ଡିଭିଜନ ବେଞ୍ଚରେ ଜଷ୍ଟିସ୍ ଚାଟାର୍ଜି ବସିଲେ । ପାଟଣା ହାଇକୋର୍ଟର ନାମଜାଦା ଓକିଲମାନଙ୍କ ମଧ୍ୟରେ ସେତେବେଳେ ପି.ଆର ଦାସ ଜଣେ । ପ୍ରିୟରଞ୍ଜନ ଦାସ କଂଗ୍ରେସ ନେତା ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କ ସାନଭାଇ । ପାଟଣା ହାଇକୋର୍ଟର ଜଜ ଥିଲେ । କଳାହାଣ୍ଡିର ଦେୱାନ ଥିଲେ ବିନୋଦ ବିହାରୀ ମହାନ୍ତି । ସେ କହୁଥିଲେ କଳାହାଣ୍ଡି ରାଜାଙ୍କର ଗୋଟିଏ କେଶ୍ ସେ ଦିନ ପଡ଼ିବାର ଥିଲା ସେଥିପାଇଁ ସେ କୋର୍ଟରେ ଅପେକ୍ଷାରତ । ଚିଫ୍‌ଜଷ୍ଟିସ୍ କୋଟିନି ଟେରେଲ ଓ ପି.ଆର.ଦାସ ଡିଭିଜନ ବେଞ୍ଚ ବସିଲା । ଏହି ସମୟରେ ବୈଦ୍ୟନାଥ ଧାମର ଜଣେ ବୟସ୍କ ପଣ୍ଡା ଖଣ୍ଡେ ଲିଖିତ କାଗଜ ଧରି ଥରିଲା କଣ୍ଠରେ ଅଧାହିନ୍ଦି ଇଂରେଜିରେ କୋର୍ଟକୁ ସଂବୋଧନ କରି କହିଲେ "ହଜୁର Your Lordship P.R. Das Corrupt ଘୁସର ମକଦ୍ଦମା ନେହିଁ ଶୁଣନା ଇତ୍ୟାଦି ଇତ୍ୟାଦି ।" ଲିଖିତ ଦରଖାସ୍ତଟି ଚିଫ ଜଷ୍ଟିସଙ୍କ ହାତକୁ ବଢ଼ାଇଦେଲେ । ସେ ସାଙ୍ଗେ ସାଙ୍ଗେ ଆଦେଶ ଶୁଣାଇଲେ ସେହି ବେଞ୍ଚରେ ଶୁଣାଣି ଅନିର୍ଦ୍ଦିଷ୍ଟ କାଳ ପାଇଁ ବନ୍ଦ ରହିଲା । ପରିଦିନ ପାଟଣାର ଇଂରେଜ ଦୈନିକ Indian Nation 'Search light' କାଗଜରେ ବାହାରିଲା ପି.ଆର. ଦାସ ଇସ୍ତଫା ଦେଇଛନ୍ତି । ତାଙ୍କ ଇସ୍ତଫା ପତ୍ର ଗୃହୀତ ହେଲା ।

ଭାରତୀୟ ସମ୍ବିଧାନ ଚାଲୁ ହେବା ଆଗରୁ ଜଣେ ଜଜ ଯେଉଁ ହାଇକୋର୍ଟରେ ଜଜ ଥିବେ ସେ ଅବସର ନେଇ ବା ଇସ୍ତଫା ଦେଇ ସେଠାରେ ନିଜେ ଓକିଲାତି କରିବା ମନା ନ ଥିଲା । କେତେକ କହିଲେ ଜଜିୟତିରୁ ପି.ଆର. ଦାସଙ୍କୁ ତଡ଼ିବା ଏକ ଷଡ଼ଯନ୍ତ୍ର ଥିଲା । ବ୍ରିଟିଶ୍ ସମୟରେ ଟିକେ ଛିଟ, ଆସିଲେ ବିଦା ହେବାକୁ ପଡୁଥିଲା । ପି.ଆର. ଦାସ ପାଟଣା ହାଇକୋର୍ଟରେ ଓକିଲାତି କରି ପ୍ରଭୁତ ଖ୍ୟାତି ଓ ଅର୍ଥ ଅର୍ଜନ କଲେ । ଓଡ଼ିଶାରୁ ମଧ୍ୟ ବହୁତ  କେଶ୍ ହାଇକୋର୍ଟରେ ତାଙ୍କୁ ମିଳୁଥିଲା । କାର୍ଯ୍ୟଭାର ଗ୍ରହଣ କରିବାର ଅଳ୍ପଦିନ ପରେ ଗୋଟିଏ ମକଦ୍ଦମାରେ ଜଷ୍ଟିସ୍ ସୁବୋଧ ଚାଟାର୍ଜି ତାଙ୍କୁ କଣ ପ୍ରଶ୍ନ ସବୁ ପଚାରିଲେ । ସେ ତାହାର ଉତ୍ତର ଦେଇ ବାହାରକୁ ଆସି ଶୁଣେଇଲେ "ଉଡ଼େ ମୁକ୍ତାର ମୁଖ ଖୁଲେଛେ" । ଏକ ଅରୁଚିକର ମନ୍ତବ୍ୟ । ଅବଶିଷ୍ଟ କାର୍ଯ୍ୟକାଳ ମଧ୍ୟରେ ଏକୁଟିଆ ବା ଦ୍ୱୈତ ବେଞ୍ଚରେ ବସିଥିବା ବେଳେ ପି.ଆର. ଦାସଙ୍କୁ ତାଙ୍କର ଆଉ କୌଣସି ଅଡୁଆ ପ୍ରଶ୍ନର ସମ୍ମୁଖୀନ ହେବାକୁ ପଡ଼ିନାହିଁ ।

୧୮୯୧ ମସିହାରେ ଜନ୍ମିତ ଓ ୧୯୪୪ ମସିହାବେଳକୁ ୧୯୩୭ ମସିହାରୁ ଓଡ଼ିଶାର ଆଡ଼ଭୋକେଟ ଜେନେରାଲ ଥିବା ବୀରକିଶୋର ରାୟ ପାଟଣା ହାଇକୋର୍ଟର ଜର୍ଜ ହେଲେ । ତାଙ୍କର ଆଇନ ଜଗତରେ ସୁଖ୍ୟାତି ଥିଲା । ଅନେକ ବଡ଼ ବଡ଼ ମକଦ୍ଦମାରେ ସେ ଲଢ଼ି ଜଜମାନଙ୍କର ମଧ୍ୟ ନିଜ ଆଇନଗତ ବ୍ୟୁପତ୍ତି ନିମିତ୍ତ ପ୍ରଶଂସନୀୟ ହୋଇଥିଲେ । କୁହାଯାଏ କଲିକତା ବିଶ୍ୱବିଦ୍ୟାଳୟରେ ସେ ଆଇନ ପଢୁଥିଲେ । ସାର ଆଶୁତୋଷ ତାଙ୍କର ଆଇନ କଲେଜରେ ଗୋଟିଏ ମୁଟ (Moot Court) କୋର୍ଟରେ ତାଙ୍କ ବାଗ୍ମୀତା ଶୁଣି ସେ ଭବିଷ୍ୟତରେ ଜଣେ ବଡ଼ ଆଇନଜ୍ଞ ହେବେ ବୋଲି ଭବିଷ୍ୟତ ବାଣୀ କରିଥିଲେ । ସାର ଏ.ଟି. ହାରିସ ସେ ସମୟରେ ପାଟଣା ହାଇକୋର୍ଟର ପ୍ରଧାନ ବିଚାରପତି । ସେ ମଧ୍ୟ ସିଧା ସଳଖ ବିଲାତରୁ ଜଜ ହୋଇ ଭାରତ ଆସିଥିଲେ । ଦ୍ୱୈତ ବେଞ୍ଚରେ ସେ ଓ ଜଷ୍ଟିସ୍ ରାୟ ବସୁଥିଲେ । ପି ଆର ଦାସ ଗୋଟିଏ ମକଦ୍ଦମାରେ ଜବାବ ସୁଆଲ କଲେ । ଜଷ୍ଟିସ୍ ରାୟ ତାଙ୍କୁ କେତେକ ପ୍ରଶ୍ନ ପଚାରିଲେ । ଉତ୍ତର ମିଳିଲା । ମାତ୍ର ଏ ପ୍ରକାର ପ୍ରଶ୍ନ ସେ ଆଶା କରି ନ ଥିଲେ । ତାଙ୍କର ଅଖଣ୍ଡ ଖ୍ୟାତି । ତାଙ୍କ୍ କେହି ଅଡୁଆ ପ୍ରଶ୍ନ ପଚାରିବ ଏହା ତାଙ୍କର ଆଶାତୀତ ଥିଲା । ବାହାରକୁ ଆସି ସେ ତାଙ୍କ ସହକର୍ମୀମାନଙ୍କୁ କହିଲେ "ଆବାର ଉଡ଼େ ମୁକ୍ତାର ମୁଖ ଖୁଲେଛେ" । ସୁବୋଧ ଚାଟାର୍ଜିଙ୍କୁ 'ଉଡ଼େ ମୁକ୍ତାର' କହିବା ତାଙ୍କୁ ଜଣାଥିଲା । ତେଣୁ ଯେତେବେଳେ ନିଜ ପ୍ରତି ମଧ୍ୟ ଓଡ଼ିଆ ମୁକ୍ତାର ଶବ୍ଦ ପ୍ରୟୋଗ ହେବା ଶୁଣିଲେ ଜଷ୍ଟିସ୍ ବୀର କିଶୋରଙ୍କର ଓଡ଼ିଆ ସ୍ୱାଭିମାନରେ ଆଘାତ ଲାଗିଲା ।  ପି.ଆର୍.ଦାସଙ୍କୁ ପାନେ ଦେବାକୁ ସେ ବଦ୍ଧ ପରିକର ହେଲେ । ଦୈନିକ Cause List ରେ ମକଦ୍ଦମାର ତାଲିକା ଦେଖି ଯେଉଁ ସବୁ କେଶରେ ସେ ପକ୍ଷଭୁକ୍ତ ଥାଆନ୍ତି ସେ ସବୁ ମକଦ୍ଦମା ସେ ବିଶେଷ ଭାବରେ ଅଧ୍ୟୟନ କଲେ । ପ୍ରଧାନ ବିଚାରପତି ଖୁସି ହେଲେ । ସେ ନାନାପ୍ରକାର ପ୍ରଶ୍ନ ପଚାରି ପି.ଆର. ଦାସଙ୍କୁ

ବ୍ୟତିବ୍ୟସ୍ତ କରି ପକାଇଲେ । ନିଜେ ମଧ୍ୟ ଜଜ୍‌ମେଣ୍ଟ ଲେଖି ଶୁଣାଇଲେ ବା ବେଞ୍ଚରେ ଡାକି ଦେଲେ । ପ୍ରଧାନ ବିଚାରପତି କେବଳ ମୁଁ ସମ୍ମତ ଏତିକ ଶୁଣାଇଲେ । ପ୍ରଶ୍ନୋତ୍ତର ପରେ ନିଜର ମତାମତ ମଧ୍ୟ ସେଇଥା ଗଢ଼ାହୋଇ ଯାଉଥିଲା । ଦିନ ଦିନ ଧରି ଏମିତି ଚାଲିଲା । ପି.ଆର.ଦାସ ବହୁତ ମକଦ୍ଦମାରେ ହାରିଗଲେ । ଖବରକାଗଜରେ ଆଇନ ଅଦାଲତ ସ୍ତମ୍ଭରେ ମଧ୍ୟ ତାଙ୍କର ବିଫଳତା ଓ ଓଡ଼ିଶାର ନୂଆ ଜଷ୍ଟିସଙ୍କର ଆଇନଗତ ପାରଦର୍ଶିତା ଆଲୋଚିତ ହେଲା । କାର୍ଯ୍ୟବ୍ୟସ୍ତ ବିଖ୍ୟାତ ଆଇନଜ୍ଞମାନଙ୍କର ସବୁ ମକଦ୍ଦମା ତନ୍ନତନ୍ନ କରି ପ୍ରସ୍ତୁତ ହେବାର ପ୍ରାୟ ସୁଯୋଗ ନ ଥାଏ । କାରଣ ଯୋଜଗାର ଲକ୍ଷ୍ୟରେ ଅନେକଗୁଡିଏ ମକଦ୍ଦମା ହାତରେ ରଖାଯାଇଥାଏ । କେହି ଜଣେ ସହକାରୀ ଯୁକ୍ତି ପ୍ରସ୍ତୁତ କରି ତାଙ୍କୁ ବୁଝେଇ ଦେଇଥାଏ । ଅପରପକ୍ଷରେ ମକଦ୍ଦମାର ବିପରୀତ ଦିଗ ଯଦି ଜଣେ ପୁରାତନ ଆଇନଜ୍ଞ ଖୁଣ୍ଟିନାଣ୍ଟି ଦେଖେ ତେବେ ଅପ୍ରସ୍ତୁତ ହେବା ଅସଂଭବ ନୁହେଁ । ଦାସେ ସେଇ ଅବସ୍ଥା ଭୋଗିଲେ । ତାଚ୍ଛଲ୍ୟ କରିବାର ଫଳ ହେବ ନିଜ ଦାନାପାଣି ଅନ୍ୟତ୍ର ଉଠେଇବା ।

ପାଟଣା ମହାନଗରୀର ମୁଖ୍ୟ କାର୍ଯ୍ୟାଧିକାରୀ ଥିଲେ ଶରତ ଚନ୍ଦ୍ର ମୁଖାର୍ଜି । ଘର ମାହାଙ୍ଗା କଟକ ଜିଲ୍ଲାରେ । ସବୁଜ ଯୁଗର ଲେଖକ । ଡେପୁଟି କଲେକ୍ଟର ଥାଇ ବିହାର ଓଡ଼ିଶା ଅଲଗା ହେବାବେଳେ ବିହାରରେ ରହିଗଲେ । ସେଇଠି ଆଇଏଏସ୍ ହେଲେ । ଅବସରପରେ ପୁଣି କଟକରେ ଅବସ୍ଥାନ କଲେ । ପାଟଣା ଉତ୍କଳ ସମାଜର ସେ ସଂପାଦକ । ପାଟଣାର ସମସ୍ତ ଖ୍ୟାତନାମା ଓଡ଼ିଆ ଓ ଓଡ଼ିଶାରେ କାର୍ଯ୍ୟ କରୁଥିବା ବ୍ୟକ୍ତିମାନଙ୍କର ଏହା ମିଳନ କ୍ଷେତ୍ର । ବୀର କିଶୋର ରାୟଙ୍କୁ ସମ୍ବର୍ଦ୍ଧନା ଦେବାକୁ ଏକ ବିରାଟ ସଭାର ଆୟୋଜନ ହେଲା । ପାଟଣା ବିଦ୍ୟାଳୟର ସବୁ ଓଡ଼ିଆଛାତ୍ର ହାଇକୋର୍ଟରେ ମକଦ୍ଦମା ଉପଲକ୍ଷେ ପାଟଣାରେ ଥିବା ଓଡ଼ିଶାର ଓକିଲ ଓ ପକ୍ଷମାନେ ସେଥିରେ ଯୋଗ ଦେଲେ । ତାହାର ସମସ୍ତ ବ୍ୟୟ ପରୋକ୍ଷରେ ପି.ଆର୍. ଦାସ ବହନ କଲେ । ସେହି ସଭାରେ ଜଷ୍ଟିସ୍ ରାୟଙ୍କର ଦୀର୍ଘ ସମୟ ଧରି ଦାସେ ଗୁଣ କୀର୍ତ୍ତନ କଲେ ଓ ଓଡ଼ିଶାର ସେ ଜଣେ ବରପୁତ୍ର ବୋଲି ସ୍ୱୀକାର କଲେ । ନିଜର ଓଡ଼ିଶା ସ୍ୱାଭିମାନ ତୃପ୍ତିଲାଭ କଲା । ଅବଶିଷ୍ଟ ଦିନମାନଙ୍କରେ କୌଣସି ବଙ୍ଗାଳି ବା ବିହାରୀ ଓକିଲ ଓଡ଼ିଶାର ଆଇନଜ୍ଞମାନଙ୍କ ଉପରେ କୌଣସି ଅରୁଚିକର ବା ଅପ୍ରୀତିକର ମତାମତ ଦେବାକୁ ସାହସ କରି ନାହାନ୍ତି । ଜଣେ ଲୋକର ସ୍ୱାଭିମାନ ଜ୍ଞାନ ଓ ପରିଶ୍ରମ ସମସ୍ତଙ୍କୁ ମର୍ଯ୍ୟାଦା ଆଣିଦେଲା । ଓଡ଼ିଶା ହାଇକୋର୍ଟର ପ୍ରଥମ ପ୍ରଧାନ ବିଚାରପତି ଭାବରେ ନିଜର ଆଇନ ବିଶ୍ଳେଷଣରେ ଦକ୍ଷତା ତାଙ୍କୁ ଶୀର୍ଷ ସ୍ଥାନକୁ ନେଇଥିଲା ।



# କଂସ ସାନଭାଇ ସୁନାଶ

'ଖଳବିନୁ ସ୍ୱାରଥ ପର ଅପକାରୀ
ଅହି ମୂଷିକ ଉବ ଶୁଣୁ ଭରଗାରି'

ତୁଳସୀ ଦାସଙ୍କର ଦୋହା, ବିନା ସ୍ୱାର୍ଥରେ ସାପ ମୂଷା ଏମାନେ ପରର ଅନିଷ୍ଟ ଘଟାଇଥାଆନ୍ତି । ଖଳ ଏଇମାନଙ୍କ ପରି ଭର୍ତ୍ତୃହରି ଲେଖିଥିଲେ -

'ଏକେ ସତପୁରୁଷାଃ ପରାର୍ଥଘଟକା
ସ୍ୱାର୍ଥନ୍ ପରିତ୍ୟଜ୍ୟଯେ
ସାମାନ୍ୟାସ୍ତୁ ପରାର୍ଥମୁଦ୍ୟତଭୃତଃ
ସ୍ୱାର୍ଥା ବିରୋଧେନ ଯେ
ତେଽମି ମାନବରାକ୍ଷସାଃ
ପରହିତଂ ସ୍ୱାର୍ଥାୟ ନିଘନ୍ତିଯେ
ଯେ ତୁ ଘ୍ନାନ୍ତି ନିରର୍ଥକଂ ପରିହିତଂ
ତେ କେ ନ ଜାନିମହେ ।'

ଅର୍ଥାତ୍ ଏକ ଶ୍ରେଣୀର ସତପୁରୁଷ ଅଛନ୍ତି ଯେଉଁମାନେ ନିଜର ସ୍ୱାର୍ଥ ତ୍ୟାଗକରି ପରର କାର୍ଯ୍ୟସାଧନ କରନ୍ତି । ଦ୍ୱିତୀୟ ଶ୍ରେଣୀର ଲୋକ ଅଛନ୍ତି ଯେଉଁମାନେ ନିଜର ସ୍ୱାର୍ଥ ରକ୍ଷାକରି ଅନ୍ୟର କାର୍ଯ୍ୟରେ ତତ୍ପର ହୁଅନ୍ତି । ଯେଉଁମାନେ ନିଜର ସ୍ୱାର୍ଥ ନିମିତ୍ତ ପରର ଅମଙ୍ଗଳ ଘଟାଇଥାଆନ୍ତି ସେମାନେ ମଣିଷରୂପୀ ରାକ୍ଷସ କିନ୍ତୁ ଏପରି ଲୋକ ଅଛନ୍ତି ଯେଉଁମାନଙ୍କର ନିଜର କିଛି ସ୍ୱାର୍ଥ ନ ଥିଲେ ମଧ୍ୟ ବିନା କାରଣରେ ପରର ବିଘ୍ନ ଘଟାନ୍ତି । ସେମାନେ କଣ ଏହା ଭବଭୂତି ନିଜେ ମଧ୍ୟ ଭାବିପାରି ନାହାନ୍ତି ।

ଗଡ଼ଜାତମାନ ଓଡ଼ିଶାରେ ମିଶିଲା । ଜଣେ ବହୁଚର୍ଚ୍ଚିତ ଭୂତପୂର୍ବ ରାଜାଙ୍କୁ ଏହା କହିବାରୁ ସେ ଉତ୍ତର ଦେଲେ "ମନେରଖ ଓଡ଼ିଶାଟା ଗଡ଼ଜାତରେ ମିଶିଲା । ଗଡ଼ଜାତିଆ

ଆଚରଣ ବୋଲି ଯାହା ସେମାନେ ଘୃଣା କରୁଥିଲେ ସେ ସବୁ ସେମାନଙ୍କ ଚରିତ୍ରରେ ଏଣିକି ପ୍ରତିଫଳିତ ହେବ ।" ସେମିତି ଗୋଟିଏ ଆଚରଣ ପରର କୁତ୍ସା ଓ ଉଚ୍ଚ ଅଧିକାରୀମାନଙ୍କ ପାଖରେ ଚୁଗୁଲି କରି ନିଜର ସ୍ୱାର୍ଥସାଧନ କରିବା । ଭବଭୂତି ଦେଇଥିବା ଦାଇକାଟି ଗଡ଼ଜାତରେ ଜନ୍ମିତ ଚାକିରିରେ ମିଶ୍ରଣ ପରେ ଓଡ଼ିଶା ପ୍ରଶାସନରେ ପୁରସ୍କୃତ ଜଣଙ୍କ ପ୍ରତି ପ୍ରଯୁଜ୍ୟ । ଷଷ୍ଠ ଦଶକରେ ତାଙ୍କୁ ଗୋଟିଏ ଅତି ଗୁରୁତ୍ୱପୂର୍ଣ୍ଣ ବିଭାଗରେ ଅବସ୍ଥାପିତ କରାଯାଇଥାଏ । ତାଙ୍କର ଅନୁଗତ ଓ ବନ୍ଧୁମାନେ ମଧ ଏ ପଦବୀ ପାଇଁ ସେ ଯେ ସଂପୂର୍ଣ୍ଣ ଅଯୋଗ୍ୟ ଏହା ମାନି ନେଉଥିଲେ ମାତ୍ର ସେତେବେଳର ଶାସନର ସାର୍ବଭୌମ କର୍ତ୍ତାଙ୍କ ସୁନଜରରେ ସେ ଥାଆନ୍ତି । ପ୍ରତିଦିନ ସଂଧ୍ୟାରେ ତାଙ୍କ ପାଖରେ ହାଜିରା ପକାଇ କୌଣସି ରୋଚକ ସମ୍ବାଦ ବହୁ ଶାଖା ପ୍ରଶାଖାଯୁକ୍ତ କରି କେତେକଙ୍କ ବଦନାମ ସହିତ ବାହାଦୁରୀ ନେବା ତାଙ୍କର କାର୍ଯ୍ୟଥିଲା । କିଛି ସତ୍ୟତା ଥାଉ ନ ଥାଉ ରୋଚକ କରିବାକୁ କବି ପ୍ରତିଭା ତାଙ୍କଠାରେ ଥିଲା । ସେ କବିତା ଲେଖୁଥିଲେ । ନିର୍ବାଚନ ପ୍ରଚାର ଉଦ୍ଦେଶ୍ୟରେ ନିଜର ବନ୍ଧୁ ଜଣେ ରାଜନୀତିଜ୍ଞଙ୍କର ଏହା କାମରେ ଆସୁଥିଲା । ମାତ୍ର ଜୀବନର ପରିସମାପ୍ତି ତାଙ୍କର ଘଟିଥିଲା ଏହିପରି ଅରୁଚିକର ଅନୈତିକ କାର୍ଯ୍ୟର ପରିଣାମ ସ୍ୱରୂପ ନିଜର ଜଣେ ଆତ୍ମୀୟର ଛୁରାମାଡ଼ରେ । ଅବସର ପରେ ସେ ରାଜଧାନୀ ଛାଡ଼ି ନିଜ ଗାଁକୁ ପଳେଇଲେ । ଯେଉଁମାନଙ୍କୁ ଭିତିରିଆ ଖବର ଯୋଗାଇ ତାଙ୍କର ପ୍ରିୟପାତ୍ର ହୋଇ ନିଜେ ଉଚ୍ଚ ଆସନ ପାଇଥିଲେ ଓ ଅନେକ ଘନିଷ୍ଠ ବନ୍ଧୁଙ୍କୁ ଶତ୍ରୁ କରିଥିଲେ ସେମାନେ ସେତେବେଳକୁ ରାଜ୍ୟ ବାହାରକୁ ଚାଲିଯାଇଥାଆନ୍ତି । ନିଜନିର୍ମିତ ଗୃହରେ ରାଜଧାନୀରେ ସ୍ଥାୟୀ ବାସ ତାଙ୍କର ଜୀବନ ପ୍ରତି ବିପଦଜନକ ନ ହେଲେ ମଧ ପ୍ରତି କ୍ଷେତ୍ରରେ ମର୍ଯ୍ୟଦା ହାନିକର ଥିଲା ଯଦିଚ ଅଥଚ ତାଙ୍କର ବନ୍ଧୁ ଓ ଶତ୍ରୁମାନେ ତାଙ୍କର କିଛି ମର୍ଯ୍ୟାଦାବୋଧଥିବାର ଅପବାଦ ତାଙ୍କୁ କେବେ ଦେଉ ନ ଥିଲେ । ସେ ମର୍ଯ୍ୟାଦାର ସହିତ ବାସ କରିବାକୁ ନିଜ ଜନ୍ମିତ ଗ୍ରାମକୁ ଫେରି ଯାଇଥିଲେ ।

ଓଡ଼ିଶାର ପୂର୍ବତନ ଚିଫ୍ ସେକ୍ରେଟେରୀ ଶ୍ରୀଯୁକ୍ତ ଏମ୍. ରାମକୃଷ୍ଣାୟା । ଆନ୍ଧ୍ର ପ୍ରଦେଶର ଅଧିବାସୀ । ଓଡ଼ିଶାରେ ଦୀର୍ଘଦିନ ବିଭିନ୍ନ ବିଭାଗରେ କାର୍ଯ୍ୟ କରିଥିଲେ । ସାଧୁତା ନିରପେକ୍ଷତା ଓ କର୍ମପଟୁତା ନିମିତ୍ତ ତାଙ୍କର ସରକାରୀ ଓ ବେସରକାରୀ ସ୍ତରରେ ଖ୍ୟାତି ଥିଲା । କେନ୍ଦ୍ରରେ ସଚିବ ଓ ପରେ ଭାରତୀୟ ରିଜର୍ଭ ବ୍ୟାଙ୍କର ଡ଼େପୁଟି ଗଭର୍ଣ୍ଣର ଭାବରେ ଅବସର ଗ୍ରହଣ କଲାପରେ ସେ ନିଜର ଅଭିଜ୍ଞତା Two administrators Interaction between ICS and IAS (1992) ପୁସ୍ତକରେ ଲିପିବଦ୍ଧ କରିଛନ୍ତି । ଓଡ଼ିଶାରେ ଦୀର୍ଘକାଳ ରାଜୁତି କରି କାଞ୍ଚି ବିଜୟର ପ୍ରତିଶୋଧ ସ୍ୱରୂପ ଓଡ଼ିଆ ଅଧିକାରୀମାନଙ୍କୁ ହୀନବୀର୍ଯ୍ୟ କରିବାରେ ଶିବରମଣଙ୍କର ଭୂମିକା ଉଲ୍ଲେଖନୀୟ । ନିଜର ଅସାଧାରଣ ଦକ୍ଷତା ସହିତ ଅସହିଷ୍ଣୁତା ଓ ଅନ୍ୟର ମତାମତ ପ୍ରତି ଅସମ୍ମାନ ତାଙ୍କୁ ଓଡ଼ିଶାରେ ରାଜନୀତିରେ

ମଧ୍ୟ ମୁଣ୍ଡ ପୁରାଇ ନିର୍ବାଚନରେ ପାର୍ଥୀ ମନୋନୟନରେ ଦଳୀୟ ସହାୟତା ଦେବାର ସୁଯୋଗ ଦେଇଥିଲା । ଶ୍ରୀ ରାମକୃଷ୍ଣାୟା ତାଙ୍କର ଅବଦାନ ଯୋଗ୍ୟତା ଆଦି ବର୍ଣ୍ଣନା ପ୍ରସଙ୍ଗରେ ଲେଖିଛନ୍ତି

"ସବୁ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ପରି ଶିବରମଣଙ୍କର ମଧ୍ୟ ଦୋଷତ୍ରୁଟି ରହିଥିଲା । କେତେକ କହୁଥିଲେ ସେ ନିଜର ଇଚ୍ଛା ଅନୁସାରେ ନିଜର ମନମୁଖୀ କାହାକୁ ଭଲ ପାଇଲେ ସ୍ୱର୍ଗକୁ ଉଠେଇ ଦେଉଥିଲେ ତ କାହାକୁ ଓଲଟା ପାତାଳକୁ ଚାପି ଦେଉଥିଲେ । ଅତିମାତ୍ରାରେ ପ୍ରତିହିଂସା ପରାୟଣ । ଥାଇ ନିଜ ପାଖରେ ଘୁରି ବୁଲୁଥିବା ସ୍ତାବକମାନଙ୍କୁ ସେମାନଙ୍କର ସମସ୍ତ ଦୋଷ ତ୍ରୁଟି ସତ୍ତ୍ୱେ ଅନ୍ଧଭାବରେ ସମର୍ଥନ କରୁଥିଲେ । ଏହି ଶେଷ ଶ୍ରେଣୀର ଉଦାହରଣ ହେଲେ ଦୁଇଜଣ ଅଧିକାରୀ ଲକାମ ଓ ସୁନାଶ । ପଞ୍ଚାଶ ଦଶକରେ ଲକାମଙ୍କ ନାଁ ପଡ଼ିଲେ ଜିଲ୍ଲାପାଳମାନେ ଚିଡ଼ି ଉଠୁଥିଲେ ........ ତାଙ୍କର ଠିକା ଚାକିରିକାଳ ଶେଷ କରିବାକୁ ଉଦ୍ୟମ ହେବା ସମୟରେ ଶିବରମଣ ତାଙ୍କୁ ସହାୟକ ଭାବରେ ରକ୍ଷାକରୁଥିଲେ । .......

ସୁନାଶ ଗଡ଼ଜାତର ଅଧିକାରୀ ଥିଲେ । ମିଶ୍ରଣ ପରେ ଓଡ଼ିଶା ପ୍ରଶାସନକୁ ଆସିଲେ । ସମସ୍ତେ ତାଙ୍କୁ ଶିବରମଣଙ୍କର ଗୁପ୍ତଚରଭାବେ ଗଣୁଥିଲେ । ସେ ଯେଉଁ ବିଭାଗରେ ଅତିରିକ୍ତ ସଚିବ ଥିଲେ ସେଠାରେ କିଛି ଉଲ୍ଲେଖଯୋଗ୍ୟ ଦକ୍ଷତା ଦେଖାଇ ନ ଥିଲେ ମଧ୍ୟ ଶିବରମଣଙ୍କର ସେ ଗେହ୍ଲା ପୁଅ ହୋଇ ରହିଥିଲେ । ଏଥିରେ ଅବଶ୍ୟ କିଛି ସତ୍ୟତା ଥିଲା । ଗଡ଼ଜାତିଆ ଅଫିସରମାନଙ୍କର ମନୋବୃତ୍ତି ଓଡ଼ିଶା ପ୍ରଶାସନିକ ଅଧିକାରୀମାନଙ୍କଠାରୁ ଭିନ୍ନ ଥିଲା । ଖୁସାମତି କରି ସେମାନେ ପ୍ରିୟପାତ୍ର ହୋଇ ପାରୁଥିଲେ ମାତ୍ର ସୁନାଶ ଅନେକ ପ୍ରଶାସକଙ୍କର ଭିତରି ଖବର ସଂଗ୍ରହ କରି ଶିବରମଣଙ୍କୁ ଦେଉଥିଲେ । ଏହା ଶିବରମଣଙ୍କୁ ସେହି ପ୍ରଶାସକମାନଙ୍କୁ ଆୟତରେ ରଖିବାକୁ ସାହାଯ୍ୟ କରୁଥିଲେ । ମୋ ନିଜ ଅଭିଜ୍ଞତାରୁ ମୁଁ ଜାଣେ ସୁନାଶ ଯେଉଁ ସବୁ ଚୋରା ଖବର ଆଣି ମତେ ଦେଇଥିଲେ ପରେ ତାହା ଠିକ୍ ବୋଲି ପ୍ରମାଣିତ ହେଲା । ମୁଁ ଚିଫ୍ ସେକ୍ରେଟ୍ରେରୀ ଥାଏ । ୧୯୭୩ ମସିହାର କଥା । ସୁନାଶ ଅବସର ଗ୍ରହଣ କରିଥାନ୍ତି । ହଠାତ୍ ମତେ ଆସି ସାକ୍ଷାତ କଲେ । କହିଲେ ଯେ ମୋର କାର୍ଯ୍ୟପ୍ରଣାଳୀରେ ଅସନ୍ତୁଷ୍ଟ କେତେକ ସହକର୍ମୀ ମୋ ବିରୁଦ୍ଧରେ ହାଇକୋର୍ଟରେ ଗୋଟିଏ ରିଟ୍ ଦାଖଲ କରୁଛନ୍ତି । ସେ ମୋତେ ସେମାନଙ୍କର ମନ୍ଦ ଉଦ୍ଦେଶ୍ୟ ମୂଳରୁ ନିପାତ କରିବାକୁ ପରାମର୍ଶ ଦେଲେ । ମୁଁ ସେହି ଅନୁଯାୟୀ କାମ କରି ଏହି ଚକ୍ରାନ୍ତରୁ ରକ୍ଷା ପାଇଲି । ମୋର ବିଶ୍ୱାସ ଶିବରମଣ ପ୍ରଶାସନର ସର୍ବାଗ୍ରଗଣ୍ୟଭାବରେ ସୁନାଶଙ୍କର ଏହି ଗୁପ୍ତଚର ବୃତ୍ତିର ସଦୁପଯୋଗ କରି ପାରୁଥିଲେ । ମାତ୍ର ସେହି ଗୁପ୍ତଚର ଓ ଗୋଡ଼ାଣିଆମାନଙ୍କ ପରାମର୍ଶରେ ଅନ୍ୟର ଯେପରି କାହାର କ୍ଷତି

ନ ହୁଏ ଓ ସେ ନିଜେ ନିରପେକ୍ଷ ରୁହନ୍ତି ଏଥି ପ୍ରତି ଦୃଷ୍ଟି ରଖିଥିଲେ ।"

ହରିବଂଶ ପୁରାଣ ଅନୁସାରେ କଂସର ସାନଭାଇ ସୁନାଶ । ହରିବଂଶରେ ତାଙ୍କର କୌଣସି ଉଲ୍ଲେଖନୀୟ କାର୍ଯ୍ୟକଳାପର ବର୍ଣ୍ଣନା ନାହିଁ । ବୋଧହୁଏ ସେ ବର ପାଇଥିଲେ କଳିଯୁଗର ସେ ନୂତନ ଅବତାର ଧରି 'ବିନା ମେଘେ ସୃଜି ପାଇଲେ କୁଳିଶ' ଦକ୍ଷତା ଦେଖାଇବେ । ଏଥିପାଇଁ ତାଙ୍କୁ ଭଗବଦ କୃପା ଥିଲା । ତେଣୁ ନିଜ ଜୀବଦ୍ଦଶାରେ ସେ ନିଜର ଅସାଧୁତା ଓ ଅନୈତିକ କାର୍ଯ୍ୟ ଲୋକଲୋଚନରୁ ଲୁଚାଇ ରଖିବାରେ ସଫଳ ହୋଇଥିଲେ । ଭାଗବତରେ ଅଛି -

'ଆୟୁଷ ବଳ ଯଶଧର୍ମ<br>
ଲୋକ ଆଶିଷ ଶୁଭ କର୍ମ,<br>
ଏ ଆଦି ସର୍ବନାଶକରେ<br>
ଯେ ହିଂସା କରିଥାଇ ପରେ

ମାତ୍ର ଆତତାୟୀ ହାତରେ ତାଙ୍କୁ କୃତ କର୍ମର ପରିଣାମ ଭୋଗିବାକୁ ପଡ଼ିଥିଲା ।

ଏଇ ସୁନାଶଙ୍କର କୀର୍ତ୍ତିର କେତୋଟି ଉଦାହରଣ ବର୍ଣ୍ଣନା କରି ମଧ୍ୟ ପରେ ବାଦ ଦେଇଛି । ଏ ଗୁଡ଼ିକର ସତ୍ୟତା ନ ଥାଇ ଏହା ଫଳରେ ଦିବଂଗତ ଅନେକ ସୁପୁରୁଷ ଓ ଭଦ୍ର ମହିଳାଙ୍କର ଚରିତ୍ର ସଂହାର ସହିତ ସମ୍ମାନରେ ଆଞ୍ଚ ଆସିବାର ସଂଭାବନା ଅଧିକ ଜଣାପଡୁଛି । କଳ୍ପନା ବଳରେ ଜଘନ୍ୟ କୁତ୍ସିତ ମିଥ୍ୟା ଆରୋପିତ ଆଚରଣରେ ନିରୀହ କର୍ମଚାରୀଙ୍କର ଅଗୋଚରରେ କିପରି ଚରିତ୍ର ସଂହାର କରାଯାଇପାରେ ଏ ସବୁ ତାହାର ପ୍ରମାଣ । ସେହି ନିର୍ଦ୍ଦୋଷ ନିରୀହ ନିର୍ବିଘ୍ୟ କର୍ମଚାରୀଙ୍କର ଦୋଷ ଥିଲା ସେମାନେ ନିଜର ଦକ୍ଷତା ଉପରେ ବେଶି ନିର୍ଭର କରୁଥିଲେ ଓ ଗଡ଼ଜାତ ସୁଲ୍ଲଭ ତୋଷାମଦ ଅପେକ୍ଷା କର୍ତ୍ତବ୍ୟ ସଂପାଦନକୁ ଅଧିକ ଅଧିକ ଗୁରୁତ୍ୱ ଦେଉଥିଲେ । ସୁନାଶଙ୍କୁ ଭିତରି ଖବର ବ୍ୟକ୍ତିଗତ କୁତ୍ସା ଅବଗତ କରାଇ ପାରୁ ନ ଥିଲେ । ସୁନାଶଙ୍କର ଜୀବନୀ ଏହି ଶ୍ରେଣୀର ବ୍ୟକ୍ତିମାନଙ୍କୁ ଶିକ୍ଷାଦିଏ, ସବୁକାଳେ ସବୁଲୋକଙ୍କୁ ବୋକା ବନେଇ ନିଜ ଉଦ୍ଦେଶ୍ୟ ସାଧନ ପରିଣାମରେ ନିଜର ସର୍ବନାଶ ଘଟାଏ ।



# ଏକ ବିରଳ ବ୍ୟକ୍ତିତ୍ୱ

୧୯୪୯ ମସିହା ଆରମ୍ଭ । ସମ୍ବଲପୁରର ଡେପୁଟି କମିସନର ଜିଲ୍ଲା ମାଜିଷ୍ଟ୍ରେଟ ରାୟବାହାଦୂର ଦୁର୍ଗାଚରଣ ଦାସ । ସରେଇକଳା ଖରସୁଆଁର ଜିଲ୍ଲା ମାଜିଷ୍ଟ୍ରେଟ୍ ଥିଲେ । ସେଠରେ ଗୁଳିକାଣ୍ଡରେ ବିପୁଳ କ୍ଷୟକ୍ଷତି ହେବାରୁ ବଦଳି ହୋଇ ସମ୍ବଲପୁର ଆସିଲେ । ସମ୍ବଲପୁରର ଡି.ସି. ବଲାଙ୍ଗିର ଗଲେ ଓ ବଲାଙ୍ଗିର ପାଟଣା ଜିଲ୍ଲାର ମୁଖ୍ୟ ପ୍ରଶାସକ ପ୍ରଫୁଲ କୁମାର ତ୍ରିପାଠୀ ସିଂହଭୂମବାସୀ ଥାଇ ସରେଇକଳା ଖରଛୁଆଁ ଜିଲ୍ଲା ମାଜିଷ୍ଟ୍ରେଟ୍ ଭାବରେ ସ୍ଥାନାନ୍ତରିତ ହେଲେ । ପରେ ଏଇ ଜିଲ୍ଲାଟି ଓଡ଼ିଶାରୁ ଯାଇ ବିହାରରେ ମିଶିଲା । ଦୁର୍ଗାଚରଣ ଦୋର୍ଦ୍ଦଣ୍ଡ ହାକିମ । ଥରେ ହୁକୁମ ଦେଲେ ବଦଳିବ ନାହିଁ। ନୀତି ହେଲା "ହାକିମ ବଦଲେଗା, ହୁକୁମ ନେହିଁ" ସେହି ହିସାବରେ ଅନମନୀୟ । ପୋଖତ ଅଫିସରମାନେ ବିଭିନ୍ନ ଗଡ଼ଜାତ ଅଞ୍ଚଳକୁ ପଠାଯାଉଥାନ୍ତି । ଅଳ୍ପ କେତେଜଣ ଅନଭିଜ୍ଞ ଅଫିସର ଓ ଗଡ଼ଜାତରୁ ସଦ୍ୟ ଆଗତ ଅଫିସର ଧରି ଜିଲ୍ଲା ଶାସନ ଚାଲୁଥାଏ । କାର୍ଯ୍ୟ ଆରମ୍ଭ ପ୍ରଥମ କେତେଘଣ୍ଟା ଉପଦେଶ ଶୁଣିବାରେ ଯାଏ । ଏମିତି ଦିନେ ଚାଲିଛି ଜଣେ ବୟସ୍କ ଅଫିସର ଗୋଟାଏ ମୋଟା ଫାଇଲ ହାତରେ ଧରି ଉଭା ହେଲେ । ବସିବାକୁ କହିବା ପରେ ଡି.ସି.ଙ୍କର କୌତୂହଳ ପୂର୍ଣ୍ଣ ଦୃଷ୍ଟି ଦେଖି ସେ କହିଲେ "ମୁଁ ହରିହର ମହାପାତ୍ର ଜିଲ୍ଲା ଯୋଗାଣ ଅଧିକାରୀ । ଆପଣଙ୍କୁ ମୁଁ ଗତ ଏତେ ତାରିଖରେ ସାକ୍ଷାତ କରିଥିଲି । ଆବଶ୍ୟକ ନ ଥିଲେ ମୁଁ ଉପରିସ୍ଥ କର୍ମକର୍ତ୍ତାଙ୍କୁ ସାକ୍ଷାତ କରି ନଥାଏ । ଏହି ଫାଇଲରେ ମୋ ସହିତ ଆଲୋଚନା ପାଇଁ ଲେଖାଯାଇଛି । ସେଥିପାଇଁ ଏହା ଘେନି ମୁଁ ଆସିଛି । ଏହାର ବିଷୟ ବସ୍ତୁ ଏହପରି । ସରେଇକଳା ଖରସୁଆଁକୁ ଆମେ ଚାଉଳ ପଠାଉଥିଲୁ । ସେତକିବେଳେ ଏହା ବିହାରକୁ ଚାଲିଗଲା । ଆମର ସିନି ଷ୍ଟେସନରେ କେତେ ୱାଗନ ଚାଉଳ ଅଛି । ତାହା ବେଳକୁବେଳ ଖରାପ ହୋଇଯାଉଛି । ଶୀଘ୍ର ଏହା ବ୍ୟବହାର ହେବା ଦରକାର । ଏହାର ନିଲାମ ହେବା ସପକ୍ଷରେ ମୋର ଯୁକ୍ତି ।" ଏତିକି କହି ଏକ ଦୁଇ ତିନି ଚାରି କହି ଶୁଣାଇଲେ । ବିପକ୍ଷରେ କୁହାଯିବ ଏମିତି ଏକ ଦୁଇ ।

ଏତିକି କହି କଣ ଆଦେଶ ଶୀଘ୍ର ଦେବାକୁ ନିବେଦନ କଲେ । କହିଲେ ମୁଁ ଶୀଘ୍ର ନିଲାମର ପକ୍ଷରେ ଓ କେଉଁଠି କିଏ ନିଲାମ କରିବେ ତାହା ଦର୍ଶାଇଛି, ହୁକୁମ ପ୍ରାର୍ଥନୀୟ । ଜିଲ୍ଲା ମାଜିଷ୍ଟ୍ରେଟଙ୍କ ଦୋଦୋପାଞ୍ଚ ମନୋଭାବ ଦେଖି ସେ ପୁଣି ଆରମ୍ଭ କଲେ । ବୋଧହୁଏ ମୁଁ କଥାଟା ପରିଷ୍କାର କରି ବୁଝାଇ ପାରିନାହିଁ । ସବୁକଥା ଆଉ ଥରେ କହୁଛି । ପୁଣି ସେଇ କଥାର ପୁନରାବୃତ୍ତି । କଣ ଆଦେଶ ହେବ ତାହାର ସ୍ପଷ୍ଟୀକରଣ । ଡେପୁଟି କମିସନର ଫାଇଲ ଖୋଲି ଆଖି ପକାଇଲେ । ତା ପରେ ଯାହା କୁହାଯାଇଛି ହେଉ ବୋଲି ଲେଖି ଫାଇଲ ତାଙ୍କ ହାତରେ ଧରାଇ ଦେଲେ । ସମାନ୍ୟ ମୁଣ୍ଡ ନୁଆଇଁ ମହାପାତ୍ରେ ବିଦାୟ ନେଲେ । ସେ ଅଫିସରେ ପଶିବା ସମୟରେ ଦୁଇଜଣ ଅନ୍ୟ ଅଫିସର ଉଠି ଛିଡ଼ା ହୋଇଥିଲେ । ସେ ସେପରି ବରିଷ୍ଠ ନୁହନ୍ତି ଯେ ଏପରି ମାନ୍ୟତା ପାଇବେ । ତେଣୁ ସେ ଯିବା ପରେ ସ୍ପଷ୍ଟୀକରଣ କରି ସେମାନେ କହିଲେ । ହରିହର ମହାପାତ୍ର ତାଙ୍କର ଶିକ୍ଷକ ଥିଲେ ଜଗତ୍‌ସିଂହପୁରରେ । ଆଉ ଜଣଙ୍କର ବାରିପଦାରେ । ତାଙ୍କର ଦୁଇ ଜଣ ପୁରାତନ ଛାତ୍ର । ଦୁର୍ଗାଚରଣ କ୍ୱଚିତ୍ ନିଜର ଗମ୍ଭୀରତା ଭାଙ୍ଗିଥାଆନ୍ତି । ହାଲୁକାଭାବରେ କହିଲେ "ବାପାରେ ଗୋଟାଏ ତ ଯମ ।"

ଜଗତସିଂହପୁରରେ ନୂଆ ହାଇସ୍କୁଲ ହୋଇଥାଏ । ପ୍ରଧାନ ଶିକ୍ଷକ ଭାବରେ ନିଯୁକ୍ତି ପାଇ ସେ ଯାଇଥିଲେ । ଯୋଗ୍ୟତା ବିଏ.ବିଇଡ଼ି. ବିଏଲ୍ ଥାଏ । ଭବିଷ୍ୟତ ଉନ୍ନତି ଆଶାରେ ଶିକ୍ଷକମାନେ ଆସନ୍ତି । ହରିହର ୭/୮ ମାସ ଥିଲେ । ସେଠାରୁ ନିଯୁକ୍ତି ପାଇ ବାରିପଦା ଚାଲିଗଲେ । ହଷ୍ଟେଲର ଗୋଟିଏ କୋଠରୀରେ ରହୁଥାଆନ୍ତି । ସାମାନ୍ୟ କଥାବାର୍ତ୍ତା କରନ୍ତି । ବେଶି ସମୟ ଲେଖାପଢ଼ାରେ ଯାଏ । ଦିନେ ଷଷ୍ଠ ପିରିଅଡ଼ରେ ନବମ ଶ୍ରେଣୀରେ ଇଂରାଜୀ ଗ୍ରାମାର ପଢ଼ାଇଲେ । ସବୁଦିନ ପରି ଧୀରସ୍ଥିର ଭାବରେ ଉଦାହରଣ ଦେଇ ଓ ନାନା ପ୍ରକାର ପ୍ରଶ୍ନ ପଚାରି ୪୫ ମିନିଟର ପୁରା ସଦୁପଯୋଗ କଲେ । ୭ମ ପିରିଅଡ଼ ପରେ ସ୍କୁଲ ଛୁଟି । ତାଙ୍କର ଗୋଟିଏ ସୁଟକେଶ ଓ ବେଡ଼ିଂ ଧରି ସ୍କୁଲ ପିଅନ ରାସ୍ତା ଧାରରେ ଠିଆ ହେଲା । ବସ ଆସିଲା । ସେଥିରେ ସେ ଚାଲିଗଲେ । ଜଣାଗଲା ସେ ଇସ୍ତଫା ଦେଇଛନ୍ତି । ଇସ୍ତଫା ଗୃହୀତ ହୋଇଛି ଓ ପର ଦିନଠାରୁ କାର୍ଯ୍ୟକାରୀ ହେବ । ଷଷ୍ଠ ପିରିଅଡ଼ରେ ତାଙ୍କ ପାଠପଢ଼ା ଦେଖି କେହି ଅନୁମାନ କରିପାରିନଥାନ୍ତା ଯେ ସ୍କୁଲରେ ଏହି ଛାତ୍ରମାନଙ୍କୁ ସେ ଆଉ ପଢ଼େଇବେ ନାହିଁ ।

ହରିହରିଙ୍କର ଘର ପୁରୀ ନିକଟସ୍ଥ ବୀରଗୋବିନ୍ଦପୁର । ପୁରୀ ଜିଲ୍ଲାସ୍କୁଲରେ ପଢୁଥିଲେ । ସ୍ୱନାମଧନ୍ୟ ପ୍ରଶାସକ ପ୍ରାଣନାଥ ମହାନ୍ତିଙ୍କର ସହପାଠୀ ଥିଲେ । ତାଙ୍କ ସାଙ୍ଗେ ତାଳ ଦେଇ ଶ୍ରେଣୀରେ ପୋଜିସନ ରଖୁଥିଲେ । ପ୍ରାଣନାଥଙ୍କ ବାପା ଦେଓ୍ୱାନ । ସେ ଏମଏ ପଢ଼ିଲେ । ଆଇସିଏସ୍ ପରୀକ୍ଷା ଦେଲେ । ଆଇସିଏସ୍ ଯଦିଚ ପାଇଲେ

ନାହିଁ ଡେ଼ପୁଟି କଲେକ୍ଟର ହେଲେ । ହରିହର ଅବସ୍ଥାପନ୍ନ ନ ଥିଲେ । ବିଏ ପରେ ପୋଥିରେ ଡୋ଼ର ବନ୍ଧା ହେଲା । ବିଇଡ଼ି ପଢ଼ି ଶିକ୍ଷକ ହେଲେ । ଯୁଦ୍ଧ ସମୟ, ବାରିପଦା ହାଇସ୍କୁଲରେ ଶିକ୍ଷକ । ଇତିହାସ ଉପରେ ପାଠ୍ୟ ପୁସ୍ତକ ଲେଖିଥିଲେ । ରଚନା ଉପାଦେୟ ଥିଲା, ମାତ୍ର ଧରାଧରି କରି ନ ପାରିବାରୁ ଏହା ଟେଷ୍ଟ ବୁକ୍ କମିଟିରେ ମଞ୍ଜୁର କରାଇ ପାରିଲେ ନାହିଁ । ତଥାପି ବହିର ଉପାଦେୟତା ଦୃଷ୍ଟିରୁ ଏହାର ବଜାରରେ କାଟତି ଥିଲା । ପ୍ରାଣନାଥ ଯୁଦ୍ଧ ସମୟରେ ତାଙ୍କୁ ଯୋଗାଣ ବିଭାଗରେ ଖାଦ୍ୟ ପ୍ରଚାର ଅଧିକାରୀ ଭାବରେ ଆଣିଲେ । ସେତେବେଳେ ଯୋଗାଣ ବିଭାଗର ସେ ଉପସଚିବ । ହରିହର ଯୋଗାଣ ବିଭାଗରେ ସହକାରୀ ଜିଲ୍ଲା ଯୋଗାଣ ସହକାରୀ ପରେ ଜିଲ୍ଲା ଯୋଗାଣ ଅଧିକାରୀ ଓ ଡେ଼ପୁଟି କଲେକ୍ଟର ହେଲେ । ସମ୍ବଲପୁରରେ ସେ ଯୋଗାଣ ଅଧିକାରୀ । ସରକାର ଘରେ ଏକା ରହୁଥାନ୍ତି । ପାଖକୁ ଗଲେ ମାଷ୍ଟର ସୁଲଭ ନାନା ଉପଦେଶାତ୍ମକ ତଥ୍ୟ ଶୁଣିବାକୁ ମିଳେ । ଗୋଟିଏ ରବିବାର, ଉପରବେଳା ମୁଁ ଯାଇ ପାଖରେ ବସିଥାଏ ତାଙ୍କର ଯାମଡ଼ା (ବର୍ତ୍ତମାନ ଯେଉଁଟା ହୀରାକୁଦ) ଗସ୍ତରେ ଯିବାର ଥିଲା । ତାଙ୍କର ବିଭାଗୀୟ ଲାଣ୍ଡ ରୋଭର ଆସି ପହଞ୍ଚିଲା ମତେ ବିଦା ହେବାକୁ ପଡ଼ିଲା ଜାଣି ମୁଁ ଯାମଡ଼ା ଦେଖିନାହିଁ ସାଙ୍ଗରେ ଯିବାକୁ କହିଲି । ରାଜିହେଲେ । ବାଟ ୫/୬ ମାଇଲ୍ ସମ୍ବଲପୁର ନଗର ସୀମା ଏତେ ବଡ଼ ନଥାଏ । ଯାମଡ଼ାର ଗୌନ୍ତିଆ ସେଠାରେ ଗୋଟାଏ ଦୋକାନ ଖୋଲିଥାନ୍ତି । ହୀରାକୁଦ ନିର୍ମାଣ ସଂକ୍ରାନ୍ତରେ କର୍ମଚାରୀ ଦଳକୁଦଳ ଆସୁଛନ୍ତି । ଯେଉଁମାନେ ନିର୍ମାଣସ୍ଥଳ ନିକଟରେ ରହୁଥାନ୍ତି ସେମାନଙ୍କର ସବୁ ଆବଶ୍ୟକତା ଏହି ଦୋକାନରେ ମିଳେ । ଗୌନ୍ତିଆ ପ୍ରତିପତ୍ତିଶାଳୀ । ଲୋକପ୍ରିୟ । ଅଥାନରେ ସରକାରୀ କର୍ମଚାରୀମାନଙ୍କର ଭରସା । କଣ୍ଟ୍ରୋଲ ସାମଗ୍ରୀମାନ ମଧ୍ୟ ତାଙ୍କ ଜରିଆରେ ଉଠାଯାଇ ବିକ୍ରି ହେଉଥାଏ । ଅଭିଯୋଗ ଆସିଥାଏ ସେ ହାତରୁ ମାଲ ଛାଡ଼ି ଦେଉଛନ୍ତି, ଗ୍ରାହକମାନେ ପାଉନାହାନ୍ତି । ଏହାର ଅଚାନକ ତଦନ୍ତପାଇ ଯୋଗାଣ ଅଧିକାରୀ ପହଞ୍ଚିଲେ । ଖାତା ପତ୍ର ତନ୍ନତନ୍ନ ଯାଞ୍ଚ କଲେ ସାଙ୍ଗରେ କେହି ସହକାରୀ ନ ଥିଲେ । ଇନିସ୍‌ପେକ୍ଟରଙ୍କୁ ଜାଣିଶୁଣି ଖବର ଦିଆଯାଇ ନ ଥିଲା ବା ସାଙ୍ଗରେ ନିଆଯାଇ ନ ଥିଲା । ଯାଞ୍ଚରେ ସବୁଠିକ୍ ଥିବା ଜଣା ପଡ଼ିଲା । କେହି ଖଳ ପ୍ରକୃତିର ଲୋକ ଇର୍ଷାପରାୟଣ ହୋଇ ଦରଖାସ୍ତ ଦେଇଥିବା ସ୍ପଷ୍ଟ ଜଣାଗଲା । ଯାଞ୍ଚପରେ ଗୌନ୍ତିଆ ଚାହା କପେ ଦେଲେ । ଯୋଗାଣ ଅଧିକାର ମନାକଲେ । ସେ ଚାହା ଖାଆନ୍ତି ନାହିଁ । ମୁଁ ଏକା ମଧ୍ୟ କଣ କରନ୍ତି ବିଚାରା ଡ୍ରାଇଭର ଓ ପିଅନ ଅବଶ୍ୟ ବଞ୍ଚିତ ହେଲେ । ଦୋକାନ ସଜାସଜି ମୁଁ ଯାଞ୍ଚବେଳେ ଦେଖୁଥାଏ । ନୂଆ ନୂଆ ପ୍ଲାଷ୍ଟିକ୍ ଜିନିଷ ବଜାରକୁ ଆସୁଥାଏ । ମାଲର ବିକ୍ରି ଲୋକପ୍ରିୟ କରିବାକୁ ଚାରଟି କପ୍‌ପ୍ଲେଟ୍ର ଏକ ସେଟ ମାଗଣା ବଣ୍ଟା ଯାଉଥାଏ । ଦୋକାନରେ ଏମିତି ପ୍ରାୟ ୧୦/୧୨ ସେଟ୍ ରଖାଯାଇଥାଏ । କମ୍ପାନୀର ନାମ ଓ ଏହା ଉପହାର ପାଇଁ

ଉଦ୍ଦିଷ୍ଟ ଏହା ଲେଖା ଯାଇଥାଏ । ଉପହାର ନିମିତ୍ତ ଉଦ୍ଦିଷ୍ଟ ବୋଲି ଲେଖାଥାଏ । ମୋର ଲୋଭ ହେଲା । କିଛି ଅନିୟମିତତା ବା ଅନୈତିକତା ମୁଁ ଏଥିରେ ଦେଖିଲି ନାହିଁ । ମୋର ଗୋଟିଏ ସେଟ ବାନ୍ଧିଲି । ଆଉ ଗୋଟାଏ ସେଟ ଯୋଗାଣ ଅଧିକାରୀଙ୍କୁ ଦେବି ବୋଲି କହି ସାଙ୍ଗରେ ଆଣିଲି । ତାଙ୍କ ଘରେ ଓହ୍ଲାଇଲି ଯଦିଚ ମୋର ଘର ବାଟରେ । ମୋର ଦ୍ୱିଚକ୍ର ଯାନ ସେଇଠି । ମୋର ସେଟଟି ଧରିଲି । କାଗଜରେ ବନ୍ଧା ଅନ୍ୟ ସେଟଟି ତାଙ୍କ ଟେବୁଲ୍ ଉପରେ ରଖି ଏହାର ମାଗଣା ବଣ୍ଟନର ଉଦ୍ଦେଶ୍ୟ ଶୁଣାଇଲି । ଅଧିକାରୀ ଶିକ୍ଷକ ସୁଲଭ ନିଜ ବିରକ୍ତି ପ୍ରକାଶ କଲେ । "ଭଲ ହେଲା ନାହିଁ । ତମର ଆଣିବା ଉଚିତ୍ ନଥିଲା । ମୋ ପାଇଁ ଆଣିବା ମଧ୍ୟ ଏକ ଗୁରୁତର ତ୍ରୁଟି । ମୁଁ ଯାଞ୍ଚ ପାଇଁ ଯାଇଛି ତ୍ରୁଟି ଥାଉ ବା ନ ଥାଉ ନିରପେକ୍ଷତା ଏହି ଉପହାର ଦ୍ୱାରା ପ୍ରଭାବିତ ହେବାର ସଂଭାବନା ଅଛି ।" ଏମିତି ଉପଦେଶ ୧୫/୨୦ ମିନିଟ୍ ଚାଲିଲା । ମୋର କାନ୍ଦକାନ୍ଦ ଅବସ୍ଥା । "ମୁଁ ତାହାହେଲେ ନେଇ ଫେରାଇ ଦେଇ ଆସୁଛି ମୋର ବିଚାରରେ ମୁଁ କୌଣସି ଅନିୟମତା ବା ଅନୈତିକତା ଦେଖୁନାହିଁ । ଏହା ସର୍ବସାଧାରଣଙ୍କୁ ଉପହାର ଦେବା ନିମିତ୍ତ ଉଦ୍ଦିଷ୍ଟ ଓ ଆମେ ତାହା ଭିତରେ ଅନ୍ତର୍ଗତ ।" ମୋର ଏହି ପ୍ରକାର ଯୁକ୍ତି ଆଦୌ ଗ୍ରହଣୀୟ ହେଉ ନଥାଏ । ମୁଁ ଉଠିବାକୁ ବସିଲି । ଏତିକିବେଳେ ଜିଲ୍ଲା ବାଣିଜ୍ୟକର ଅଧିକାରୀ ତାଙ୍କ ସହପାଠୀ କି ସହଧ୍ୟାୟୀ ପହଞ୍ଚିଗଲେ । ମୋର କାନ୍ଦକାନ୍ଦ ଅବସ୍ଥା ତାଙ୍କୁ ମଧ୍ୟ ବାଧିଲା । ସେ ବୁଝାଇଲେ । ତମ ଛାତ୍ର ଅନଭିଜ୍ଞ । ତାଙ୍କ ବିଚାରରେ ତ୍ରୁଟି ଅଛି । ସେ ଯଥେଷ୍ଟ ଦଣ୍ଡ ପାଇଲେଣି ଆପଣଙ୍କ ହାତରେ । ତେଣୁ ସେ ନିଜେ ରଖନ୍ତୁ ଓ ତାଙ୍କୁ ଆପଣ ଏଥିରୁ ନିସ୍ତର କରନ୍ତୁ । ନହେଲେ ସେ ସାଇକେଲ, କରି ୭ ମାଇଲ୍ ଯାଇ ମାଲ ଫେରାଇବେ । ତାଙ୍କ ଯୁକ୍ତି ବା ବକ୍ତବ୍ୟ ଶେଷରେ ହରିହର ଗ୍ରହଣ କଲେ । ତାଙ୍କ ଟେବୁଲରେ ରଖି ମୁଁ ଚାଲିଆସିଲି । ଶୁଣିଲି ସେ ସେଟ୍‌ଟି ନିଜେ ନରଖି ଆଉ ଜଣକୁ ଦେଇଦେଲେ ପ୍ରାପ୍ତି ଯୋଗର ବର୍ଣ୍ଣନା ସହିତ ।

ଡେପୁଟି କଲେକ୍ଟର ହରିହର ପରବର୍ତ୍ତୀକାଳରେ ଆଠଗଡ଼ର (ସବ୍‌ଡ଼ିଭିଜନାଲ ଅଫିସର) ଉପଜିଲ୍ଲାପାଳ ହେଲେ । ସ୍ଥାନୀୟ ବିଧାୟକ ଅତି ପ୍ରତାପଶାଳୀ ମାତ୍ର ସେ କେବେ ତାଙ୍କୁ କୌଣସି କାର୍ଯ୍ୟପାଇଁ ଅନୁରୋଧ କରିବାକୁ ସାହସ କରିନାହାନ୍ତି । ଜିଲ୍ଲାରେ ଉନ୍ନୟନ କାର୍ଯ୍ୟ ଆରମ୍ଭ । ଜିଲ୍ଲାରେ ଗୋଟିଏ ଜିଲ୍ଲା ଉନ୍ନୟନ୍ନ କମିଟି ଥାଏ । ସବୁ ଏସ୍‌ଡ଼ିଓ ଓ ଜିଲ୍ଲାର ବିଭିନ୍ନ ବିଭାଗର କର୍ମକର୍ତ୍ତାମାନେ ଏଥିରେ ସଭ୍ୟ । ପୁରାପୁରି ସରକାରୀ କମିଟି । ଏହାବାଦେ ଅନ୍ୟ ଗୋଟିଏ ବେସରକାରୀ ପରିଷଦ ମଧ୍ୟ ଥାଏ । ସେଥିରେ କେତେକ ପଦାଧିକାରୀ ପଦବୀ ବଳରେ ସଭ୍ୟ ଥାଆନ୍ତି କଟକରେ ଜଣେ ଜିଲ୍ଲାମାଜିଷ୍ଟ୍ରେଟ । ବଡ଼ ଅସହିଷ୍ଣୁ । କାହାକୁ କୁହାଇ ଦେବେ ନାହିଁ । କ୍ଷେତ୍ର ଉପରେ ସୁବିଧା ଅସୁବିଧା ଶୁଣିବେ ନାହିଁ । ନିଜ ମତ ଜବରଦସ୍ତି ଲଦି ଦେବେ । କାମ ହୋଇ

ପାରେ ନାହିଁ । ସମସ୍ତେ ଏହା ଅନୁଭବ କରନ୍ତି ମାତ୍ର ତାଙ୍କୁ କହି ଅପମାନିତ ହେବାକୁ କାହାର ଦମ୍ଭ ନଥାଏ । ସରକାର ଓ କମିସନରଙ୍କ ସେ ପ୍ରିୟପାତ୍ର । ଏମିତି ଗୋଟିଏ ମିଟିଂ ଚାଲିଛି । ହରିହର ଉଠି ଛିଡ଼ାହେଲେ । ସବୁରି ଦୃଷ୍ଟି ତାଙ୍କ ଉପରେ । ଆଲୋଚନା ଶେଷ ହୋଇଛି । କେହି କିଛି କହି ନଥାନ୍ତି । ସଭା ଅଧ୍ୟକ୍ଷ ଜିଲ୍ଲା ମାଜିଷ୍ଟ୍ରେଟଙ୍କୁ ଲକ୍ଷ୍ୟ କରି କହିଲେ ମୋ ନାଁ ହରିହର ମହାପାତ୍ର । ଆଠଗଡ଼ ଏସଡ଼ିଓ ଭାବରେ ମୁଁ ଏହି କମିଟିର ସଭ୍ୟ । ଆପଣ ମୋର ବକ୍ତବ୍ୟ ଶୁଣିବାକୁ ପ୍ରସ୍ତୁତ ନୁହନ୍ତି । କ୍ଷେତ୍ର ଉପରେ ଅସୁବିଧା କେତେକ ପ୍ରସ୍ତାବର ଅବାସ୍ତବତା ଆଲୋଚନାର ସୁଯୋଗ ମିଳୁନାହିଁ । ତେଣୁ ମୋର ଉପସ୍ଥିତିର କୌଣସି ଆବଶ୍ୟକତା ମୁଁ ଦେଖୁନାହିଁ । ସଭା ବିବରଣୀ ପହଞ୍ଚିଲେ ମୁଁ ବିଷୟବସ୍ତୁ ଆଲୋଚନା ଜାଣିପାରିବି । ମୁଁ ନ ଆସିଲେ ସରକାରଙ୍କ ବରଂ ଗସ୍ତ ଖର୍ଚ୍ଚ ବଞ୍ଚିଯିବ । ମୁଁ ଉଠିଯାଉଛି ମୋର ଅନୁରୋଧ ମୋର ବକ୍ତବ୍ୟ ବିବରଣୀରେ ସ୍ଥାନ ପାଇବ । ଅଧ୍ୟକ୍ଷ ନରମି ଗଲେ । ତା ପର ଆଲୋଚନାଠାରୁ ଅନ୍ୟମାନଙ୍କର ମତାମତ ଶୁଣିଲେ । କୁହାଯାଏ Bully is always a Coward ସେ ସେହିପ୍ରକାର ଅଫିସର । ସଭା ଶେଷରେ ହରିହରଙ୍କ ପାଖକୁ ଯାଇ କ୍ଷମା ମାଗିଲେ । ଭବିଷ୍ୟତରେ ତାଙ୍କ ବକ୍ତବ୍ୟ ଶୁଣିବେ ଓ ଭିନ୍ନମତ ପ୍ରୋସିଡ଼ିଂରେ ସ୍ଥାନ ପାଇବ ବୋଲି ପ୍ରତିଶ୍ରୁତି ଦେଲେ ମାତ୍ର ନିଜେ ଦେଇଥିବା ମନ୍ତବ୍ୟକୁ ସେ ଉଠାଇ ନେବାକୁ ରାଜି ହେଲେ ନାହିଁ । ବହୁ ଆଲୋଚନ ଓ ଉଚ୍ଚ ସ୍ତରର ବାଦାନୁବାଦ ପରେ ଏହା ଅବଶ୍ୟ ବିବରଣୀରୁ ବାଦ୍ ଦିଆଗଲା ମାତ୍ର ହରିହରଙ୍କର ନିର୍ଭିକତା ଦମ୍ଭ ଓ ଉଚ୍ଚ କର୍ତ୍ତୃପକ୍ଷଙ୍କ ନାଲିଆଖି ପ୍ରତି ତାଚ୍ଛଲ୍ୟ ଅନ୍ୟମାନଙ୍କୁ ସାହସ ଯୋଗାଇଥିଲା । ଜଣେ ସଚ୍ଚୋଟ କର୍ମଚାରୀ କିପରି ଅନ୍ୟମାନଙ୍କୁ ଅନୁପ୍ରାଣିତ କରେ ତାହାର ଆଦର୍ଶ ଥିଲେ ହରିହର । ଯୋଗାଣ ମନ୍ତ୍ରୀ ନବକୃଷ୍ଣ ଚଉଧୁରୀ ତାଙ୍କୁ ଯୋଗାଣ ଅଧିକାରୀ ଦେଖି ଓ କାର୍ଯ୍ୟକଳାପ ଶୁଣି କହିଥିଲେ ଦେଶ ବଦଳିବ ହରିବାବୁଙ୍କ ପରି ଅଧିକାରୀ ରହିଲେ । ଅନ୍ୟ ଏକ ନିଜ ଅଭିଜ୍ଞତା । ହରିହର ସଚିବାଳୟରେ । ଓଡ଼ିଶା ପ୍ରଶାସନିକ Tribunal ର ସଚିବ ଓ ତାହା ସହିତ ସରକାରଙ୍କର ଉପଶାସନ ସଚିବ । ସେତେବେଳେ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ନିମିତ୍ତ ଏହି ଏକମାତ୍ର ଅନୁଷ୍ଠାନ ଥାଏ । ଜଣେ ଖୁବ୍ ପ୍ରତିଷ୍ଠାବାନ ଉଚ୍ଚ ଅଧିକାରୀ ଏହାର ଏକ ମାତ୍ର ସଭ୍ୟ । ଅଭଯୋଗକାରୀ ଓ ଅଭିଯୁକ୍ତଙ୍କର ଯୁକ୍ତି ପ୍ରତିଯୁକ୍ତି ଶୁଣିଲା ପରେ ଆଦେଶ ଦିଆଯାଏ । ଏହା ବିରୁଦ୍ଧରେ କେବଳ ହାଇକୋର୍ଟରେ ଅପିଲ ହୁଏ । ହରିହର ଓ ମୁଁ ଜାଣଥିବା ଜଣେ ପ୍ରଶାସନିକ ଅଧିକାରୀ କାର୍ଯ୍ୟରୁ ବିତାଡ଼ିତ ହେଲେ ବୋଲି ଖବରକାଗଜରେ ପଢ଼ି ମୁଁ ତାଙ୍କୁ ସେହି ପଦଚ୍ୟୁତ ଅଧିକାରୀଙ୍କ ବିଷୟରେ ପଚାରିଲି । ଅଦାଲତ ରାୟ ଦେଇ ସାରିଲେଣି । ଏହା ବର୍ତ୍ତମାନ ଖୋଲା ଦଲିଲ ଯେ କେହି ଦେଖିପାରେ ପଢ଼ିପାରେ । ମତେ ପଢ଼ିବାର ସୁଯୋଗ ମିଳୁ । ତାଙ୍କ ଟେବୁଲ ଉପରେ ରଖାଯାଇଥିବା ଏକା ମୋଟା ଫାଇଲ ଦେଖାଇ ସେ ମତେ କହିଲେ ରାୟ

ଦିଆଯାଇଛି ମାତ୍ର ଏ ପ୍ରକାର କୁତ୍ସିତ ଆଚରଣ କ୍ଷମତାର ଅପବ୍ୟବହାର ପ୍ରତିଦ୍ୱନ୍ଦ୍ୱିମାନଙ୍କ ଉପରେ ଜୁଲମ ଏଥିରେ ବର୍ଣ୍ଣନା କରାଯାଇଛି ତାହା ତୁମେ ବରଂ ନ ପଢ଼ିବା ଭଲ । ଆମେ ଖବରକାଗଜକୁ ଯାହା ରାୟ ମଧ୍ୟରୁ ପ୍ରକାଶଯୋଗ୍ୟ ତାହା ଦେଇଛୁ । ତମେ ତାହା ପଢ଼ିଛ ମାତ୍ର ସମସ୍ତ ରାୟଗୋଟି ତମକୁ ପଢ଼ିବାକୁ ଦେବା ବେଆଇନ ନ ହେଲେ ମଧ୍ୟ ଅନୈତିକ । ମକଦ୍ଦମାରେ ସଂପୃକ୍ତ କେହି ସିନା ନକଲ ନେଇପାରିବ ବା ନଥିପତ୍ର ଦେଖିପାରିବ ତମେ ସଂପୂର୍ଣ୍ଣ ବାହାରର ଲୋକ । ତମର ସ୍ୱାର୍ଥ କିଛି ନାହିଁ । ହୁଏତ କୁତ୍ସା କରିବାକୁ ତମେ ତାହା ବ୍ୟବହାର କରିପାର । ଏମିତି ହିତୋପଦେଶ ପରେ ମୁଁ ଲେଉଟି ଆସିଲି । ଆଜିକାଲି କେତେଜଣ କର୍ମଚାରୀ ମିଳିବେ ଯେଉଁମାନେ ଦଲିଲର ଗୋପନୀୟତା ଓ ବ୍ୟକ୍ତି ବିଶେଷଙ୍କର ବ୍ୟକ୍ତିଗତ ଆଚରଣର ସୁରକ୍ଷା ଦେବେ । ଜୀବନରେ ଦ୍ୱିତୀୟ ବ୍ୟକ୍ତି ଏ ପ୍ରକାର ନୀତି ବା ଆଦର୍ଶ ଧରି ଚାକିରିରେ ତିଷ୍ଠିବା ମୁଁ ଦେଖୁନାହିଁ ।



# ଓଡ଼ିଶାରେ ଗଣହତ୍ୟା

୧୯୪୮ ମସିହାର ଦ୍ୱିତୀୟାର୍ଦ୍ଧ ସମ୍ବଲପୁରରେ ଥାଏ । କମଳି ବଜାର ବସାରୁ ସାଇକେଲରେ କଚେରି ଯାଉଥାଏ । ସାନ ସଡ଼କୁ.ଜ ମୋ ସାଙ୍ଗରେ ମିଶିଲେ ଟ୍ରେଜେରୀ ଡେପୁଟି କଲେକ୍ଟର ମୌନୁଦ୍ଦିନ ସରିଫ । ପରିସିଆନରେ ବିଏ ଅନର୍ସ । ୧୯୪୦ରେ ସବଡ଼େପୁଟି । ୧୯୪୬ ରେ ଡେପୁଟି । ଚାକିରିରେ ମୋଠାରୁ ଛଅ ବର୍ଷ ବରିଷ୍ଠ । କଥା ପ୍ରସଙ୍ଗରେ କହିଲେ ଡାକ୍ତର ଖାଁ ପାକିସ୍ଥାନ ଯିବାକୁ ପରମିଟ ପାଇ ଦରଖାସ୍ତ କରିଛି । ଆଜି ଡି.ସି. (ଜିଲ୍ଲାପାଳ)ଙ୍କ ପାଖରୁ ଯେପରି ପରମିଟ କରେଇଦେବ । ମୁଁ ଇଂଲିଶ ଅଫିସର ଚାର୍ଜରେ । କଲେକଟୋରେଟର ଯାହା କିଛି ଇଂରାଜୀ ଚିଠପତ୍ର ସେ ସବୁ ଏହି ସେକସନ୍ ଜରିଆରେ ଯିବା ଆସିବା କରିବା ନିୟମ । ଭାରତ ପାକିସ୍ଥାନ ଦୁଇ ଦେଶ ହୋଇଯାଇ ଥାଏ ମାତ୍ର ପାସପୋର୍ଟ ଭିସା ନିୟମମାନ ତିଆରି ହୋଇ ନ ଥାଏ । ବହୁତ ଲୋକଙ୍କର ବହୁ ବନ୍ଧୁ ବାନ୍ଧବ ଏ ପାଖ ସେ ପାଖରେ ଥାଆନ୍ତି । ସାମାଜିକ ଉତ୍ସବ ରୋଗବୈରାଗ୍ୟ ଜନ୍ମ ମୃତ୍ୟୁ ପାଇ ଯାଆସ ଜରୁର ଦରକାର ଥାଏ । ସରକାର ଜିଲ୍ଲା ମାଜିଷ୍ଟ୍ରେଟମାନଙ୍କୁ କ୍ଷମତାପ୍ରାପ୍ତ ଅଧିକାରୀ ଘୋଷଣା କରିଥାନ୍ତି ପରମିଟ ଦେବାକୁ । ସର୍ତ୍ତ ଗୋଟାଏ ରଖାଯାଇଥାଏ । ତାଙ୍କର ସହାୟକଭାବେ କୌଣସି ମୁସଲିମ୍ ଅଫିସର ବା ପୂର୍ବତନ ଦେଶୀୟ ରାଜ୍ୟ ଅଫିସରଙ୍କୁ ଏ ପରମିଟ୍ ଦାୟିତ୍ୱ ନ ଦେବାକୁ । ସେମାନଙ୍କର ଆନୁଗତ୍ୟ ପ୍ରତି ସନ୍ଦେହ ପ୍ରକାଶ କରି ବା ସେମାନଙ୍କୁ ଅଡୁଆ ପରିସ୍ଥିତିରୁ ଦୂରରେ ରଖିବାକୁ ବୋଧହୁଏ ଏମିତି ହୋଇଥାଏ । ତେଣୁ ମୁଁ କନିଷ୍ଠ ଅଫିସର ହୋଇ ମଧ୍ୟ ଏ ଦାୟିତ୍ୱରେ ଥାଏ । ଜିଲ୍ଲାପାଳ ରାୟବାହାଦୁର ଦୁର୍ଗାଚରଣ ଦାସ ଖାଲି ଦସ୍ତଖତ କରି ଫାଇଲ ଫେରାଇ ଦିଅନ୍ତି । ହାତାହାତି ଫାଇଲ ନେଇ ତାଙ୍କ ଦସ୍ତଖତ ଆଣିବାକୁ ପଡ଼େ ।

ଅବଦୁଲ ସତାର ଖାଁ ସମ୍ବଲପୁର ସହରର ବାସିନ୍ଦା । ଦଲେଇ ପଡ଼ାରେ ଘର । ସମ୍ବଲପୁର ମଧ୍ୟ ପ୍ରଦେଶରେ ଥିବାବେଳେ ସେ ଅମଲା ଚାକିରିରେ ପଶିଥିଲେ । କିଲଟରୀର

ଅଫିସ ସୁପରିଟେଣ୍ଡ ହେଲେ । କାର୍ଯ୍ୟଦକ୍ଷତା ଯୋଗୁଁ ସାହେବ ଡ.ସି ଓ ସମ୍ବଲପୁରର ପଲଟିକାଲ ଏଜେଣ୍ଟ ତାଙ୍କ ଉପରେ ଖୁସି ଥାଆନ୍ତି । ତାଙ୍କୁ ନୟାଗଡ଼ ରାଜ୍ୟର ଦେଓ୍ୱାନ କରି ପଠାଇଦେଲେ । ସେଠାରେ ସେ ଅନେକ ଲୋକ ହିତକର କାମ କରିଥିଲେ । ବିଶେଷ କରି ଦେବୋତ୍ତର ବିଭାଗର ପୁର୍ନଗଠନ ଓ ପରିଚାଳନା ଫଳରେ ଶରଣକୁଳ ଲଡୁବାବା ଓ ଓଡ଼ଗାଁ ରଘୁନାଥ ଜିଉଙ୍କର ମନ୍ଦିରର ଗୌରବ ତାଙ୍କ ସମୟରେ ଓଡ଼ିଶାରେ ପ୍ରସାର ଲାଭ କରିଥିଲା । ତାଙ୍କର ଜଣେ ପୁଅ ଏମ.ବି.ବି.ଏସ୍ ଡାକ୍ତର । ସମ୍ବଲପୁରରେ ଘରୋଇ ଚିକିତ୍ସା କରୁଥିଲେ । ସୁନାମ ଅର୍ଜନ କରିଥିଲେ । ସମ୍ବଲପୁର ମୁନିସପାଲଟିର ମଧ୍ୟ ସେ ଅଧ୍ୟକ୍ଷ (ପ୍ରେସିଡ଼େଣ୍ଟ) ଥିଲେ । ମଧ୍ୟ ପ୍ରଦେଶ ମୁନିସିପାଲଟି ଆଇନ ଅନୁସାରେ ଚେୟାରମାନଙ୍କ ବଦଳରେ ପ୍ରେସିଡ଼େଣ୍ଟ ମୁନିସପାଲ କାଉନସିଲ ସଭାରେ ଅଧ୍ୟକ୍ଷତା କରୁଥିଲେ । ୧୯୪୦ ମସିହାରେ ସମ୍ବଲପୁରରେ ଜଣେ ଡେପୁଟି କମିସନର ଥିଲେ । ଏମ.ଏ. ଆଜଫର । ପାକିସ୍ଥାନ ଗଠନ ପ୍ରସ୍ତାବ ସେଇ ବର୍ଷ ମୁସଲିମ୍ ଲିଗ୍ କାଉନ୍ସିଲ୍‌ରେ ପାସ ହେଲା । ଅଜଫର ଆଲାହାବାଦର ଲୋକ । ବିଏ ଓ ବିଏଲ ପାସକରି ୧୯୩୩ ରେ ଆଇସିଏସରେ ପଶିଥିଲେ । ନିଜ ଯୋଗ୍ୟତା ବଳରେ ନୁହେଁ ସଂଖ୍ୟାଲଘୁ ସଂପ୍ରଦାୟର ପ୍ରାର୍ଥୀ ଭାବରେ ସେ ନିଯୁକ୍ତି ପାଇଥିଲେ । କଟକର ଜିଲ୍ଲାପାଳ ଚନ୍ଦ୍ରଶେଖର ଝାଁ ମଧ୍ୟ ସେଇ ବର୍ଷର ଆଇସିଏସ୍ । ଆଜଫର ମୁସଲିମ ରାଜ୍ୟ (ପାକିସ୍ଥାନ) ଗଠନ ସୁନିଶ୍ଚିତ ଜାଣି ସେଇ ଦିଗରେ କାର୍ଯ୍ୟ କଲେ । ନିଜର ମୁସଲିମ ଅଫିସରମାନଙ୍କୁ ସେଇ ମନ୍ତ୍ରରେ ଦୀକ୍ଷିତ କରାଇଲେ । ସମ୍ବଲପୁରରେ ନଜୁଲ (ଖାସମାହାଲ) ଜମିରୁ ଇଦିଗା ପଡ଼ିଆ ପାଇଁ ପାଞ୍ଚ ଏକର ଓ ସେ ସମୟରେ ମୁସଲିମ ସମାଜର ଜଣେ ବିଶିଷ୍ଟ ବ୍ୟକ୍ତି (ପରେ ମୁସଲିମଲିଗ୍ ବ୍ୟବସ୍ଥାପକ) ଖାଁ ସାହେବ ମହମ୍ମଦ ଖାଁକୁ ଟାଉନହଲ ପାଖରେ ପ୍ରାୟ ୨/୩ ଏକର ଜମି ଦେଲେ । ହିନ୍ଦୁ ମନ୍ଦିରମାନେ ଫୁଲ ତୁଳସୀସେବା ନିମିତ୍ତ ପାଇଥିବା ଖାସ ମାହଲ ଜମିରେ ଘର ତିଆରି କରି ମନ୍ଦିରର କ୍ରମବର୍ଦ୍ଧି ପରିଚାଳନା ବ୍ୟୟ ନିର୍ବାହ କରୁଥିବାରୁ ମଠାଧିଶମାନଙ୍କଠାରୁ ଏହା ସରକାରଙ୍କ ହାତକୁ ନେଇ ଯିବାର ଉଦ୍ୟମ ଆରମ୍ଭ କଲେ । ସୌଭାଗ୍ୟ କ୍ରମେ ସେ ସମୟରେ ପୁଲିଶ ସୁପରିଟେଣ୍ଡ ଥାଆନ୍ତି ୧୯୩୩ ମସିହାରେ ଆଇ.ପି.ଏସ୍. ପି.ଭି. ଭାସ୍କରନ୍ । ସେ ଆଜଫରଙ୍କ ଏହି ଉଦ୍ଦେଶ୍ୟମୂଳକ ଓ ଦୂରଭିସନ୍ଧି ଯୁକ୍ତ କାର୍ଯ୍ୟ ସରକାରଙ୍କ ଦୃଷ୍ଟିକୁ ଆଣୁଥାନ୍ତି ଯାହା ଫଳରେ ସେମାନେ ଆଜଫରଙ୍କ ଉପରେ ଦୃଷ୍ଟି ରଖିଥାଆନ୍ତି । ଏ ସବୁ ସତ୍ତ୍ୱେ ଜିଲ୍ଲାର ଅନେକ ଲୋକ ହିତକର ଅନୁଷ୍ଠାନ ଗଠନ ପଛରେ ଆଜଫରଙ୍କ ଅବଦାନ ସ୍ମରଣୀୟ । ଡାକ୍ତର ଖାଁ ଆଜଫରଙ୍କ ଦ୍ୱାରା ପ୍ରଭାବିତ ହୋଇ ମନେ ମନେ ମୁସଲିମ ଲିଗର ସମର୍ଥକ ଥିଲେ ମଧ୍ୟ ବାହାରେ ପ୍ରକାଶ କରିପାରୁ ନଥିଲେ । ତାଙ୍କର ଆଉ ଜଣେ ଭାଇ ମହମ୍ମଦ ଅଲ୍ଲୀ ଖାଁ ବିଏ ପାସ କରି ଆଇପି ହୋଇ ବିହାର ଓଡ଼ିଶାରେ ଅବସ୍ଥାପିତ । ସେତେବେଳେ ବିହାରର କୌଣସି ଜିଲ୍ଲାରେ ପୁଲିଶ

ସୁପରିଟେଣ୍ଡ ଥାଆନ୍ତି ।

କଚେରୀରେ ଡାକ୍ତରଙ୍କ ଦରଖାସ୍ତ ମିଳିଲା । ସମ୍ବଲପୁରର ସେ ଜଣେ ପ୍ରତିଷ୍ଠିତ ବ୍ୟକ୍ତି । ବହୁ ଜମିବାଡ଼ି ଘରଦ୍ୱାର ସ୍ଥାବର ଅସ୍ଥାବର ସଂପତ୍ତିର ଅଧିକାରୀ । ନିଜର ଜଣେ ସଂପର୍କିୟଙ୍କୁ ଦେଖିବାକୁ କରାଚି ଯିବେ । କାହାର ଆପତ୍ତି କଣ ଥାଇ ପାରେ । ସେଇଦିନ ପରମିଟ୍ ଦିଆଗଲା । ସେଇ ସପ୍ତାହରେ ସେ ପାକିସ୍ତାନ ଗଲେ ବମ୍ବେ ବାଟେ ରେଳରେ । ଘଟଣାର କିଛି ଗୁରୁତ୍ୱ ନଥାଏ । କାଶ୍ମୀର ଆଲୋଚନା ପ୍ରସଙ୍ଗରେ ପାକିସ୍ତାନ ପ୍ରତିନିଧି ମହମ୍ମଦ ଜଫରୁଲା ଖାଁ ଭାରତରେ ନରସଂହାର କରାଯାଇ ସଂଖ୍ୟାଲଘୁମାନଙ୍କୁ ନିର୍ମୂଳ କରାଯାଇଛି ଏଇ କଥା ପ୍ରଚାର କଲେ । ଇଂରାଜୀ ଶବ୍ଦ Genocide ଗଣହତ୍ୟା ଚାରିଆଡ଼େ ଶୁଣାଗଲା । ୧୯୪୬ ମସିହା ଅଗଷ୍ଟ ମାସରେ ମୁସଲିମ୍‌ଲିଗ୍ ପାକିସ୍ତାନ ହାସଲ ନିମିତ୍ତ ପ୍ରତ୍ୟକ୍ଷ କାର୍ଯ୍ୟ ଦିବସ ଘୋଷଣା କଲା । କଲିକତାରେ ଏଚ୍.ଏସ୍. ସୁରାୱାର୍ଦ୍ଦିଙ୍କ ପ୍ରଧାନମନ୍ତ୍ରୀତ୍ୱରେ ମୁସଲିମ୍ ଲିଗ୍ ମନ୍ତ୍ରୀମଣ୍ଡଳ । ବହୁତ ଓଡ଼ିଆ କଲିକତାରେ କଳ କାରଖାନାରେ କାମ କରନ୍ତି । ବେଶିଭାଗ ମେଟିଆ ବୁରୁଜରେ ରହୁଥାଆନ୍ତି । କବି ମାନସିଂହଙ୍କ ଭାଷାରେ

"ଐତିହାସିକ ଓଡ଼ିଆ ଜାତିର ପ୍ରତିନିଧି ଶତ ପାଞ୍ଚ,
ମେଟିଆ ବୁରୁଜେ ବସା କରିଛନ୍ତି ଖାଆନ୍ତି ଇଲିସ ମାଛ ।

XXX

ସାଂପ୍ରଦାୟିକ ଦଙ୍ଗା ଚାଲିଛି ହିନ୍ଦୁ ମୁସଲମାନ,
ପାଗଳ ଖୋଜଇ ଏକ ଆରେକର ରକ୍ତ ଭକ୍ଷ୍ଯଘ୍ରାଣ ।
ବୃଦ୍ଧ, ରୁଗ୍ଣ, ବାଳିକା, ରମଣୀ
ଶାବକ ସ୍ତନ୍ୟଜୀବୀ
ମହାକାରୁଣିକ ଆଲ୍ଲାର ନାମେ
ହୁଅନ୍ତି ଧର୍ମ-ହବି ।
ସାଂପ୍ରଦାୟିକ ଅନ୍ଧ ଘୃଣାରେ ହିନ୍ଦୁମୁସଲମାନ
ମହାନଗରୀରେ ଖୋଜେ ଅନ୍ୟୋନ୍ୟ
ରକ୍ତ ଭକ୍ଷ୍ଯ ଘ୍ରାଣ ।
ଘାତକ ଡାକିଲେ ମେଟିଆ ବୁରୁଜେ
"ବାହାର କାଫେର ଦଳ,
ହୁଅ ମସଲେମ ଅଥବା ଶୀଘ୍ର
ଜାହାନ୍ନାମରେ ଚଳ" ।

XXX

ହିନ୍ଦୁ ତୁ ତୋର ସେଇ ଅପରାଧ
ଏଇ ତାର ଫଳ ଦେଖ ।"
ନିଠୁର ଘାତକ ଉତ୍ତରେ ଧରେ
ଓଡ଼ିଆ ଶ୍ରମିକ ବେକ ।
ଭୀରୁ ଓଡ଼ିଆର, ଦୁଃଖୀ କୁଲିର
ଶୋଣିତ ଲିପ୍ତ ମଥା,
ସହସା ପଡ଼ିଲା ମାଟିଆ ବୁରୁଜେ
ନାହିଁ ପାରି କହି କଥା ।
ପାଞ୍ଚଶ ଓଡ଼ିଆ ଗୋଟି ଗୋଟି କରି ନିରୀହ ଛାଗଳପରି,
ସାଂପ୍ରଦାୟିକ ଯଜ୍ଞରେ ହେଲେ ସହଜଲଭ୍ୟ ବଳି ।
ଏକତା ସାହସ ବୀର୍ଯ୍ୟ ଅଭାବୁ ମଲେ ସେ
କି ହିନିମାନେ
ଆକ୍ରାନ୍ତ ହେଲେ ପଶୁ ବି ଏହାଠୁ
ମରେ ବେଶି ସମ୍ମାନେ"
"ମାଟିଆ ବୁରୁଜରେ" କବିତା ଗ୍ରନ୍ଥାବଳୀ ୨ଖଣ୍ଡ ପୃଷ୍ଠା ୨୨୦ ।"

ଓଡ଼ିଶାର ପୂର୍ବତନ ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ ଗସ୍ତ କରି ଏହାର ସତ୍ୟତା ଦେଶକୁ ଜଣାଇଲେ । ମୁସ୍‌ଲିମ୍ ଲିଗର ମୁଖପତ୍ର 'ମର୍ଣ୍ଣିଂ ନିଉଜ' ତାଙ୍କୁ କୃପାକାରୀ King of Mud Slingers ବୋଲି ବର୍ଣ୍ଣନା କଲା । ମାତ୍ର ଓଡିଶାରେ ଜଗନ୍ନାଥଙ୍କ ସର୍ବଧର୍ମ ସମନ୍ୱୟର ପ୍ରଭାବ ଏତେ ଗଭୀର ଯେ ତଥାପି ଓଡ଼ିଶାରେ କୌଣସି ମୁସଲମାନ ବିରୋଧୀଭାବ ପ୍ରକାଶ ପାଇନଥିଲା ।

୧୯୪୯ ମସିହା ଦ୍ୱିତୀୟାର୍ଦ୍ଧରେ କରାଚି ରେଡ଼ିଓ ଷ୍ଟେସନରୁ ଜଣେ ଓଡ଼ିଶାର ଡାକ୍ତର ନିଜ ଭାଷଣରେ ଓଡ଼ିଶାରେ ମୁସଲମାନମାନେ ଅତି ସ୍ୱଳ୍ପ ସଂଖ୍ୟାରେ ଥାଇ ମଧ୍ୟ ବର୍ତ୍ତମାନ ନିଶ୍ଚିହ୍ନ ହେଇଯାଇଥିବା ଚାଞ୍ଚଲ୍ୟକର ସମ୍ବାଦ ପ୍ରଚାର କଲେ । ଭାରତ ସରକାର ଏହି ଭାଷଣ ମନିଟର କରି ରାଜ୍ୟ ସରକାରଙ୍କୁ ଦେଲେ । ଏହି ବ୍ୟକ୍ତି ଜଣକ କିଏ କିପରି ପାକିସ୍ଥାନ ଗଲେ ସେ ବିଷୟରେ ବିଶେଷ ବିବରଣୀ ମାଗିଲେ । ଜିଲ୍ଲାପାଳ ରିପୋର୍ଟ ଦେଲେ । ଏହା ଭାରତ ସରକାର ଯୁକ୍ତିସଙ୍ଗତ ବୋଲି ଗ୍ରହଣ କଲେ ଓ ସମ୍ବଲପୁର ସହର ଓ ଜିଲ୍ଲାର ଅନ୍ୟ ସ୍ଥାନରେ ଥିବା ତାଙ୍କର ସମସ୍ତ ଅଚଳ ସଂପତ୍ତିକୁ ପଳାତକ ସଂପତ୍ତି ଭାବରେ ଘୋଷଣା କଲେ ।

ଏହାର ବରଷେ ଦି ବରଷ ପରେ ଗୋଟିଏ ଦେଓ୍ୱାନି ମକଦ୍ଦମାରେ ଆଜଫରଙ୍କ ସାକ୍ଷ୍ୟ ଦରକାର ପଡ଼ିଲା । ସେ ସେତେବେଳେ ପାକିସ୍ଥାନରେ ସ୍ୱରାଷ୍ଟ୍ର ସଚିବ । ଆଇସିଏସ୍ ବଦଳରେ ସେ C.S.P. (ସିଭିଲ୍ ସର୍ଭିସ୍ ଅଫ ପାକିସ୍ଥାନ)ର ଟାଣୁଆ ସଭ୍ୟ । ପରେ ପୂର୍ବ ପାକିସ୍ଥାନର ଗଭର୍ଣ୍ଣର ହେଲେ । ସରକାରୀ ଓକିଲ ଗୌରୀଶଙ୍କର ମିଶ୍ର ତାଙ୍କ ସାକ୍ଷ୍ୟ ନେବାକୁ କରାଚି ଗଲେ । ସହରରେ ବୁଲିବାବେଳେ ଗୋଟିଏ ନାମଜାଦା ମସଜିଦ୍ ସାମନା ରାସ୍ତାରେ ଛିଣ୍ଡା ପ୍ୟାଣ୍ଟ କୋଟ୍ ପିନ୍ଧି ଗୋଟିଏ ଟୋପି ଓଲଟାଇ ରଖି ଲୋକମାନଙ୍କର ସାହାଯ୍ୟ ଭିକ୍ଷା କରୁଥିବା ବ୍ୟକ୍ତିଜଣକୁ ଦେଖିଲେ ।

ଚିହ୍ନା ଚିହ୍ନା ଚେହେରା ମାଲୁମ ହେଲା । ଗୌରିଶଙ୍କର ପରିଚୟ ପଚାରିଲେ । ଚିହ୍ନା ପରିଚୟ ହେଲା । ଡାକ୍ତର ନିଜର ଦୁଷ୍କର୍ମ ପାଇଁ ବହୁତ କାନ୍ଦିଲେ । ତାଙ୍କୁ କେମିତି ଧାରଣା ଦିଆଯାଇଥିଲା ନୂଆଗଢ଼ା ପାକିସ୍ଥାନ ରାଜ୍ୟରେ ସେ ହୁଏତ ସ୍ୱାସ୍ଥ୍ୟମନ୍ତ୍ରୀ ବା ଉଚ୍ଚ ସରକାରୀ ପଦବୀରେ ନିଶ୍ଚୟ ପ୍ରତିଷ୍ଠିତ ହେବେ । ମାତ୍ର ସେ ଜୀବିକା ହରାଇଲେ । ବାସସ୍ଥାନ ମଧ ତାଙ୍କର ନଥିଲା । ତାଙ୍କର ପରେ କଣ ହେଲା କେହି ଜାଣିପାରିଲେ ନାହିଁ । ହୁଏତ ନିଜର ଭାଇ ଭଉଣୀ ଆତ୍ମୀୟ ସ୍ୱଜନ ତାଙ୍କର ଦେଶଦ୍ରୋହ ନିମିତ୍ତ ତାକୁ ଭୁଲିଗଲେ । ମାତ୍ର ଏହାର ପରିଣାମ ଭୋଗ କଲେ ତାଙ୍କର ଭାଇ ପୁଲିଶ ସାହେବ ମହମ୍ମଦ ଅଲ୍ଲୀ ଖାଁ । ୧୯୨୧ ମସିହାରେ ଆଇ.ପି.ସି.ଏମ୍.ରାଇଟ ନେଭିଲ ଅବସର ଗ୍ରହଣ କଲାପରେ ସେ ହୁଏତ ଓଡ଼ିଶାର ପ୍ରଥମ ଭାରତୀୟ ଆଇଜି ହୋଇଥାନ୍ତେ ମାତ୍ର ତାଙ୍କୁ ସେ ପଦ ମିଳିଲା ନାହିଁ । ତାଙ୍କର ଜଣେ ଜ୍ୱାଇଁ ସୟିଦ ଖାଁ ଡେପୁଟି କଲେକ୍ଟର ଥିଲେ । ଉଚ୍ଚ ପଦବୀରେ ଅଧିଷ୍ଠିତ ହୋଇ ଅବସର ନେଲେ । ଏମ.ଏ ଖାଁଙ୍କ ଦୌହିତ୍ର ବର୍ତ୍ତମାନ ଭାରତୀୟ ବୈଦେଶିକ ସେବାରେ କାର୍ଯ୍ୟ କରୁଛନ୍ତି ।



# ତୁ ନାଥ ପରମଦୟାଳୁ

ନୀଳମଣି ସେନାପତି । ଜନ୍ମ ୧୮୯୭ ମସିହା । ବିଏ ପାସକରି ବିଲାତ ଗଲେ । ଆଇସିଏସ୍ ପରୀକ୍ଷା ଦେଲେ । ସଫଳ ହେଲେ । ବିଲାତରେ FRGS Fellow Royal Geography Society ମଧ୍ୟ ହୋଇଥିଲେ । ୧୯୨୨ ମସିହା ଜାନୁଆରୀ ୪ଠର ତାରିଖରେ ଭାରତକୁ ଫେରି ଆସିଲେ । ବିହାର ଓଡ଼ିଶାରେ ଅବସ୍ଥାପିତ ହେଲେ । ସେ ଓଡ଼ିଶାରୁ ପ୍ରଥମ ଓଡ଼ିଆ ଆଇସିଏସ । ତାଙ୍କପରେ ୧୯୨୯ ମସିହାରେ ଅନ୍ନଦାଶଙ୍କରରାୟ (ଢେଙ୍କାନାଳ) ଓ ୧୯୩୨ ମସିହାରେ କୃପାସିନ୍ଧୁ ମିଶ୍ର ଏଇ ଗୌରବମୟ ପଦବୀ ପାଇଁ ଓଡ଼ିଆଙ୍କ ଟେକ ରଖିଥିଲେ । ସେନାପତି ପୁରୀ ଓ ସମ୍ବଲପୁରର ଜିଲ୍ଲାପାଳ ଥିଲେ । ତାପରେ ବିହାର ଚାଲିଗଲେ । ଭାରତରକ୍ଷା ଆଇନର ପ୍ରୟୋଗ ନିମିତ୍ତ ଯୁଦ୍ଧ ସମୟରେ ସେ ଗୃହ ସଚିବ ଭାବରେ ଦାୟୀ ଥାଆନ୍ତି । ପାଟଣା ସଚିବାଳୟରେ ଜଣେ ଜାତୀୟତାବାଦୀ କର୍ମଚାରୀଭାବରେ ସେ ପରିଚିତ ଥିଲେ । ଭାରତଛାଡ଼ ଆନ୍ଦୋଳନ ବେଳେ ତାଙ୍କୁ ଗୃହ ସଚିବ ପଦରୁ ଇଂରେଜମାନେ ହଟାଇ ଦେଇଥିଲେ । ସେ ଓଡ଼ିଶାକୁ କେତେ ବର୍ଷ ପରେ ଫେରିଆସି ଓଡ଼ିଶାର ରାଜସ୍ୱ କମିସନର ହେଲେ । ସମଗ୍ର ଓଡ଼ିଶା କଟକ ପୁରୀ ବାଲେଶ୍ୱର ସମ୍ବଲପୁର ଗଞ୍ଜାମ, କୋରାପୁଟ ଏଇ ଛଅଟି ଜିଲ୍ଲାକୁ ନେଇ ଗଠିତ । ପ୍ରଦେଶର ସେ ସର୍ବୋଚ୍ଚ ରାଜକର୍ମଚାରୀ । ସେହି ମଧ୍ୟ ଏକକ ରାଜସ୍ୱ ପରିଷଦ । କୃଷି, ସମବାୟ, ପଶୁପାଳନ, ଶିଳ୍ପ, ସ୍ୱାୟତଶାସନ ସବୁଠାରେ ତାଙ୍କର କର୍ତ୍ତୃତ୍ୱ । ଜିଲ୍ଲା ଗସ୍ତ କରି ସେ ପରିବର୍ତ୍ତିତ ପରିସ୍ଥିତି ସହିତ ଶାସନର ଦୃଢ଼ତା ଓ ଆନୁଗତ୍ୟ କମି ଯାଉଥିବା ଉପଲବ୍ଧି କଲେ । କୌଣସି ନିଷ୍ପତ୍ତିରେ ଯେପରି ବିଳମ୍ବ ନ ହୁଏ ଓ ସରକାରୀ କର୍ମଚାରୀ ଟାଣୁଆ ହେଲେ ଯେପରି ପ୍ରତିକ୍ରିୟାଶୀଳ ରାଜନୈତିକ ନେତାମାନଙ୍କ ଆଗରେ ନିଜର ମନୋବଳ ନ ହରାନ୍ତି ଏଥିପାଇଁ ସେ ଉଦ୍ୟମ ଆରମ୍ଭ କଲେ । ଗୋଟାଏ ପୁରୁଣା ଫାଇଲ୍ ତାଙ୍କ ପାଖରେ ପେଶ ହେଲା । ଜଣେ ଅବକାରୀ ସୁପରିଟେଣ୍ଡ ଦୀର୍ଘମାସ ଧରି ନିଲମ୍ବିତ ହୋଇ ଅଛନ୍ତି । ତାଙ୍କର ଅବସର ପାଖେଇ ଆସୁଛି । ଇନକ୍ୱାରି ସରିଛି ମାତ୍ର ଶେଷ ନିଷ୍ପତ୍ତି

ନିମିତ୍ତ ଟାଳଟୁଳ ନୀତି ଚାଳିଛି । ସେ ପ୍ରଦତ୍ତ ଅଭିଯୋଗପତ୍ର ଅଭିଯୁକ୍ତଙ୍କର ଉତ୍ତର, ଲିଖିତ ମୌଖିକ ପ୍ରମାଣ ସବୁ ଅନୁଧ୍ୟାନ କଲେ । ଦେଖିଲେ ସେହି କର୍ମଚାରୀ ଜଣଙ୍କ ତାଙ୍କ ଅଧିନରେ ସମ୍ବଲପୁରରେ ସେ ଜିଲ୍ଲାପାଳଥିବା ସମୟରେ ଅବକାରୀ ଇନ୍ସପେକ୍ଟର ଥିଲେ । ତାଙ୍କର କାର୍ଯ୍ୟପ୍ରଣାଳୀ, ଦୋଷ ଦୁର୍ବଳତା ସବୁ ଜିଲ୍ଲାପାଳ ଭାବରେ ସେ ଅବଗତ ହେଲେ । ଉକ୍ତ ଅଫିସରଙ୍କୁ ସେ ଡକାଇ ପଠାଇଲେ । ତାଙ୍କର କରୁଣ କାହାଣୀ ମଧ ଶୁଣିଲେ । ନିଜେ ଦୀର୍ଘଦିନ ଧରି ଫଏସଲା ନ ହେଇଥିବା ଅଭିଯୋଗ ନିମିତ୍ତ ଦୁଃଖ ପ୍ରକାଶ କରି ତାଙ୍କୁ କହିଲେ "ଦେଖ ହେମନ୍ତ (ତାଙ୍କ ନାଁ) ମୁଁ ତମକୁ ଦୀର୍ଘଦିନ ଧରି ଜାଣିଛି ତମର ନିଷ୍ଠାପର ସେବା ମଧ ଦେଖିଛି । ମାତ୍ର ତମ ବିରୁଦ୍ଧରେ ଅଭିଯୋଗ ପତ୍ର ତୁମ୍ଭର କୈଫିୟିତ ପ୍ରମାଣ ଆଦି ଦେଖି ମୋର ହୃଦବୋଧ ହେଉଛି ଯେ ମୁଁ ତୁମ୍ଭକୁ କୌଣସି  ପ୍ରକାର ସାହାର୍ଯ୍ୟ କରି ପାରିବି ନାହିଁ । ତମେ ଦୀର୍ଘ ଦିନ ନିଲମ୍ବିତ ହେବା ଫଳରେ ତମର ମନୋବଳ ଭାଙ୍ଗିଯାଇଛି । ନିଜର ଅଧସ୍ତନ କର୍ମଚାରୀମାନଙ୍କ ପାଖରେ ତମେ ନ୍ୟୁନ ପ୍ରତିପାଦିତ ହୋଇଛ । ତମର ଦଣ୍ଡାଦେଶ ସୁନିଶ୍ଚିତ । ମୁଁ ତା ପୂର୍ବରୁ ତମକୁ ତମର ବିଚାର ନିମିତ୍ତ ଏକ ପ୍ରସ୍ତାବ ଦେଉଛି । ତମେ ଯେଉଁ ପଦବୀରେ ଥିଲ ସେଇ ପଦବୀରେ ମୁଁ ତମକୁ ନିଲମ୍ବନରୁ ମୁକ୍ତ କରି ସେଇ ଜିଲ୍ଲାରେ ଅବସ୍ଥାପିତ କରୁଛି । ଆଦେଶ ତମକୁ ଏଇଠି ଦିଆଯିବ । ମାତ୍ର ତମେ ନିଜର  ଅପକର୍ମ ସ୍ମରଣ କରି ଏହି ଆଦେଶ ଅନୁସାରେ ନୂତନଭାବେ  ପଦବୀରେ ଯୋଗଦାନ ନ କରି ସରକାରଙ୍କୁ ଜଣାଇଦେବ ଯେ ବିନା କାରଣରେ ମୋତେ  ଦୀର୍ଘଦିନ ହଇରାଣ କରି ସରକାର ନିଯୁକ୍ତି ଦାତା ଭାବରେ ନିଜର କର୍ତ୍ତବ୍ୟ ସୁସଂପାଦନରେ ତ୍ରୁଟି କରିଛନ୍ତି । ମୋର ଆଉ ଅଳ୍ପ ସମୟ କାର୍ଯ୍ୟକାଳ ଅଛି । ଯଦି କାର୍ଯ୍ୟରେ ଯୋଗଦେଇ ନିଷ୍ଠାପର ଭାବରେ ଦୃଢ଼ତାର ସହିତ କାର୍ଯ୍ୟ କରେ ତାହାହେଲେ ମନମୁଖୀ ଉପରିସ୍ଥ କୌଣସି କର୍ତ୍ତୃପକ୍ଷ ମୋତେ ପୁଣି ଏପରି ହଇରାଣ କରି ଅପଦସ୍ଥ କରି ପାରନ୍ତି । ତେଣୁ ମୁଁ ସରକାରଙ୍କ ଦ୍ୱାରା ଦୋଷମୁକ୍ତ ହେବା ପରେ ଆଉ ଚାକିରିରେ ରହିବାକୁ ଇଚ୍ଛା କରୁନାହିଁ । ମୋତେ ଅବସର ଗ୍ରହଣ କରିବାକୁ ଅନୁମତି ମିଳୁ ଓ ମୋର ପ୍ରାପ୍ୟ ମୋତେ ଶୀଘ୍ର ଉପଲବ୍ଧ ହେଉ । ତମର ଏ ପ୍ରକାର ନିବେଦନ ଫଳରେ ତମର ମର୍ଯ୍ୟାଦା ରହିବ । ସରକାର ମଧ ତାହା ଗ୍ରହଣ କରି ତମେ ଅବସର ନେଉଥିବାରୁ ତମର ଅଭିଯୋଗ ପତ୍ରକୁ ଗୁରୁତ୍ୱ ଦେବେ ନାହିଁ ।

ସୁପରିଟେଣ୍ଡ ହେମନ୍ତ ଶୁଣି ସ୍ତମ୍ଭୀଭୂତ ହେଲେ । ନିରାଟ ସତ କଥା । ତଥାପି ଚାକିରିରେ ଲୋଭ ଅଛି । ଉପୁରି ବ୍ୟବସ୍ଥା ଅବକାରୀ ବିଭାଗରେ କମ ନ ଥାଏ । ଏହା ଭିତରେ ଗୋଟାଏ ସେଟଲମେଣ୍ଟ ପଡ଼ିବ । ଜିଲ୍ଲାର ସବୁ ବଡ଼ ଦୋକାନ ମଦ ଭାଟିମାନ ଏହି ସମୟରେ ନିଲାମ କରାଯାଇ ବଡ଼ ଠିକାଦାର ପୁରୁଣା ମଦ ବ୍ୟବସାୟୀମାନଙ୍କୁ

ଦିଆଯିବ । ଅନୁଗୃହୀତ ହେବା ଫଳରେ ସେମାନେ ଦେବା ଅର୍ଥ ଉପଢ଼ୌକନ (ହଜୁରଙ୍କ ନଜରାନା) କିଛି କମ୍ ନୁହେଁ । ରାତିକେ ହାତୀଏ ପରି ସେଇ ସେଟଲମେଣ୍ଟ ଦିବସକୁ ଅନେକ ଅନାଇ ରହିଥାନ୍ତି । ଏ ସବୁ ମନ ଭିତରେ ଉଙ୍କି ମାରିଲା । କିଛି ଉତ୍ତର ନ ଦେଇ ନୀରବ ରହିଲେ । ସେନାପତି ବୋଧହୁଏ ତାଙ୍କର ମନର ଭାବ ବୁଝିପାରିଲେ । ଶୁଣାଇଲେ ହଉ ଏବେ ତମର ନିଷ୍ପତ୍ତି ମତେ ନ ଜଣାଇଲେ ମଧ୍ୟ ମୁଁ ତମକୁ ସାତଦିନ ସମୟ ଦେଉଛି । ମୋ ପ୍ରସ୍ତାବର ସବୁଦିଗ ତମେ ଧୀରସ୍ଥିରଭାବରେ ବିଚାର କରି ତୁମ୍ଭର ବନ୍ଧୁ ଓ ଶୁଭେଚ୍ଛୁମାନଙ୍କର ପରାମର୍ଶ ନେବ । ତୁମ ନିଜ ସହଧର୍ମିଣୀଙ୍କର ମଧ୍ୟ ମତାମତ ନେବ । ମତେ ଜଣାଇବ । ବାର୍ତ୍ତାଳାପ ଶେଷ । ଫାଇଲ ପରିଜାବାବୁ ଷ୍ଟେନୋଙ୍କୁ ଦିଆଗଲା ଧାର୍ଯ୍ୟ ତାରିଖ ଦିନ ପେସ କରିବାକୁ ।

ଠିକ୍ ସାତଦିନ ପରେ ହେମନ୍ତଙ୍କୁ ଡକରା । ତାଙ୍କର ନିଷ୍ପତ୍ତି ଜାଣିବାକୁ ପଚରାଗଲା । ସେ ଦେଦୋପାଞ୍ଚ ହୋଇ ଶୁଣାଇଲେ ନାଁ ସାର ମୋର ବନ୍ଧୁ ସହଧର୍ମିଣୀ, ସହଯୋଗୀ, ଶୁଭେଚ୍ଛୁ ସମସ୍ତେ ଏ ପ୍ରସ୍ତାବ ମତେ ଗ୍ରହଣ ନ କରିବାକୁ ପରାମର୍ଶ ଦେଲେ । ଶୁଣି କମିସନର ଚୂପ ହେଲେ । ଏହା କଣ ତମର ଶେଷ ନିଷ୍ପତ୍ତି । ମୁଁ କହୁଛି ଆହୁରି ଟିକେ ଧୀର ଚିତ୍ତରେ ସବୁ ଦିଗରୁ ଚିନ୍ତାକର । ମୁଁ ତମକୁ ଆଉ ଘଣ୍ଟାଏ ସମୟ ଦେଉଛି । ତାଙ୍କୁ ପାଖ କୋଠରୀକୁ ପଠାଇ ଦିଆଗଲା । ଷ୍ଟେନୋଙ୍କୁ ଡକାଗଲା ଅଫିସ କାମ ଚାଲିଲା । ଠିକ୍ ଘଣ୍ଟାକ ପରେ ପୁଣି ପଚରା 'ହେମନ୍ତ ତମ ନିଷ୍ପତ୍ତି କଣ ଅପରିବର୍ତ୍ତିତ' ଉତ୍ତର ଆସ୍ତିସୂଚକ । ଶେଷ ଧାଡ଼ି ଡାକିବା ବାକି ଥିଲା । ନିର୍ଦ୍ଦେଶ ହେଲେ । "ଲେଖ ଶରତ, ଯେହେତୁ ସବୁ ଅଭିଯୋଗ ଉପରୋକ୍ତ ଆଲୋଚନା ପରେ ସୁପ୍ରମାଣିତ ଅଭିଯୋଗ ଗୁରୁତର ଓ ସରକାରଙ୍କ ରାଜସ୍ୱଆୟର ପ୍ରତିବନ୍ଧକ ତେଣୁ ଅଭିଯୁକ୍ତଙ୍କୁ ଏହି ଅବସ୍ଥାରେ ଦଣ୍ଡ ସ୍ୱରୂପ ସରକାରୀ ଚାକିରିରୁ ବିସ୍ଥାପିତ କରାଗଲା । ତାଙ୍କର ସମସ୍ତ ପୂର୍ବାର୍ଜିତ ସୁବିଧା ତାଙ୍କୁ ଉପଲବ୍ଧ ହେବ ନାହିଁ ।"

ଚପରାଶି ଫାଇଲ ଧରିଲା । କଚେରୀ ପାଖ କମିସନର ଅଫିସରୁ କିଲ୍ଲାରେ ମୁଖ୍ୟ ପ୍ରଧାନ ମନ୍ତ୍ରୀଙ୍କ ପାଖରେ କର୍ତ୍ତା ହାଜର । ସ୍ୱଚ୍ଛ ଆଲୋଚନା । ଦସ୍ତଖତ ଆଣି ପୁଣି ନିଜ ଆସନକୁ ଫେରସ୍ତ । ଅଭିଯୁକ୍ତଙ୍କୁ ସେ ବସିଥିବା କୋଠରୀରେ ଆସନ ଦିଆଯାଇଥାଏ । ସେ ଆସିଲେ । ତାଙ୍କୁ ସରକାରୀ ଆଦେଶର ଏକ ପ୍ରସ୍ତ ଧରେଇ ଦିଆଗଲା । ଭାରତୀୟ ସମ୍ବିଧାନ ୩୧୧ ଧାରା ଚାଲୁହେବାର ପୂର୍ବ ଅବସ୍ଥା । ସମ୍ବିଧାନର ୩୧୧ ଧାରା ଏହିପ୍ରକାର କର୍ମଚାରୀମାନଙ୍କର ସୁରକ୍ଷା ନିମିତ୍ତ ମିଳୁ ନ ଥିଲା । ଲୋକ ସେବକ ସଂସ୍ଥାର ମଧ୍ୟ କ୍ଷମତାର ପରସର ସୀମିତ । ଅଭିଯୋଗ ଫଳରେ ଜଣେ ଦୁନୀତିଗ୍ରସ୍ତ କର୍ମଚାରୀ ବିଦା ହେବା ସାଧାରଣ କଥା । ଫଳରେ ଶାସନରେ ଶୃଙ୍ଖଳା ଓ ଆନୁଗତ୍ୟ ପୋକରା ହୋଇ

ଯାଇ ନ ଥିଲା ।

ହେମନ୍ତ ଆଇନ ଅଦାଲତରେ ବହୁତ ଲଢ଼ିଲେ । ସର୍ବୋଚ୍ଚ ନ୍ୟାୟାଳୟରେ ମଧ୍ୟ ଆଦେଶ ଅପରିବର୍ତ୍ତିତ ରହିଲା । ଦୃଢ଼ ନିଷ୍ପତ୍ତି କିପରି ମାନବିକତାର ସହିତ ନିଆଯାଉଥିବା ତାହାର ଏକ ଉଦାହରଣ ।

ଓଡ଼ିଶାରେ ରାଜସ୍ୱ ପରିଷଦର ପୁର୍ନଗଠନ ହୋଇଛି ସେନାପତି ତାର ଅଧ୍ୟକ୍ଷ । ଦୁଇଜଣ ସଭ୍ୟ । ଜଣେ କଟକରେ ମେମ୍ବର ଏକସାଇଜ । ଆଉ ଜଣେ ସମ୍ବଲପୁରରେ ତାଙ୍କ ପଦବୀ ମେମ୍ବର କମରସିଆଲ ଟାକ୍ସ (Member CT.) ଉଭୟ ନିଜ ଡ଼ିଭିଜନର କମିସନର । ତିନିଜଣଯାକ ରାଜସ୍ୱ ବିଭାଗର ଶାସନ ସଚିବ, ଅଧ୍ୟକ୍ଷ ପ୍ରଧାନ ଓ ଅନ୍ୟ ଦୁଇଜଣ ଅତିରିକ୍ତ । ଶୃଙ୍ଖଳାଗତ ଶାସ୍ତି ବିଧାନ ନିମିତ୍ତ ଗୋଟିଏ ମୋଟା ଫାଇଲ୍ ମେମ୍ବରଙ୍କ ଜରିଆରେ ଅଧ୍ୟକ୍ଷଙ୍କ ପାଖରେ ପହଞ୍ଚିଲା । ଫୁଟେ ଉଚ୍ଚର ଫାଇଲ । କେତେ ବରଷ ଗଡ଼ିଗଲାଣି । ଅଭିଯୁକ୍ତ ନିଲମ୍ବିତ । ଅଭିଯୋଗ ମଧ୍ୟରେ ମୁଖ୍ୟ ସେ କୌଣସି ସରକାରୀ କାର୍ଯ୍ୟ ଉପଲକ୍ଷେ ମଫସଲ ଯାଇ ଗୋଟାଏ ଖାସି ମାରି ଖାଇଗଲେ । ଜିଲ୍ଲାପାଳ ଅଭିଯୋଗ ତଦନ୍ତ କରି ଯଥେଷ୍ଟ ପ୍ରମାଣ ଥିବାରୁ କାର୍ଯ୍ୟନୁଷ୍ଠାନ ନିମିତ୍ତ ସୁପାରିଶ କରିଥାଆନ୍ତି । ଆମୂଳଚୂଳ ପଢ଼ି ଅଧ୍ୟକ୍ଷ ନିର୍ଦ୍ଦେଶ ଦେଲେ ।

'ଶ୍ରୀଯୁକ୍ତ – ମାଂସାଶୀ ଜନ୍ତୁ ନୁହନ୍ତି ଗୋଟାଏ ଖାସି ପୁରାପୁରି ଖାଇ ନ ଥିବେ । ତାଙ୍କ ଭାଗରେ ଅଧସେର କି ତିନିପା ପଡ଼ିଥିବ । ଏଥିପାଇଁ ସେ ଦୀର୍ଘଦିନ ନିଲମ୍ବିତ ହୋଇ ଦଣ୍ଡ ଭୋଗିଲେଣି । ବର୍ତ୍ତମାନ ଏଇ ଫୁଟେ ଉଚ୍ଚ ଫାଇଲ ଏତିକିରେ ଫଏସଲା ହେଉ । ତାଙ୍କର ଦଣ୍ଡ ସ୍ୱରୂପ ତାଙ୍କର ନିଲମ୍ବିତ ସମୟକୁ ଦଣ୍ଡାଦେଶଭାବେ ଧରାଯାଉ ଓ ତାଙ୍କୁ କାର୍ଯ୍ୟରେ ଶିଘ୍ର ଅବସ୍ଥାପିତ କରାଯାଉ । ମନ୍ତ୍ରୀଙ୍କ ପାଖରୁ ଆଦେଶ ଦସ୍ତଖତ ହୋଇ ଆସିଲା । ନିଜ ଗ୍ରାମ 'ଗାରେଡ଼ି ପାଞ୍ଚଣର ଅଠଖା ପାଞ୍ଚଣ' କୁହାଯାଉଥିବା ସେନାପତି ସାହେବ ଏମିତି ।

ସମ୍ବଲପୁରର ଦୁଇ ସବ୍‌ଡ଼ିଭିଜନ୍ ବରଗଡ଼ ଓ ସମ୍ବଲପୁର । ତାଙ୍କୁ ଏହାର ସବୁ ସମସ୍ୟା ଜଣାଯାଏ । ଖଡ଼ିଆଳ ରାଜ୍ୟ ଓଡ଼ିଶାରେ ମିଶିଲା ମଧ୍ୟ ପ୍ରଦେଶରୁ ଆସି । ଏଥିରେ ମଧ୍ୟ ତାଙ୍କର ଅବଦାନ ଥିଲା । ଜିଲ୍ଲାର କର୍ମଚାରୀ ଉପକୂଳ ଅଞ୍ଚଳର ହୋଇଥିଲେ ସେ ମଫସଲ ଗସ୍ତକୁ ଯାଉଛନ୍ତି କି ନାହିଁ ସାଧାରଣ ଲୋକଙ୍କର ବୋଲି ବୁଝୁଛନ୍ତି କି ନାହିଁ ଏ ସବୁ ଜାଣିବାକୁ ଦୁଇ ଚାରିଟା ପ୍ରଶ୍ନ ପଚରାଯିବ । କଟା ଓ ବନ୍ଧ ମଧ୍ୟରେ ଫରକ କଣ ଏହା ଗୋଟିଏ ସାଧାରଣ ପ୍ରଶ୍ନ । ଡେରାଘରେ ନ ରହୁଥିବା ରାଜସ୍ୱ କର୍ମଚାରୀମାନଙ୍କର ଜ୍ଞାନର ଅଗଭୀରତା ସହଜରେ ସେ ମାପି ନେଉଥିଲେ । ସେନାପତି ଖାଦ୍ୟ କମିସନର ।

ଦେବଗଡ଼ ଗସ୍ତରେ ଯାଇଛନ୍ତି । ଅତି ଅଳ୍ପ କର୍ମଚାରୀ କୃଷି ବିଭାଗରେ ଥାଆନ୍ତି । ଜଣେ କ୍ଷେତ୍ର କର୍ମଚାରୀ ଧୋତି ପଂଜାବୀ ପିନ୍ଧି କମିସନରଙ୍କୁ ସାକ୍ଷାତ କଲେ । ଧରିନିଆଗଲା ଏଇ ବରଯାତ୍ରୀ ବେଶରେ ଆସିଥିବା କର୍ମଚାରୀ ଜଣକ କେବେ କ୍ଷେତ୍ରକୁ ଯାଇନଥାନ୍ତି । କୃଷି ଉପ ନିର୍ଦ୍ଦେଶକ ବହୁ କଷ୍ଟରେ ଏ ଧାରଣା ଦୂର କଲେ । ଖାଦ୍ୟ କମିସନର ଭାବରେ ୧୯୫୦ ମସିହାରେ ରାଜ୍ୟରେ କୃଷି ଉତ୍ପାଦନ ବୃଦ୍ଧି ଦିଗରେ ସବୁ ବିଭାଗର ସମନ୍ୱୟ ଉଦ୍ୟମରେ କାର୍ଯ୍ୟ କରୁଥାଆନ୍ତି । ଚିଫ୍ ସେକ୍ରେଟେରୀ ପଦରୁ ତାଙ୍କ ଅନମନୀୟ ମନୋବୃତ୍ତି ହେତୁ ସେ ଏହି ପଦବୀକୁ ଯାଇଥାଆନ୍ତି । ତେଣୁ ପଦର ଗାମ୍ଭୀର୍ଯ୍ୟ ଖୁବ୍ ବେଶୀ ଥାଏ । ସଂଧ୍ୟାରେ ସମ୍ବଲପୁରରେ ପହଞ୍ଚିଲେ କୃଷି ସମସ୍ୟା ସରକିଟ ହାଉସରେ ଆଲୋଚନା ହେଲା । ପରଦିନ ସେ କୃଷି ଫାର୍ମ ଦେଖି ଯିବେ । କୃଷି ବିଭାଗର ଉପ ନିର୍ଦ୍ଦେଶକ ଦୁର୍ଗାମାଧବ ବେଉରା ତାଙ୍କୁ ସବୁ ତଥ୍ୟ ଓ ପରିସଂଖ୍ୟାନ ଯୋଗାଇ ଦେଇଥାଆନ୍ତି । ସକାଳ ଦଶଟା ଉତ୍ତାରେ ସେ କ୍ଷେତ୍ର ପରିଦର୍ଶନରେ ବାହାରିବେ । ସବଡ଼ିଭିଜନ ବିଭିନ୍ନ ପ୍ରୟୋଗଶାଳାର ଅଭାବ ଅସୁବିଧା ବୁଝି ନିଷ୍ପତ୍ତି ଦେବେ । ରାତି ୯ଟାରେ ସବୁ ଅଫିସର ଘରକୁ ଫେରିଲେ ।

ପରଦିନ ସକାଳେ ଖାଦ୍ୟ କମିସନର ସକାଳ ବୁଲାରେ ବାହାରିଲେ । ଷ୍ଟେସନରୋଡ଼ରେ ସମ୍ବଲପୁର ଜିଲ୍ଲାର ଏକ ମାତ୍ର କୃଷି ଫାର୍ମ ଚେଉଁଆ ପଡ଼ାରେ । ସମ୍ବଲପୁରର ରାସ୍ତାର ଗଳିକନ୍ଦି ସହିତ ପୂର୍ବତନ ଡ଼େପୁଟି କମିସନର ଭାବରେ ସେ ଏପରି ସୁପରିଚିତ ଥିଲେ ଯେ କୌଣସି ଚପରାଶି ସାଙ୍ଗରେ ନ ଧରି ସେ ବୁଲି ବାହାରିଲେ । ଫାର୍ମର ଗୋଟାଏ ଗେଟ ଷ୍ଟେସନ ରାସ୍ତାପଟେ ଖୋଲାଯାଏ । ବଳଦ ଶଗଡ଼ ସେଇବାଟେ ବାହାରୁଥାଏ । ମୁଦିପଡ଼ା ରାସ୍ତାରେ ଯାଉଯାଉ ଦୃଷ୍ଟି ପଡ଼ିଗଲା ଫାର୍ମ ଆଡ଼େ । ସେଇ ରାସ୍ତାରେ ଯାଇ ଫାର୍ମ ଭିତରେ ପଶିଗଲେ । କେହି ଚିହ୍ନନ୍ତି ନାହିଁ, ଜାଣନ୍ତି ନାହିଁ । ଅଳିଆ କଚରା ଗଦା ଦେଖି ପଚାରି ବୁଝିଲେ ସେଇଠି କଂପୋଷ୍ଟ ହେଉଛି । ବିଲାତିସାର (ଫରଟିଲାଇଜର) ପ୍ରୟୋଗ ବେଶି ନଥାଏ । ଗୋବର ଖତ ସାଙ୍ଗକୁ କଂପୋଷ୍ଟ ସାର କିପରି ତିଆରି ଓ ପ୍ରୟୋଗ ହେବ ଏ ବିଷୟରେ ସରକାରୀ ନିର୍ଦ୍ଦେଶ ଅନେକ ଗୁଡ଼ିଏ ତାଙ୍କ ଦପ୍ତରରୁ ଜିଲ୍ଲାମାନଙ୍କୁ ଆସିଥାଏ । ରାଗ ଉଠିଲା ପଞ୍ଚମରେ । ଡକରା ହେଲା । ଫାର୍ମ ଓଭରସିଅରଙ୍କୁ । ସେ ନ ଥିଲେ । ଜଣେ ସବ ଓଭରସିଆର ଆସିଲେ । ସେ କେବେ ସକାଳ ୬ଟା ଆଗରୁ ଖାଦ୍ୟ କମିସନର ଫାର୍ମରେ ପଶିଥିବେ ଏହା କଳ୍ପନା କରି ନ ଥିଲେ । ତାଙ୍କୁ ଜଣେ ସାଧାରଣ ଲୋକ ଭାବି ସେ ଉପର ଠାଉରିଆ । ଦିପଦ ଉତ୍ତର ଦେଲେ । ଦୈବାତ୍ ଠିକ୍ ସେତିକିବେଳେ ମୋଦିପଡ଼ା ଆଡ଼େ କମିସନର ବୁଲିଯାଇଛନ୍ତି ଖବର ପାଇ କୃଷି ଉପନିର୍ଦ୍ଦେଶକ ଫାର୍ମରେ ପହଞ୍ଚି ସାକ୍ଷାତ କଲେ । ରାଗ ଆହୁରି

ବଢ଼ିଗଲା । "ଦୁର୍ଗାମାଧବ, କଂପୋଷ୍ଟ ପ୍ରସ୍ତୁତି ପ୍ରୟୋଗ ଉପରେ ଏତେ ଆଲୋଚନା ସମାଲୋଚନା ପରେ କଣ ତମେମାନେ ସୁଧୁରିବ ନାହିଁ । ଦେଖ ତମର ଫାର୍ମରେ କିପରି କଂପୋଷ୍ଟ ହେଉଛି । ମୁଁ ଭାବୁଛି ମୋର ସମସ୍ତ ଶ୍ରମ ଏ ଦିଗରେ ବୃଥା" । ଉପ-ନିର୍ଦ୍ଦେଶକ ବେଉରା ସାହେବ (ଦୁର୍ଗାମାଧବ) ବିଲାତ ଫେରନ୍ତା । ଓଡ଼ିଶାର ପ୍ରଥମ ଗେଜେଟେଡ୍ କୃଷି କର୍ମଚାରୀ । ନିଜର ପ୍ରତ୍ୟୁତପନ୍ନମତି ଦେଖାଇ ସେ ଶୁଣାଇଲେ । ଆପଣ ଅସମୟରେ ଫାର୍ମ ପରିଦର୍ଶନ କରିବେ କାହାକୁ ଜଣା ନ ଥିଲା । ତେଣୁ ଫାର୍ମର ଅନ୍ୟ ଗେଟ ବନ୍ଦ ଅଛି । ସେଇଠି କିପରି ବୈଜ୍ଞାନିକ ସମ୍ମତ ପ୍ରଣାଳୀରେ କଂପୋଷ୍ଟ ତିଆରି ହେବ ତାହା ଦେଖାଯାଇଛି । ଆମର ମଫସଲରୁ କୃଷି ସମିତି ସଭ୍ୟ ଓ ସୁପରିଟେଣ୍ଡ ଆସି ଏହା ଦେଖନ୍ତି । ସେମାନଙ୍କୁ ଭୁଲ ନ କରିବାକୁ ସେମାନେ ଅନୁସରଣ କରୁଥିବା ତ୍ରୁଟିପୂର୍ଣ୍ଣ ପଦ୍ଧତି ଆମେ ଏଠାରେ ରଖିଛୁ । ଆପଣ ଆର ଗେଟରେ ଗଲେ ଅନୁସୃତ ସମୁଚିତ ପଦ୍ଧତି ଦେଖିବେ । ରାଗ କମିଗଲା । ପ୍ରଶଂସା ମିଳିଲା ହଁ ଚାଷୀମାନଙ୍କୁ ଏପରି ଉଭୟଦିଗ Contrast ଦେଖାଇ ଶିକ୍ଷା ଦେବା ଠିକ୍ କଥା । ତେବେ ସେମାନେ ସହଜରେ ନିଜ ପଦ୍ଧତିରେ ଦୋଷ ଜାଣି ପାରିବେ ।

ଫାର୍ମ ବୁଲା ସରିଲା । ଫାର୍ମରେ ଭବିଷ୍ୟତ ପରିବର୍ତ୍ତନ ଉନ୍ନତି ନିମିତ୍ତ ନିର୍ଦ୍ଦେଶ ସେଇଠି ଶ୍ରୁତ ଲିଖନ ମାଧ୍ୟମରେ ଶୁଣାଇ ଦିଆଗଲା ।

ଆଉ ଏକ ସମୟର କଥା । ଗଡ଼ଜାତମାନ ଓଡ଼ିଶାରେ ମିଶିଲା । ଏହାର ମୁଖ୍ୟ ପ୍ରଶାସନିକ ପ୍ରଯୋଜକ ସେଇ ଥିଲେ । ଗଡ଼ଜାତ ମିଶିଲା ସମୟରେ ସେ ଏହାର ମୁଖ୍ୟ ପ୍ରଶାସକ ଓ ସ୍ପେଶାଲ କମିସନର ହୋଇଥିଲେ । ମିଶ୍ରଣ ଶାନ୍ତି ଶୃଙ୍ଖଳାର ସହିତ ହୋଇ ପାରିଲା । ଏଥି ନିମିତ୍ତ ତାଙ୍କର ଉଦାରତା ଓ ଉପଯୁକ୍ତ ପଦବୀ ନିମିତ୍ତ ଉପଯୁକ୍ତ କର୍ମଚାରୀ ନିର୍ବାଚନ ମୁଖ୍ୟତଃ ଦାୟୀ ଥିଲା । ଛବିଶ ଗଡ଼ଜାତର କିଏ ପ୍ରଶାସକ ହେବେ କେଉଁ ରାଜ୍ୟକୁ କିଏ ଯିବେ ଏହା କୌଣସି ମନ୍ତ୍ରୀଙ୍କ ମରଜୀ ବା ସୁପାରିଶ ଉପରେ ନ ଥିଲା । ବ୍ରଜସୁନ୍ଦର ମହାନ୍ତି ୧୯୪୭ ମସିହାରେ ସମ୍ବଲପୁରର ଡେପୁଟି କମିସନର । ତା ଆଗରୁ ସେ ରେଭିନ୍ୟୁ କମିସନରଙ୍କ ସେକ୍ରେଟେରୀ ଥିଲେ । ପ୍ରଶାସନର ସବୁ ଡେପୁଟି ସବଡେ଼ପୁଟି କଲେକ୍ଟରଙ୍କ ଦକ୍ଷତା ସହିତ ଦୁର୍ବଳତା ତାଙ୍କୁ ଭଲ ଜଣା । ସମ୍ବଲପୁରର ସରକିଟ ହାଉସରେ ଦୁଇ ଜଣ ବସି ପ୍ରତ୍ୟେକ ଗଡ଼ଜାତ ପାଇଁ ପ୍ରଶାସକ ନିର୍ବାଚନ ଏଇ ଦୁହେଁ କଲେ । ରାତାରାତି ବାର୍ତ୍ତା ଓୟାରଲେସ ଯୋଗେକଟକ ପଠଗଲା । ସେଠାରୁ ବିଜ୍ଞପ୍ତି ପ୍ରକାଶ କରାଗଲା ।

ଇଂରେଜ ଶାସନ ସମୟରେ ରାଜ୍ୟ କୋଟ ଅପ ୱାଡ଼ସ ହେଲେ ବା ରାଜ୍ୟରେ

ଦକ୍ଷ କର୍ମଚାରୀ ଅଭାବ ପଡ଼ିଲେ ସରକାର ସେ ରାଜ୍ୟକୁ ଜଣେ ଡେପୁଟି ବା ସବ୍‌ଡେପୁଟି କଲେକ୍ଟର ପଠାଉଥିଲେ । ପାଟଣା ରାଜ୍ୟ ପ୍ରଥମ ଶ୍ରେଣୀ ରାଜ୍ୟ । ତାର ଦେୱାନ ଭାବେ ବାଳମୁକୁନ୍ଦ ବହିଦାର ସମ୍ବଲପୁରର ଡେପୁଟି କଲେକ୍ଟର ଯାଇ ଥିଲେ । ନୟାଗଡ଼କୁ ଏକ ସମୟରେ ସମ୍ବଲପୁରରେ ଅଫିସ ସୁପରିଟେଣ୍ଡ ସତାର ଖାଁ ଓ ଅନେକ ବର୍ଷ ପରେ ସବଡେ଼ପୁଟି ସଚ୍ଚିଦାନନ୍ଦ ପୂଜାରୀ ଦେୱାନ ଭାବେ ଯାଇଥିଲେ । ଆଉ ଜଣେ ସବଡେ଼ପୁଟି ଭାରତଚନ୍ଦ୍ର ନାୟକ ପ୍ରଥମେ ସବ୍‌ମେନେଜର ଭାବେ ଢ଼େଙ୍କାନାଳ ଓ ପରେ ଦେୱାନ ଭାବେ ବଣେଇ ଯାଇଥିଲେ । ରାଜ୍ୟ ମିଶ୍ରଣ ପରେ ପ୍ରଶାସନିକ ଅଧିକାରୀମାନେ ଅନ୍ୟରାଜ୍ୟର ଦେୱାନମାନଙ୍କୁ ରାଜ୍ୟର ଗୁରୁତ୍ୱ ଦୃଷ୍ଟିରେ ଡେପୁଟି ବା ସବଡେ଼ପୁଟି ପାହିଆ ମାତ୍ର ଦେବାକୁ ଦାବି କଲେ । ସେମାନେ ମୋଗଲବନ୍ଦୀ ଅଞ୍ଚଳରେ ସବଡ଼ିଭିଜନ ଅଧିକାରୀ ପାହିଆ ପାଇବାକୁ ଅଭିଜ୍ଞତା ଦୃଷ୍ଟିରୁ ଅଯୋଗ୍ୟ ବୋଲି ଦାବି କଲେ । ରାଜାଙ୍କର ଅନୁଗତ ନିଷ୍ଠାପର ଦେଶୀୟ କର୍ମଚାରୀମାନେ ଏହାର ବିରୋଧ କଲେ । ଓଡ଼ିଶା ପ୍ରଶାସନିକ ସେବା ସଂଘର ଏକ ପ୍ରତିନିଧି ଦଳ ଏ ସଂକ୍ରାନ୍ତରେ ମୁଖ୍ୟ ପ୍ରଶାସକଙ୍କର ସହଯୋଗ ଲୋଡ଼ିଲେ । ସେ ଆଇସିଏସ୍ ଅଫିସର । ତେଣୁ ତାଙ୍କର ସହାନୁଭୂତି ନିଜ କର୍ମଚାରୀମାନଙ୍କ ପ୍ରତି ସ୍ୱତଃ ଆସିବ ବୋଲି ଧରାଗଲା । ସାକ୍ଷାତର ଦିନ ଠିକ୍ ହେଲା । ଆଗରୁ ସେ ବଡ଼ ବଡ଼ ରାଜ୍ୟର ମୁଖ୍ୟ କର୍ମଚାରୀଥିବା ଅଧିକାରୀମାନଙ୍କ ବକ୍ତବ୍ୟ ଶୁଣିଥାନ୍ତି । ଓଡ଼ିଶା ସିଭିଲ ସର୍ଭିସ୍ ପ୍ରତିନିଧି ଦଳର ଦାବି ଶୁଣି ସେ ନିଷ୍ପତ୍ତି ଦେଲେ "ସେମାନେ ପ୍ରଥମ ଶ୍ରେଣୀର ଭୃତ୍ୟ । ତମେମାନେ ତୃତୀୟ ଶ୍ରେଣୀର ଖାଉନ୍ଦ (ହାକିମ) । ନିଯୁକ୍ତି ଦାତା ଭାବରେ ମୁଁ ଗୋଟିଏ ସର୍ବାଙ୍ଗ ସୁନ୍ଦର ଭୃତ୍ୟକୁ ମୋର ଦାୟିତ୍ୱ ଅର୍ପଣ କରିବା ଅଧିକ ସମୀଚିନ ମନେ କରିବି । ଦାବି ସେଇଠି ଛିଣ୍ଡିଲା । ତାଙ୍କର ସେଇ ନିଷ୍ପତ୍ତି ଓ ଅନୁଗ୍ରହରୁ କି ହଜୁର ଖଇର ଖାଁମାନେ ଗଡ଼ଜାତର ଅଭିଜ୍ଞତାରେ ସ୍ଥିତିସ୍ଥାପକତା ଦେଖାଇ ଉଚ୍ଚଶାସନ ପଦବୀ ଅଧିକାର କଲେ । କିଲଟରି, ଅମଲା, ଦସ୍ତୁରି ଚପରାସୀଙ୍କଠାରୁ ସଚିବାଳୟରେ ଉପଶାସନ ସଚିବ ପର୍ଯ୍ୟନ୍ତ ତାଙ୍କ ସହିତ କାର୍ଯ୍ୟ କରୁଥିବା ସମସ୍ତେ ଏଇ ଅତଂଛା ପାଞ୍ଚଣକୁ ସବୁକାଳେ ସ୍ମରଣ ରଖିଥିଲେ ।



# ସେ ପୁଣି କ୍ଷମା ଆଚରଇ

୧୯୩୬ ମସିହାରେ ଓଡ଼ିଶା ପ୍ରଦେଶ ଗଠନ ହେଲା ଏହାର ଦ୍ୱିତୀୟ ରାଜ୍ୟପାଳ ଥିଲେ ସାର ଉଇଲିୟମ କଥର୍ଣ୍ଣ ଲୁଇସ । କେମ୍ବ୍ରିଜରୁ ଏମ.ଏ ପାସକରି ଆଇସିଏସ୍ ନିଯୁକ୍ତି ପାଇ ସେ ୧୯୧୨ ମସିହାରେ ଭାରତବର୍ଷରେ ବିହାର ଓଡ଼ିଶାରେ ଯୋଗଦାନ କଲେ । ସମ୍ବଲପୁରର ସେ ଜଣେ ଲୋକପ୍ରିୟ ଜିଲ୍ଲାପାଳ ଥିଲେ । ସେତେବେଳେ ଡି.ସି.ଙ୍କ ଅଫିସର ସୁପରିଟେଣ୍ଡ ଥିଲେ ଟାଉନର ଆଶାପାଲ୍ଲି (ଖ୍ରୀଷ୍ଟିଆନ ପଡ଼ା) ର ପ୍ରଫୁଲ କୁମାର ଦାସ । ସେ ଜିଲ୍ଲା ଅଫିସର ସୁପରିଟେଣ୍ଡ । ଖାଲି ଅମଲାମାନଙ୍କର ମୁଖ୍ୟ ନ ଥିଲେ ଜିଲ୍ଲାର ସାମୁହିକ ସାମାଜିକ ଓ ଲୋକ ସେବା କାର୍ଯ୍ୟରେ ତାଙ୍କର ଭୂମିକା ଥିଲା । ପ୍ରଫୁଲ କୁମାର ଦାସ ସେଠାରୁ ପ୍ରମୋସନ ପାଇ ସବ-ଡେପୁଟି ହୋଇ ଗଲେ । ଓଡ଼ିଶା ପ୍ରଦେଶ ଗଠନ ଉତ୍ତାରେ ସେ ରାଜ୍ୟର ସ୍ୱାସ୍ଥ୍ୟ ସେବା ନିର୍ଦ୍ଦେଶକ ଓ ଜେଲ ବିଭାଗର ଆଇଜିଙ୍କ ବ୍ୟକ୍ତିଗତ ସଚିବ ଭାବେ ଦକ୍ଷତା ସହିତର କାର୍ଯ୍ୟ କରି ଅବସର ନେଲେ । ୧୯୪୭ରେ ପ୍ରଫୁଲ କୁମାର ଦାସ ନିଜ ଘରେ ଅବସର ସମୟ କଟାଉଥାନ୍ତି । ଲୁଇସ ସାହେବଙ୍କର କାଗଜପତ୍ର ମାହାଫିଜଖାନା (ରେକର୍ଡ଼ ରୁମ)ରେ କୌତୁହଳ ବଶତଃ ଦେଖିଲେ ଜଣାପଡୁଥିଲା ପ୍ରାୟ ସବୁ ଚିଠାର ଉତ୍ତର ସେ ଚିଠିର ପଛପଟେ ଲେଖିଦେଇ ସେଇ ଅନୁସାରେ ଉତ୍ତର ଯିବାକୁ ସୁପରିଟେଣ୍ଡଙ୍କୁ ନିର୍ଦ୍ଦେଶ ଦେଉଥିଲେ । ଲେଖା ଜବାବରେ ରାଜସ୍ୱ ପରିଷଦ ଚିଠିର ନମ୍ବର ମଧ୍ୟ ସେ ନିଜ ମନରୁ ଲେଖିଦେଇଥାଆନ୍ତି । ଏହା ଅସଂଭବ ଜଣାଗଲା ମାତ୍ର ପ୍ରଫୁଲ ବାବୁ ବୁଝାଇଦେଲେ ୨୫/୩୦ ବରଷ ତଳେ ବରଷକୁ ଡି.ସି. ଅଫିସକୁ ସରକାର ଓ ବୋର୍ଡ଼ ଅଫ ରେଭିନ୍ୟୁ (ରାଜସ୍ୱ ପରିଷଦ)ରୁ ଡଜନରୁ ଅଧିକ ଚିଠି ଆସୁ ନ ଥିଲା । ତେଣୁ ଏ ଚିଠିର ନମ୍ବର ମନେ ରଖିବାରେ କିଛି ଆସାଧାରଣତା ନ ଥିଲା ତଥାପି ଲୁଇସ ସାହେବଙ୍କର ଅସାଧାରଣ ସ୍ମୃତିଶକ୍ତିର ସେ ପ୍ରଶଂସକ ଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠ ଦିବସରେ ସେ ନିଜର ମାତ୍ର ୬/୭ ପୃଷ୍ଠାର କୁଳପତିଙ୍କ ଲିଖିତ ମୁଦ୍ରିତ ଅଭିଭାଷଣ ଉପସ୍ଥିତ ସମସ୍ତ ବିଶ୍ୱବିଦ୍ୟାଳୟର କୁଳପତି ଓ ଭାରତ ତଥା

ଓଡ଼ିଶାର ବିଶିଷ୍ଟ ବ୍ୟକ୍ତିମାନଙ୍କୁ ବଣ୍ଟା ଯିବା ପରେ ଏହାକୁ ଦୃଷ୍ଟି ନ ଦେଇ ମନରୁ ଅବିକଳ ଭାବେ ସେ ଏହା ପ୍ରକାଶ କରି ଥିଲେ । ଜାତୀୟ ଖବର କାଗଜମାନେ ତାଙ୍କର ଅସାଧାରଣ ସ୍ମୃତିଶକ୍ତିର ତାରିଫ କରି ପ୍ରବନ୍ଧ ଲେଖିଥିଲେ । କୁହାଯାଏ ଲୁଇସ ସ୍ଥାନୀୟ କଥିତ ଭାଷା ଆୟତ୍ତକରି ସେଥିରେ ଗସ୍ତ ସମୟରେ ଲୋକମାନଙ୍କୁ ସଂଭାଷଣ କରୁଥିଲେ । ସେତେବେଳେ ଅବହେଳିତ ହସ୍ତମୁଦିମାହାଲ ସମ୍ବଲପୁର ଜିଲ୍ଲାର ଉନ୍ନତି କଳ୍ପେ ସେ ସର୍ବଦା ଯତ୍ନଶୀଳ ଥିଲେ । ଓଡ଼ିଶାର ରାଜ୍ୟପାଳ ହେବା ପରେ ହୀରାକୁଦ ବନ୍ଧ ନିର୍ମାଣ ସମ୍ବଲପୁର ଟାଉନରେ କଲେଜ ପ୍ରତିଷ୍ଠା, ଗୋଟିଏ ମେଡ଼ିକାଲ ସ୍କୁଲ ସ୍ଥାପନ ଓ ତାଳଚେର ରେଲ ଲାଇନ ସହିତ ସମ୍ବଲପୁରର ଯୋଗଯୋଗ ତାଙ୍କର ସର୍ବାଗ୍ର କାର୍ଯ୍ୟକ୍ରମ ଥିଲା । ଏଥିରୁ ହୀରାକୁଦ ବନ୍ଧର ଶୁଭ ଦିଆଗଲା । କଲେଜ ପ୍ରତିଷ୍ଠା ହେଲାପରେ ସେ ଅବସର ନେଲେ । ପରବର୍ତ୍ତୀତ ପରିସ୍ଥିତିରେ ରେଳଲାଇନ ସଂଯୋଗ ଉଦ୍ୟମ ସ୍ଥାନୀୟ ନେତୃସ୍ଥାନୀୟ ବ୍ୟକ୍ତିମାନେ ତତ୍‌କାଳୀନ ଅସ୍ଥାୟୀ ସରକାରର ରେଳମନ୍ତ୍ରୀ ସୁଭାଷ ବୋଷଙ୍କ ଭାଇ ଶରତ ଚନ୍ଦ୍ର ବୋଷଙ୍କୁ ପ୍ରଭାବିତ କରି ଆରମ୍ଭ କଲା ବେଳକୁ ରାଜନୈତିକ ଘଟ ପରିବର୍ତ୍ତନ ବାଧା ସୃଷ୍ଟି କଲା । ଜିଲ୍ଲାର ବହୁ ପ୍ରତିଷ୍ଠିତ ବ୍ୟକ୍ତି ଶରତ ବୋଷଙ୍କର ସହପାଠୀ ବା ବିଶ୍ୱବିଦ୍ୟାଳୟରେ ବନ୍ଧୁ ଥିଲେ । ସରକାର ମେଡ଼ିକାଲ ସ୍କୁଲ ପ୍ରତିଷ୍ଠା ନ କରି କେବଳ ଡିଗ୍ରିଧାରୀ ଡାକ୍ତରଙ୍କୁ ଶିକ୍ଷାଦେବାକୁ କଲେଜ ବ୍ୟବସ୍ଥା କରିବାରୁ ଏହା ମଧ୍ୟ ଅଚଳ ହୋଇଗଲା । ତଥାପି ସେ ଯେ ଜିଲ୍ଲାର ଜଣେ ହିତୈଷୀ ଶାସକ ଥିଲେ ଏହା ସର୍ବଜନ ସ୍ୱୀକୃତ । ବିହାର ଓଡ଼ିଶାରୁ ସେ ଭାରତ ସରକାରଙ୍କ ଅଧିନକୁ ଯାଇ ସେଠାରେ ଭାରତରେ ଶାସନ ସଂସ୍କାର ନିମିତ୍ତ ଗଠିତ ବିଭାଗର ଯୁଗ୍ମସଚିବ ହେଲେ । ପ୍ରଥମ ଗୋଲଟେବୁଲ ବୈଠକକୁ ଯିବା ଭାରତୀୟ ପ୍ରତିନିଧି ଦଳର ସେ ଜଣେ ସଚିବ ଥିଲେ । ପାରଳା ମହାରାଜ ଏହ ଦଳର ଜଣେ ସଭ୍ୟ ଥାଇ ଓଡ଼ିଶାର ଯୁକ୍ତିଯୁକ୍ତ ଦାବି ଉପସ୍ଥାପିତ କରିବାରେ ତାଙ୍କର ସାହାଯ୍ୟ ଓ ସହଯୋଗ ପାଇଥିଲେ । ତାଙ୍କର ଅମଳରେ ଓଡ଼ିଶାରେ ପାରଳାଖେମୁଣ୍ଡି ମିଳିତ ମନ୍ତ୍ରୀମଣ୍ଡଳ ଗଠନ ଫଳରେ ସମ୍ବଲପୁରରେ ଦ୍ୱିତୀୟ ଗ୍ରେଡ୍ କଲେଜ ପ୍ରଥମେ ପ୍ରତିଷ୍ଠା ହେଲା ।

ଲୁଇସଙ୍କର ସ୍ମୃତିଶକ୍ତି ପ୍ରଖର । କାର୍ଯ୍ୟ ଦକ୍ଷତା ଅତୁଳନୀୟ । ଭାରତ ଶାସନ ଆଇନ ୧୯୩୫ ରେ ମନ୍ତ୍ରୀମାନଙ୍କର କ୍ଷମତା ସୀମିତ ଥାଏ । ବହୁତ ଫାଇଲ ରାଜ୍ୟପାଳଙ୍କ ପାଖକୁ ଯାଏ । ସେ ପ୍ରସ୍ତାବ ଗ୍ରହଣ କରିବାକୁ ବା ସେମାନଙ୍କର ସୂଚିତ ମତାମତ ମାନି ନେବାକୁ ଆଇନତଃ ବାଧ୍ୟ ନ ଥିଲେ । ତଥାପି ଲୁଇସ କୌଣସି ଫାଇଲ ଦିନେ ୨ଦିନରୁ ଅଧିକ ରଖି ନ ଥାନ୍ତି । ମାତ୍ର ଥରେ ଏହାର ବ୍ୟତିକ୍ରମ ସଚିବାଳୟରେ ଚହଳ ପକାଇଦେଲା । ସପ୍ତାହାଧିକ କାଳ ସେ ଫାଇଲଟିକୁ ଫେରାଉନାହାନ୍ତି । ତାଙ୍କ ବ୍ୟକ୍ତିଗତ

ସଚିବ ମଧ୍ୟ ଦୀର୍ଘଦିନ ଏହା ପଡ଼ି ରହିବାର କୌଣସି ଯୌକ୍ତିକତା ଦେଖୁ ନ ଥାନ୍ତି । ଏହାର ବିଷୟବସ୍ତୁ ଥିଲା ସାଧାରଣ କଥା । ଥରେ ଜଣେ ପୂର୍ତ୍ତବିଭାଗର ଇଂଜିନିଅର ବେଙ୍ଗଲ ନାଗପୁର ରେଲୱେ ଯୋଗେ ଭ୍ରମଣ କରୁଥିଲେ । ତାଙ୍କର ପ୍ରଥମ ଶ୍ରେଣୀ ଟିକେଟ ଥିଲା । ସେ ଓହ୍ଲେଇବା ପରେ ସେଇ ପ୍ରଥମ ଶ୍ରେଣୀ ଡବାର ଗୋଟିଏ ଦର୍ପଣ ନ ଥିବାର ଦେଖାଗଲା । ରେଳବାଇ ପୁଲିଶରେ ଖବର ଦିଆଗଲା । ଏହା ଏକ ବୃହତକାୟ ଦର୍ପଣ । BNR ଲେଖାଥାଏ । ଭୁଲରେ କେହି ନେଇ ଯିବାର ସଂଭାବନା ନ ଥିଲା । ରେଲଯାତ୍ରୀ ୨/୩ ଜଣଙ୍କୁ ପଚରାଯାଇ ସେମାନଙ୍କର ଘର ତଲାସ କରାଗଲା । ଇଂଜିନିଅରଙ୍କ ଘରୁ ଏହି BNR ମାର୍କାଥିବା ଚୋରି ଦର୍ପଣ ଉଦ୍ଧାର କରାଗଲା । ସରକାର ଅବଗତ ହେଲେ । ଏ ପ୍ରକାର ଗର୍ହିତ ଆଚରଣ ଲୋକମୁଖରେ ବିଶେଷ ପ୍ରଚାରିତ ହେବାର ସୁଯୋଗ ମିଳିଥାନ୍ତା ଯଦି କଚେରିରେ ତାଙ୍କ ନାମରେ ଚୋରାମାଲ ରଖିଥିବାରୁ ଭାରତୀୟ ଦଣ୍ଡବିଧି ଆଇନର ୪୧୧ ଦଫା ଅନୁସାରେ ଚାର୍ଜସିଟ ଦାଖଲ ହୋଇଥାନ୍ତା । ଏହା ସରକାରୀ କର୍ମଚାରୀମାନଙ୍କୁ ଗୋଷ୍ଠୀଗତ ନିନ୍ଦା ଆଣିଥାନ୍ତା ଓ ସେମାନଙ୍କର ମନୋବଳ ଭାଙ୍ଗି ଦେଇଥାନ୍ତା । ଏହି ବିବେଚନାରେ ସରକାର ତାଙ୍କ ବିରୁଦ୍ଧରେ ବିଭାଗୀୟ କାର୍ଯ୍ୟାନୁଷ୍ଠାନ ନିମିତ୍ତ ନିଷ୍ପତ୍ତି ନେଲେ । ବିଧିବଦ୍ଧ ଇନ୍‌କୁଆରୀ ପରେ ତାଙ୍କୁ ଚାକିରିରୁ ଚିରକାଳ ପାଇଁ ତଡ଼ିଦେବାର ନିଷ୍ପତ୍ତି ଆଦେଶ ହେଲା । ରାଜ୍ୟପାଳ ମଞ୍ଜୁରି ନ ଦେଲେ ଏ ପ୍ରକାର ଦଣ୍ଡ ବିଧାନ ସମୀଚିନ ନୁହେଁ । ରାଜ୍ୟପାଳ ଖାଲି ନିଜର ଦସ୍ତଖତଟିଏ ଦେବା କଥା । ମାତ୍ର ଆଠ ଦଶ ଦିନ ପରେ ଲୁଇସ୍ ଉକ୍ତ କର୍ମଚାରୀଙ୍କର ଶିକ୍ଷାଗତ ଯୋଗ୍ୟତା, ଚାକିରିରେ ପ୍ରବେଶ, ବିଭିନ୍ନ ସ୍ଥାନରେ କାର୍ଯ୍ୟ, ବିଭାଗୀୟ କୌଶଳ ଓ ଦକ୍ଷତା, ଗୁପ୍ତ ଚରିତ୍ର ପଞ୍ଜିକା ସବୁ ପ୍ରକାର ତଥ୍ୟ ମାଗି ବସିଲେ । (History of Service) । ଏହା ଯୋଗାଇ ଦିଆଗଲା । ତନ୍ନ ତନ୍ନ କରି ଅନୁଧ୍ୟାନ କରି ରାଜ୍ୟପାଳ ଫାଇଲ ଫେରାଇ ଦେଲେ । ଆଦେଶ ଦେଲେ "ଗଭୀର ଅନୁଧ୍ୟାନ ପରେ ମୋର ହୃଦବୋଧ ହୋଇଛି ଯେ ଏହି ଇଂଜିନିଅର ଜଣକ ବିଶ୍ୱବିଦ୍ୟାଳୟର ଜଣେ କୃତୀ ଛାତ୍ର । ତାଙ୍କର ବୈଷୟିକ ଦକ୍ଷତା ସବୁ ସ୍ତରରେ ସ୍ୱୀକୃତ । ମୋତେ ଦୁଃଖର ସହିତ ଲକ୍ଷ୍ୟ କରିବାକୁ ପଡୁଛି ଯେ ଦାରିଙ୍ଗବାଡ଼ିରେ କାର୍ଯ୍ୟ ଆରମ୍ଭ କରିଥିବା ଏହି ସହକାରୀ ଇଂଜିନିଅରଙ୍କ କପାଳରେ ଫୁଲବାଣୀ, ସୋରଡ଼ା, ବାଲିଗୁଡ଼ା ପରି ରାଜ୍ୟର ଯେତେ ଗୁଡ଼ିଏ ଅସ୍ୱାସ୍ଥ୍ୟକର ପାଣ୍ଡବ ବର୍ଜିତ ସ୍ଥାନ ଅଛି ସେଇଗୁଡ଼ିକ ମିଳିଛି । ନିଜ ପରିବାର ସହିତ ରହିବାର ସୁଯୋଗ ତାଙ୍କୁ ମିଳି ନାହିଁ । ପିଲାଛୁଆଙ୍କର ପାଠପଢ଼ାର ଯତ୍ନ ନେବା ଅଭାବରେ ସେ ମାନସିକ ଦୁଃଶ୍ଚିନ୍ତାଗ୍ରସ୍ତ ହେବା ସ୍ୱାଭାବିକ । ଯୁଦ୍ଧ ପରିସ୍ଥିତି ଯୋଗୁ ସେ ଛୁଟିରେ ଯିବାକୁ ଇଚ୍ଛା ପ୍ରକାଶ କରିଥିଲେ ମଧ୍ୟ ଅବସର ସୁଯୋଗ ପାଇ ପାରି ନାହାନ୍ତି । ସାମାଜିକ ପରିବେଶରୁ ଦୂରରେ ରହି ମନୋବିଜ୍ଞାନର Kleptomaniac Tendency ଛୋଟ ଛୋଟ ଚୋରି

କରିବାର ପ୍ରବୃତ୍ତି ତାଙ୍କର ପ୍ରବଳ ହେବା ସ୍ୱାଭାବିକ । ସେ ସମାଜ ଉପରେ କ୍ରୁଦ୍ଧ କାରଣ ଏହା ତାଙ୍କୁ ନିଜର ଉଚିତ ପ୍ରାପ୍ୟ ନ୍ୟାୟ ଓ ସମ୍ମାନ ଦେବାରେ ହେଳା କରିଛି । ମୁଁ ତାଙ୍କ ଚିନ୍ତାଧାରା ସହିତ ଏକମତ ହେଉଛି । ଏହି ପରିସ୍ଥିତିରେ ମୋର ଆଦେଶ ହେଲା ।

(୧) ତାଙ୍କୁ ବିଭାଗୀୟ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନରୁ ମୁକ୍ତ କରାଯାଉ । ସେ ଯଥେଷ୍ଟ ମାନସିକ ଅଶାନ୍ତି ଭୋଗି ସାରିଲେଣି ।

(୨) ଯୁଦ୍ଧ ସରି ଆସୁଅଛି । କାମର ଚାପ କମିଛି । ତାଙ୍କୁ ଛୁଟିରେ ଯିବାକୁ ଅନୁମତି ଦିଆଯାଉ । ଭାରତର ଯେ କୌଣସି ଗ୍ରୀଷ୍ମ ନିବାସରେ ସେ ଛୁଟି କଟାଇବାକୁ ଚାହିଁବେ ସେଠାକୁ ଯିବାକୁ ତାଙ୍କୁ ଗସ୍ତ ଖର୍ଚ୍ଚ ମିଳୁ ।

(୩) ଛୁଟିରେ ଫେରିବା ପରେ ତାଙ୍କ ମନୋନୀତ ଷ୍ଟେସନରେ ତାଙ୍କ ପଦରେ ତାଙ୍କୁ ଉପସ୍ଥାପିତ କରାଯାଉ । ମୋର ବିଶ୍ୱାସ ଏହି ରାଜ୍ୟରେ ଏହିପରି ଅନ୍ୟ କେହି ଅବହେଳିତ କର୍ମଚାରୀ ନାହାନ୍ତି । ଯଦି ଅଛନ୍ତି ସେମାନଙ୍କୁ ଉଚିତ୍ ନ୍ୟାୟ ପ୍ରଦାନ କରାଯାଉ ।"

ଫାଇଲ ଫେରିଲା । ଇଂଜିନିଅର ଛୁଟିରେ ଗଲେ । ଫେରି ନିଜ ଇଚ୍ଛା ଅନୁସାରେ ପଦ ନିଯୁକ୍ତି ପାଇଲେ । କାର୍ଯ୍ୟକାଳ ଶେଷରେ ବିଭାଗର ସର୍ବୋଚ୍ଚ ସ୍ଥାନରୁ ଅବସର ନେଲେ । ଓଡ଼ିଶା ସଚିବାଳୟର ପୁରୁଣା ଛପା ଫାଇଲରେ ଏହା ଦେଖିବାକୁ ମିଳିପାରେ ।

ଇଂରେଜ ନ୍ୟାୟ ବିଚାରଣର ଏକ ଦୃଷ୍ଟାନ୍ତ । ଦେଶି ସର୍ବୋଚ୍ଚ ରାଜନୈତିକ ପ୍ରଶାସନିକ କର୍ମକର୍ତ୍ତାମାନେ ଏମିତି ଚିନ୍ତାଧାରା ଗ୍ରହଣ କରିବେ କି ?



# ଶିଖିନାହିଁ ଚିହ୍ନିବାକୁ ପର ମନ

ସମ୍ବଲପୁରର ପୁରୁଣା ଡେପୁଟି କମିସନର ଅଫିସ । ଏହା ଏକ ଐତିହାସିକ କୋଠା । ମଧ୍ୟ ପ୍ରଦେଶରୁ ଜିଲ୍ଲା ଆସିଲାବେଳେ ଅଫିସ୍ ଏଇଠି ଥିଲା । ଠିକ୍ ମହାନଦୀ କୂଳକୁ ଲାଗି ଗୋଟିଏ ବଡ଼ ଇଜଲାସ୍ । ଲାଲ୍‌କୋଠା ତିଆରି ହେବା ଆଗରୁ ସେଇଠି ଡେପୁଟି କମିସନର ବସୁଥିଲେ । ଅନେକ ନାମଜାଦା ଆଇସିଏସ୍ ଡି.ସି. ଏଇଠି ବସିଛନ୍ତି । ସେଇ ଅଦାଲତରେ ବସି ଜିଲ୍ଲାପାଳ ଲୁଇସ ଥରେ ଚୁରୁଟ ଖାଇବାରୁ ଦେଶ ଗୌରବ ଚନ୍ଦ୍ର ଶେଖର ବେହେରା ଜଣେ ଲୋକଠାରୁ ଗୋଟାଏ ପିକା ଓ ଝକମକି ପଥର ମାଗି ଆଣି ପିକା ଲଗାଇ ତାଙ୍କ ମୁହଁକୁ ଚାହିଁଥିଲେ । ସାହେବ ଲଜ୍ଜିତ ହୋଇ ନିଜ ଭୁଲ ମାନି ସିଗାରକୁ ଫୋପାଡ଼ିଦେଲେ । "ତମେ ପ୍ରକୃତରେ ମହାନ" ବୋଲି ଓକିଲ ଚନ୍ଦ୍ର ଶେଖରଙ୍କୁ କହିଲେ । ୧୯୪୭/୪୮ ବେଳକୁ ସେଠାରେ ସଦର ଏସଡ଼ିଓ ଉପଜିଲ୍ଲାପାଳ ବସୁଥାନ୍ତି । ସବୁ ହାକିମଙ୍କର ବେଶିଭାଗ କାମ ମକଦ୍ଦମା ବିଚାର । ତାହା ଦୈନିକ ଏସଡ଼ିଓଙ୍କ ପାଖରୁ କାମ ଦେଖି ବଣ୍ଟା ଯାଇଥାଏ । ଦଶଟାରୁ ଚାରିଟା ଅଫିସ । କୋର୍ଟରେ ହାକିମମାନେ ଏଗାରଟାରେ ବସନ୍ତି । ପକ୍ଷମାନେ ହଜିରା ଦେବେ ଓ ଓକିଲମାନେ ସଜବାଜ ହେବେ । ନଥିପତ୍ର ବାହାରିବ । ଏହା ସମୟସାପେକ୍ଷ । ଏମିତି ଏକ ଶୀତ ସକାଳରେ ଏସଡ଼ିଓଙ୍କ ଇଜଲାସରେ ୪/୫ ଜଣ ହାକିମ ଡେପୁଟି ସବ୍‌ଡେ଼ପୁଟି ମାଜିଷ୍ଟ୍ରେଟ୍ ବସିଛନ୍ତି । ନାନା ପ୍ରକାର ଗପ ଚାଲିଛି । ସମୟ ଏଗାରଟା ଗତ ହୋଇ ୧୫/୨୦ ମିନିଟ ହୋଇପାରେ । ସାକ୍ଷୀ ଗଡ଼ାରେ ହଠାତ୍ ଦେଖାଦେଲେ ଜଣେ ବ୍ୟକ୍ତି ଖାକି ଅଧା ପ୍ୟାଣ୍ଟ ଧଳା ଅଧା ସାର୍ଟ ପିନ୍ଧିଛନ୍ତି । ଗୋଟାଏ ଶୋଲଟୋପି ହାତରେ ଧରିଛନ୍ତି । ମାନ୍ୟବର ଅଦାଲତଙ୍କୁ ମୁଣ୍ଡଭାଙ୍ଗି ମର୍ଯ୍ୟାଦା ଜଣାଇ କହି ବସିଲେ 'ହଜୁର (Your Honour) ମୁଁ ବ୍ରଜ ସୁନ୍ଦର ମହାନ୍ତି ଡ଼ିସିଓ ଜିଲ୍ଲା ମାଜିଷ୍ଟ୍ରେଟ । ମୋର ଅମୁକ ନମ୍ବର କେଶ୍‌ରେ ସାକ୍ଷ୍ୟ ନେବାକୁ ସମନ ଯାଇଛି । ମୋର ଆଜି ଟୁରରେ ଯିବାର କଥା । ମୋର ଅନୁରୋଧ ମାନ୍ୟବର ଅଦାଲତ ମୋର ସାକ୍ଷ୍ୟ ଗ୍ରହଣ କରି ମତେ ଯିବାକୁ ଅନୁମତି ଦିଅନ୍ତୁ ।" ବୁଲା

କୁକୁରକୁ ଚାବୁକମାତ୍ ଦେବାପରି ହାକିମମାନେ ଯେ ଯୁଆଡ଼େ ଛୁ । ଏସବୁ ଦ୍ୱାରା ମଗାଇଲେ । ପକ୍ଷ ଡକରା ହେଲା । ସାକ୍ଷ୍ୟ ନିଆଗଲା । ଆଗରୁ ୧୪୪ ଧାରାର ଆଦେଶ ଅମାନ୍ୟ କଲେ ୧୮୮ ଧାରା (ଭାରତୀୟ ଦଣ୍ଡବିଧି ଆଇନ) ଅନୁସାରେ ଅପରାଧ ପୁଲିଶ ଧର୍ତ୍ତବ୍ୟ ନ ଥିଲା । ହୀରାକୁଦ ଆନ୍ଦୋଳନ ସମୟରେ ସରକାର ଏହାକୁ ଧର୍ତ୍ତବ୍ୟ ଅପରାଧ ଘୋଷଣା କଲେ । ବୋଧହୁଏ ଜିଲ୍ଲା ମାଜିଷ୍ଟ୍ରେଟଙ୍କ ସାକ୍ଷ୍ୟ ସେହି ସଂକ୍ରାନ୍ତରେ ଥିଲା । ସେ ସାକ୍ଷ୍ୟ ଦେଲେ । ବାହୁଡ଼ି ଗଲେ ମାତ୍ର ନିଜର ଅଧସ୍ତନ ସବୁ ହାକିମିମାନଙ୍କ ଶିକ୍ଷା ଦେଇଗଲେ ସମୟାନୁବର୍ତ୍ତିତା ଓ କର୍ତ୍ତବ୍ୟନିଷ୍ଠା । ଇଜଲାସରେ ବସି ତୁଚ୍ଛା ଗପ କରିବା ଏହା ପରେ ଜିଲ୍ଲାତମାମ ବନ୍ଦ ହୋଇଗଲା ।

ସେ ଥିଲେ ବ୍ରଜସୁନ୍ଦର ମହାନ୍ତି । ୧୯୦୨ ମସିହାରେ ଜନ୍ମ । ପିତା ଇନ୍ଦ୍ରମଣି ମହାନ୍ତି କନିକାର ଦେଓ୍ୱାନ ଥିଲେ । ସାନଭାଇ ମୁରଲିଧର ବାରିଷ୍ଟର ଥାଇ ପାଟଣାରେ ହାଇକୋର୍ଟରେ ପ୍ରାକ୍‌ଟିସ୍ କରୁଥିଲେ । ଏମ.ଏ ପାସ କରି ବ୍ରଜସୁନ୍ଦର ୧୯୨୫ ମସିହାରେ ଡେପୁଟି କଲେକ୍ଟର ହେଲେ । ୧୯୪୮ ମସିହାରେ ଆଇଏଏସ୍ ପଦବୀ ସୃଷ୍ଟି ହେବାରୁ ତାଙ୍କୁ ଏହା ମିଳିଲା । ଢେଙ୍କାନାଳ, ସମ୍ବଲପୁର, ବଲାଙ୍ଗିର ଜିଲ୍ଲାରେ ରାଜ୍ୟ ମିଶ୍ରଣ ପରେ ସେ ଦକ୍ଷତାର ସହିତ କାର୍ଯ୍ୟ କରିଥିଲେ । କମିସନର ପଦରୁ ଅବସର ନେଲେ । ଓଡ଼ିଶା ସରକାର ନିଜର ନୂଆ ଅଫିସରମାନଙ୍କୁ ତାଲିମ ଦେବାପାଇଁ ହୀରାକୁଦରେ ଏକ ପ୍ରଶାସନିକ ଶିକ୍ଷା କେନ୍ଦ୍ର ପ୍ରତିଷ୍ଠା କଲାପରେ ତାଙ୍କୁ ଏହାର ପ୍ରଥମ ଅଧ୍ୟକ୍ଷଭାବେ ମନୋନୀତ କରିଥିଲେ । 'ଆପନି ଆଚରି ଧର୍ମ ଅପରର ଶିଖାଏ' ଏହା ଥିଲା ବ୍ରଜସୁନ୍ଦରଙ୍କ ନୀତି । ଯାହା ସେ ନିଜ ଆଚରଣରେ ଦେଖାଉଥିଲେ ନିଜ ଅଧସ୍ତନ କର୍ମଚାରୀମାନଙ୍କୁ ତାହା ସେ ଆଦର୍ଶ ଦେଖାଉଥିଲେ । ସେମାନେ ତାହା ଯୁକ୍ତିଯୁକ୍ତ ଭାବରେ ଗ୍ରହଣ କରି କାର୍ଯ୍ୟକାରୀ କରୁଥିଲେ ।

ଯୁଦ୍ଧ ପରେ ଓଡ଼ିଶା ବିଧାନ ସଭାର ନିର୍ବାଚନ ୧୯୪୬ ମସିହାରେ ହେଲା । ୧୯୩୫ ମସିହା ଭାରତ ଶାସନ ଆଇନ ଅନୁସାରେ ଓଡ଼ିଶା ବିଧାନ ସଭାରେ ଶ୍ରମିକମାନଙ୍କ ନିମିତ୍ତ ଗୋଟିଏ ସ୍ଥାନ ସଂରକ୍ଷିତ ଥାଏ । ଓଡ଼ିଶାର ଶିଳ୍ପ ମଧ୍ୟରେ ବ୍ରଜରାଜନଗର କାଗଜ କଳ, ବାରଙ୍ଗର କାଚକାରଖାନା ପ୍ରଧାନ । ବିଡ଼ି ଶ୍ରମିକ, ମାଲଗୋଦାମର ମଜୁରିଆ ଓ କାରଖାନାର ଶ୍ରମିକମାନେ ଭୋଟ ଦେଇ ଶ୍ରମିକ ପ୍ରତିନିଧି ବାଛନ୍ତି । ସେ ବର୍ଷ ଶ୍ରମିକ ପ୍ରତିନିଧି ଭାବେ ବୈଦ୍ୟନାଥ ରଥ ନିର୍ବାଚିତ ହେଲେ । ସେ କମ୍ୟୁନିଷ୍ଟ ଦଳର । ଯୁଦ୍ଧ ସମୟରେ ଜାତୀୟତାବାଦୀ ଦଳମାନେ ସରକାରଙ୍କ ସହିତ ଅସହଯୋଗ କରିଥିବାବେଳେ ସେମାନେ ଏ ଯୁଦ୍ଧ ଆମର ବୋଲି ଦାବି କରୁଥିଲେ । ସେମାନଙ୍କର ସର୍ବଭାରତୀୟ ଅନୁଷ୍ଠାନର ମୁଖପତ୍ର ଥିଲା ପିପ୍‌ଲସ ଓ୍ୱାର ଓ ଓଡ଼ିଶାରେ ସାପ୍ତାହିକ ମୁକ୍ତି ଯୁଦ୍ଧ । ଶ୍ରମିକ

ବିଶୃଙ୍ଖଳା ସୃଷ୍ଟି କରିବାକୁ ସେମାନେ ଉଦ୍ୟମ କରୁଥାନ୍ତି । ବ୍ରଜରାଜନଗରରେ ଶାନ୍ତିପ୍ରିୟ ଶ୍ରମିକମାନଙ୍କୁ ମିଲ୍ ମାଲିକଙ୍କ ବିରୁଦ୍ଧରେ ଉସୁକାଇ ଧର୍ମଘଟ କରିବାକୁ ସେମାନେ ପ୍ରବର୍ତ୍ତାଇ ଥାଆନ୍ତି । ଯୁଦ୍ଧୋତ୍ତର ପୁନର୍ଗଠନ ଯୋଜନାରେ ଶାନ୍ତି ଶୃଙ୍ଖଳା ରକ୍ଷା ପ୍ରଥମ କର୍ତ୍ତବ୍ୟ । ରାଜ୍ୟରେ ପ୍ରଥମ ମହତାବ ମନ୍ତ୍ରୀମଣ୍ଡଳ ବିକାଶ ମୂଳକ କାର୍ଯ୍ୟରେ ସେମାନଙ୍କର ସହଯୋଗ ନେବାକୁ ନିର୍ଦ୍ଦେଶ ଦେଉଥାନ୍ତି । କଟକ ସମ୍ବଲପୁର ଡାକ ରେଳ ଯୋଗେ ମେରାମୁଣ୍ଡଳି ଆସେ । ସେଠାରୁ ବସରେ ସମ୍ବଲପୁର ଯାଏ । ସମୟ ପ୍ରାୟ ୨/୩ ଦିନ ଲାଗିଯାଏ । ଏହି ବିଳମ୍ବକୁ ପ୍ରତିହତ କରିବାକୁ ଯେତେବେଳେ ରାଜଧାନୀ ସମ୍ବଲପୁର ଉଠିଯାଇଥିଲା ସେଇଦିନଠାରୁ ଡାକ ଧରି ଗୋଟିଏ ମଟର ସାଇକେଲ ପ୍ରତ୍ୟହ କଟକ ସମ୍ବଲପୁର ମଧ୍ୟରେ ମହାନଦୀ ଚହଟା ଘାଟ ପାରି ହୋଇ ଯିବା ଆସିବା କରୁଥାଏ । ଏହାର ଗୋଟିଏ ସାଇଡ଼କାରଥାଏ । ସେଥିରେ ସବୁ ପ୍ରକାର ଜରୁରି ଡାକ ଓ ଅତ୍ୟନ୍ତ ଗୁପ୍ତ ସରକାରୀ ନିର୍ଦ୍ଦେଶନାମା ସଚିବାଳୟରୁ ପଠାଯାଇଥାଏ । ଅନ୍ୟତ୍ର ଯୋଗାଯୋଗ ମଧ୍ୟ ଉନ୍ନତମାନର ନ ଥାଏ । କେତେକ ଚିଠି ନିତାନ୍ତ ଗୁପ୍ତ ଥିବାରୁ ଏହାର ନକଲ ନ କରାଯାଇ ସିଧା ସଳଖ ଜିଲ୍ଲାପାଳମାନଙ୍କୁ ହାତେ ହାତେ ଦିଆଯାଏ । ଏମିତି ଗୋଟିଏ ଚିଠି ସମ୍ବଲପୁର ଡେପୁଟି କମିସନରଙ୍କ ପାଖକୁ ପଠାଗଲା । ସେଥିରେ ଧର୍ମଘଟ ହେଲେ କଣ କରିବ, ଶ୍ରମିକ ବିଶୃଙ୍ଖଳା ଏଡ଼ାଇବାକୁ କଣ କରାଯିବ ଓ ସବୁ ପ୍ରକାର ଆଲୋଚନା ବିଫଳ ହୋଇଗଲା ପରେ ଶ୍ରମିକ ଆନ୍ଦୋଳନକୁ କିପରି ମୁକାବିଲା କରାଯିବ ଏସବୁର ସବିଶେଷ ନିର୍ଦ୍ଦେଶ ପଠାଯାଇଥାଏ । ଶିଳ୍ପ ପାଇଁ ସଂରକ୍ଷିତ ଆସନରେ ବିଧାନ ସଭାରେ ପ୍ରତିନିଧି ଥିଲେ କାଗଜକଳର ପୂର୍ବତନ ସାଧାରଣ ମେନେଜର ଘନଶ୍ୟାମ ଦାସ ଥିଡ଼ାନି । ଡେପୁଟି କମିସନର ବ୍ରଜସୁନ୍ଦର ଗୁପ୍ତ ଚିଠିଟି ପାଇଲେ । ବ୍ରଜରାଜନଗର ଗସ୍ତରେ ବାହାରିଲେ । ଚିଠିର ବିଷୟବସ୍ତୁ ମନେ ରଖି ସ୍ଥାନୀୟ ଅବସ୍ଥାପିତ ଝାରସୁଗୁଡ଼ାର ତହସିଲଦାର ଓ ପ୍ରଥମ ଶ୍ରେଣୀ ମାଜିଷ୍ଟ୍ରେଟଙ୍କୁ ଏହି ଚିଠିଟି ହାତେ ହାତେ ଦେଲେ । ଉଦ୍ଦେଶ୍ୟ କୌଣସି ସନ୍ଦେହ ହେଲେ ସେ ଚିଠିରେ ପ୍ରଦତ୍ତ ନିର୍ଦ୍ଦେଶନାମାର ସାହାଯ୍ୟ ନେବେ । ଉକ୍ତ ତହସିଲଦାର ଜଣେ ଅତି ଉଚ୍ଚକୋଟିର ଦାୟିତ୍ୱ ସଂପନ୍ନ ଅଧିକାରୀଭାବେ ପରିଚିତ ଥିଲେ । ସେ ମଧ୍ୟ ବ୍ରଜରାଜନଗର ଗସ୍ତରେ ଏକା ସମୟରେ ଗଲେ । କମ୍ପାନି ବଙ୍ଗଳାରେ ତିସି ଅବସ୍ଥାନ କଲେ । ବ୍ରଜରାଜନଗରରେ ସରକାରୀ ଡାକବଙ୍ଗଳା ନ ଥାଏ । ତହସିଲଦାର ଅସାଧାରଣ ସାବଧାନତା ସହିତ ଚିଠିଟିକୁ ନିଜ ପାଖରେ ରଖିଲେ । ରାଜସ୍ୱ ବଙ୍ଗଳା ବିଶ୍ରାମ ଗୃହରୁ ସେ ଶୌଚାଳୟକୁ କେବଳ ଯାଇଥିବେ । ଅନ୍ୟଥା ସେଇଠି ତାଙ୍କର ପୁରା ରହଣି କଟିଲା । ସକାଳୁ ଦେଖାଗଲା ଚିଠିଟି ଉଭାଇ ଯାଇଛି । କୌଣସି ପ୍ରକାର ଏହାର ସୂତ୍ର ମିଳିଲା ନାହିଁ । ସେହି ସପ୍ତାହରେ 'ମୁକ୍ତିଯୁଦ୍ଧ'ରେ ଏହି ଚିଠିର ନକଲ ପ୍ରକାଶ ପାଇଲା । ଫଟୋ କପି ପ୍ରକାଶର ସୁବିଧା ସେ ଯୁଗରେ ନ ଥାଏ । ଚିଠିର କେତେକ ନିର୍ଦ୍ଦେଶ ସରକାରଙ୍କୁ

ଅତୁଆରେ ପକାଇଲା । କମ୍ୟୁନିଷ୍ଟ ଶ୍ରମିକ ସଭ୍ୟ ସରକାରଙ୍କୁ ତୀବ୍ର ସମାଲୋଚନା କଲେ । ସରକାରୀ ନିର୍ଦ୍ଦେଶରେ, ଏହି ପରି ଗୁରୁତ୍ୱପୂର୍ଣ୍ଣ ଗୋଟିଏ ଚିଠି କିପରି ଦାୟିତ୍ୱହୀନଭାବରେ ହଜାଇ ଦିଆଗଲା ତାହାର ଅନୁସନ୍ଧାନ କରାଗଲା । ସମସ୍ତେ ଭାବୁଥାଆନ୍ତି କାହାର ଗୋଟାଏ ମୁଣ୍ଡକାଟ ହେବ । ସମସ୍ତଙ୍କର ଆଖି ଡେପୁଟି କମିସନରଙ୍କ ଉପରେ । ନିଜର ସବୁ ଅଧିକାରୀମାନଙ୍କ ସହିତ ସେ ପରାମର୍ଶ କଲେ । ଅଧିକା କଣ ସାବଧାନତା ନିଆଯାଇଥାଆନ୍ତା ତାର ସମ୍ଭାବନା ଶୁଣିଲେ । ଶେଷରେ ଉପସ୍ଥିତ ଅଧିକାରୀମାନଙ୍କ ଆଗରେ ନିଜର ନିଷ୍ପତ୍ତି ମୁଖ୍ୟ ଶାସନ ସଚିବ ଘରୋଇ ବିଭାଗର ସଚିବଙ୍କୁ ଜଣାଇଦେଲେ ।

ଏପରି ଗୁରୁତ୍ୱପୂର୍ଣ୍ଣ ଏକ ପତ୍ର ହଜିବା ଅତ୍ୟନ୍ତ ପରିତାପର ବିଷୟ । ପୁଣି ଅତ୍ୟଧିକ ଦୁଃଖର ବିଷୟ ଚୋର ଧରାଯାଇ ପାରିଲା ନାହିଁ । ଏ ଦିଗରେ ଯଥାସାଧ ଉଦ୍ୟମ ଅସଫଳ ହୋଇଛି । ଏପରି ଗୁରୁତ୍ୱପୂର୍ଣ୍ଣ ଦଲିଲ ଅବଶ୍ୟ ମୋ ହାତରୁ ହଜିଯାଇନାହିଁ । ମାତ୍ର ମୋର ବିଶ୍ୱାସ ଶ୍ରମିକ ସଂଘର କୌଣସି ଗୁପ୍ତଚର ସଚିବାଳୟରେ ଏହି ପତ୍ର ପ୍ରସ୍ତୁତି ହେବାଠାରୁ ଏଥିପ୍ରତି ଲକ୍ଷ୍ୟରଖି ପ୍ରତିସ୍ତରରେ ଏହାକୁ ଅନୁସରଣ କରି ସମ୍ବଲପୁର ଓ ବ୍ରଜରାଜନଗର ଆସିଛି । ମୁଁ ଉକ୍ତ ଅଧିକାରୀଙ୍କୁ ହାତେ ହାତେ ନ ଦେଇ ମୋ ପାଖରେ ରଖିଥିଲେ ମଧ  ଏହି ଗୁପ୍ତଚର ଏହାକୁ ନେବାରେ ସଫଳ ହୋଇଥାନ୍ତା । ସାବଧାନତା ସହିତ ଦଲିଲଟିକୁ ରଖାଯାଇଥିଲା । ମୁଁ ତାଠାରୁ ଅଧିକ କିଛି କରି ପାରି ନ ଥାନ୍ତି । ତେଣୁ ଦଲିଲ୍‌ଟି ହଜିବାର ସମସ୍ତ ଦାୟିତ୍ୱ ମୁଁ ନିଜେ ଗ୍ରହଣ କରୁଛି । ଏହାର ଅନ୍ତର୍ଧ୍ୟାନ ଦୁଃର୍ଭାଗ୍ୟ ଜନକ ବୋଲି ମୁଁ ସ୍ୱୀକାର କରି କର୍ତ୍ତୃପକ୍ଷ ମୋ ବିରୁଦ୍ଧରେ ଯାହା ଶାସ୍ତିବିଧାନ କାର୍ଯ୍ୟାନୁଷ୍ଠାନ କରିବେ ତା'ର ଫଳାଫଳ ଗ୍ରହଣ କରିବାକୁ ମୁଁ ପ୍ରସ୍ତୁତ ଅଛି ।"

ସମସ୍ତେ ସ୍ତମ୍ଭୀଭୂତ । ଏ ପ୍ରକାର ଅଧସ୍ତନ କର୍ମଚାରୀଙ୍କୁ ସୁରକ୍ଷା ଦେବା ଅସାଧାରଣ । ଅର୍ଦ୍ଧ ଶତାବ୍ଦୀ ପରେ ଏହା କଳ୍ପନାତୀତ । ବର୍ତ୍ତମାନ ଦାୟିତ୍ୱ ତଳକୁ ଖସାଇ ଦେବା ପ୍ରଶାସନରେ ସାଧାରଣ କଥା ହେଲାଣି । ନିକଟରେ ଅବସରପ୍ରାପ୍ତ ଜଣେ କ୍ୟାବିନେଟ୍ ସେକ୍ରେଟାରୀ ଲେଖିଛନ୍ତି ସେତେବେଳେ ଜିଲ୍ଲାପାଳମାନେ କ୍ଷମତା ବିକେନ୍ଦ୍ରୀକରଣ କରି ଦାୟିତ୍ୱ ନିଜେ ରଖୁଥିଲେ । ବ୍ରଜସୁନ୍ଦର ଏହାର ଏକ ଉଦାହରଣ ।



# ସହାନୁଭୂତିରେ ଶାସନ

ପ୍ରଭାତ ଚନ୍ଦ୍ର ପାତ୍ର ସମ୍ବଲପୁରର ଅତିରିକ୍ତ ଜିଲ୍ଲାପାଳ । ଯୁଦ୍ଧ ସମୟରେ ଜିଲ୍ଲାପାଳମାନଙ୍କୁ ସେମାନଙ୍କର ଦାୟିତ୍ୱ ଲାଘବ କରିବା ନିମିତ୍ତ ଜଣେ ଅତିରିକ୍ତ ସହାୟକ ଦିଆଯାଇଥିଲା । ପ୍ରଥମେ ଓଡ଼ିଶାରେ କଟକ ଜିଲ୍ଲାରେ ଏହା ପଦବୀ ସୃଷ୍ଟି ହେଲା । ଚନ୍ଦ୍ରଶେଖର ଝା ଜିଲ୍ଲାପାଳ ଓ ଲଲାନ ପ୍ରସାଦ ସିଂହ ଅତିରିକ୍ତ ଜିଲ୍ଲାପାଳ । ଦୁହେଁ ସ୍ୱାଧୀନ ଭରତରେ ସୁଖ୍ୟାତି ଓ ଗୌରବ ଅର୍ଜନ କରିଥିଲେ । ଚନ୍ଦ୍ରଶେଖର ଜାପାନ, ତୁରସ୍କ ଓ ରାଷ୍ଟ୍ରସଂଘରେ ଭାରତର ରାଷ୍ଟ୍ରଦୂତ ଥିଲେ । ଏଲ ପି ସିଂହଙ୍କୁ ସେ ସ୍ୱରାଷ୍ଟ୍ର ସଚିବ ଥିଲାବେଳେ ଭାରତର ମୁକୁଟହୀନ ସମ୍ରାଟ କୁହାଯାଉଥିଲା । ପରେ ସେ ସମସ୍ୟାବହୁଳ ଉତ୍ତରାଞ୍ଚଳ ରାଜ୍ୟମାନଙ୍କର ରାଜ୍ୟପାଳ ହୋଇଥିଲେ । ଗଞ୍ଜାମ ଓ ସମ୍ବଲପୁର ଜିଲ୍ଲାରେ ଏହି ପଦ ଏହା ପରେ ସୃଷ୍ଟି ହେଲା । ସରକାର ନିର୍ଦ୍ଦେଶ ଦେଇଥାନ୍ତି କେତେକ ବିଭାଗରେ ଅତିରିକ୍ତ ଜିଲ୍ଲାପାଳ ସର୍ବେସର୍ବା । ଆଉ କେତେକ ବିଭାଗରେ ସେ ଜିଲ୍ଲାପାଳଙ୍କୁ ଅବଗତ କରାଇ ତାଙ୍କ ନିଷ୍ପତ୍ତି ନେଉଥିବେ । ଏହାଛଡ଼ା ଦ୍ୱିତୀୟ ଓ ତୃତୀୟ ଶ୍ରେଣୀ ମାଜିଷ୍ଟ୍ରେଟମାନଙ୍କର ଅପିଲ ଶୁଣିବା ତାଙ୍କର କାମ ଥାଏ । ପ୍ରଭାତଚନ୍ଦ୍ର ପାତ୍ର କଟକ ସହରର ଖ୍ରୀଷ୍ଟିଆନ ପଡ଼ାର ବାସିନ୍ଦା । ୧୮୯୬ ମସିହାରେ ଜନ୍ମ ୧୯୨୦ ମସିହାରେ ଡେପୁଟି କଲେକ୍ଟରଭାବେ ନିଯୁକ୍ତି ପାଇଥିଲେ । ଅନେକ ସବଡ଼ିଭିଜନରେ କାମ କରି ଶେଷରେ ସମ୍ବଲପୁରରେ ଅବସ୍ଥାପିତ । ବିରାଟ ବପୁ ସେଇ ଅନୁସାରେ ହୃଦୟ ମଧ୍ୟ ବିରାଟ । ତାଙ୍କର ପତ୍ନୀ ଥିଲେ କଲିକତାର ଖ୍ରୀଷ୍ଟିଆନ । ବିଖ୍ୟାତ ଖ୍ରୀଷ୍ଟିଆନ ବେଥୁନ କଲେଜ କଲିକତାରୁ ବିଏ ପାସ କରି ବିବାହ କରିଥିଲେ ମାତ୍ର ପ୍ରଭାତଚନ୍ଦ୍ର କଟକର ବାସିନ୍ଦା ଥାଇ କେତେ ମାତ୍ରାରେ ରକ୍ଷଣଶୀଳ ଥିଲେ । ଦୁଇଜଣଙ୍କର ମତାନ୍ତର ହେଲା ପରେ ମନାନ୍ତର ଫଳରେ ଦୁହେଁ ଅଲଗା ହୋଇ ରହିଲେ । ଭାରତୀୟ ଖ୍ରୀଷ୍ଟିଆନ ଆଇନ ଅନୁସାରେ ବିବାହ ବିଚ୍ଛେଦ ବା ଛାଡ଼ପତ୍ର ହୋଇ ନ ଥାଏ । ଦୀର୍ଘଦିନ ଧରି ଦୁଇ ଜଣ ଅଲଗା ରହୁଥାନ୍ତି । ପରିବାରରେ ସନ୍ତାନ ସନ୍ତତି ନ ଥାଇ ସେ ଯେଉଁ

ନିସଙ୍ଗତା ଅନୁଭବ କରୁଥିଲେ ତାହାକୁ ବୋଧହୁଏ ପ୍ରଭାତଚନ୍ଦ୍ର ନିଜର ସହକର୍ମୀ ଓ ଅଧସ୍ତନ କର୍ମଚାରୀମାନଙ୍କ ଉପରେ ଶ୍ରଦ୍ଧା ସ୍ନେହରୂପେ ଅଜାଡ଼ି ଦେଉଥିଲେ । ଫୁଲବାଣୀର ଗୋଟିଏ ଯୁବକକୁ ତାଲିମ ଦେଇ ସେ ନିଜର ଡ୍ରାଇଭର କରିଥାଆନ୍ତି । ସେଇ ମଧ ତାଙ୍କର ଖାନସମା ଓ ବବର୍ଚ୍ଚି । ପ୍ରତିଦିନ ତାକୁ ୧୦ଟଙ୍କା ଦିଆଯିବ । ଯଦି ଜଣେ ଅତିଥି ଆସିବେ ସେ ସେଥିରେ ଚଳେଇବ । ଅତିଥି ଯଦି ଏକାଧିକ ହୁଅନ୍ତି ତାହାହେଲେ ଆଉ ଖଣ୍ଡେ ଦଶ ଟଙ୍କିଆ ଦିଆଯିବ । ସେଥିପାଇଁ ଟ୍ରେଜରୀ (ବ୍ୟାଙ୍କ ଟେଜରୀ କାମ କରୁଥାଏ) ଦରମା ଦେବାବେଳେ ତାଙ୍କୁ ଦଶଟଙ୍କିଆ ନୋଟ ବିଡ଼ା ଗୋଟିଏ ନିଶ୍ଚୟ ଦେବ । ବିହାର ଓଡ଼ିଶାରେ ଜଣେ ଡେପୁଟି କଲେକ୍ଟରଙ୍କୁ ଗୋଟିଏ ବିଶେଷ ଦରମାରେ ରଖାଯାଉଥିଲା । ଦୁଇ ପ୍ରଦେଶରେ ଏହା ଗୋଟିଏ ମାତ୍ର ପଦବୀ । ସେ ଯୁଗରେ (I.P.S, I.M.S, I.E.S, I.S.E) (ପୁଲିଶ ସ୍ୱାସ୍ଥ୍ୟ ଶିକ୍ଷା ଓ ଇଂଜିନଅର) ପଦବୀମାନଙ୍କରେ ପଦୋନ୍ନତି ଦ୍ୱାରା ସ୍ଥାନ ପୂରଣ ହେଉଥିଲେ ମଧ ଆଇସିଏସ୍ କେବଳ ଜନ୍ମରୁ । ପଦୋନ୍ନତି ପାଇ କେହି ବ୍ରାହ୍ମଣ ହେଉ ନ ଥିବା ପରି । ପଦୋନ୍ନତିରେ ଆର୍ଥିକ ସୁବିଧା ମିଳୁଥିଲେ ମଧ ପଦବୀର ଆଇସିଏସ୍ ଉପାଧି ଉପଲବ୍ଧ ହେଉ ନ ଥିଲା । ଆଇଏଏସ ଜିଲ୍ଲାପାଳ ଆସିଲେ ଦରମା ବରିଷ୍ଠ ପଦରେ ୭୫୦ ଟଙ୍କା । କିନ୍ତୁ ଏହି ବିଶେଷ ପଦବୀରେ ୧୪୫୦ ଟଙ୍କା ଥାଏ । ପ୍ରଭାତଚନ୍ଦ୍ରଙ୍କର ସ୍ୱଭାବ ନିଜେ ଭଲ ଖାଇବା ଓ ଅନ୍ୟମାନଙ୍କୁ ଖୁଆଇବା । ଅରଡ଼ା କୁକୁଡ଼ା ଗୋଟିକର ଦାମ ୭୫ ପଇସାରୁ ଏକ ଟଙ୍କା । ନିଜ ପାଇଁ ସେଥିରୁ ଦିବେଳା ଦୁଇଟି ଦରକାର । ରୋଷ୍ଟ ହୋଇ ଲହୁଣି ମଖାଯାଇ ଖାଇବା ଟେବୁଲରେ ରଖାଯାଇଥିବ । କଣ୍ଟା ଚାମଚ ଲଗେଇଲେ ଯେପରି ହାଡ଼ ମାଂସ ଅଲଗା ହେଉଥିବ । କିଏ ପଚାରିଲା ଆପଣ କଣ ସବୁଦିନେ ଦିଓଟି କୁକୁଡ଼ା ଖାଇଥାନ୍ତି ? ଉତ୍ତର ମିଳିଲା 'ନାହିଁ ତମ ବୟସରେ ପ୍ରତିବେଳା ଦିଓଟି ଖାଉଥିଲି' । ଖେଳାଖେଳି ପ୍ରତି ଆଗ୍ରହ ନ ଥାଏ । ଦିଓଟି ଇଂରେଜି ଖବର କାଗଜ ଷ୍ଟେଟସ୍‌ମ୍ୟାନ ଓ ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ଼ ଦିଓଟି ଓଡ଼ିଆ କାଗଜ ସମାଜ ଓ ପ୍ରଜାତନ୍ତ୍ର ପ୍ରତିଦିନ ଆସିବ । ପଢ଼ାଯିବ ଓ ସହକର୍ମୀମାନଙ୍କ ସହିତ ସମ୍ବାଦ ଓ ସଂପାଦକୀୟ ମତାମତ କଚେରି ଆରମ୍ଭ ହେବାବେଳକୁ ଆଲୋଚନା କରାଯିବ । ଅଭିଜ୍ଞତା ଓ ବୟସରେ ନ୍ୟୁନ ସହକର୍ମୀ ଏହି ସମୟରେ ଡକାଯିବେ । ସମସ୍ୟା ଆଲୋଚନା କରାଯାଇ ଦିଗଦର୍ଶନ ଦିଆଯିବ ।

ଆମ୍ବ ନିଜର ଅତି ପ୍ରିୟ ଫଳ । ଓଡ଼ିଶାରେ ଛଅଗୋଟି ଜିଲ୍ଲା । କେଉଁଠାରେ କେଉଁ ଆମ୍ବର କି ପ୍ରକାର ବିଶେଷତ୍ୱ ତାହା ନଖଦର୍ପଣରେ । ଆମ୍ବ ପାଚିବା ପୂର୍ବରୁ ସେଠାକୁ ଟଙ୍କା ପଠାଯିବ । ଝୁଡ଼ି ଝୁଡ଼ି ହୋଇ ଆମ୍ବ ବାହକ ହାତରେ ଋତୁ ଶେଷ ପର୍ଯ୍ୟନ୍ତ ଆସୁଥିବ । ଅନ୍ୟମାନଙ୍କୁ ଖାଇବାରେ ଅଂଶୀଦାର ହେବାକୁ ଡକାଯିବ । କଚେରିରେ ନିଜ ଇଝଲାସରେ

ବସି ନିଜର କନିଷ୍ଠ ସହଯୋଗୀ ମାନଙ୍କ ଆଗରେ ନିଜର ଅକ୍ଷମତା ନିମିତ୍ତ କ୍ଷୋଭ ପ୍ରକାଶ କରାଯିବ । "ଅଶୋକ, କାଲି ବାଲିଗୁଡ଼ା ଭଂଜନଗର ଦିଆଡୁ ଆମ୍ବ ପହଞ୍ଚିଗଲା । କେତେଗୁଡ଼ାଏ ଝୁଡ଼ି । ତମେମାନେ କେହି ସଂଧ୍ୟାରେ ଗଲ ନାହିଁ । ବେଶିଦିନ ତ ରଖି ହେବ ନାହିଁ । କାଲି କାଟି କରି ୫/୭ଟା ଖାଇଲି । ଚୁଚୁମିକରି ସେମିତି ୮/୧୦ଟା ଖାଇଲି । ହାତ ଘୋଳି ହେଲା । ଅପନ୍ନଙ୍କୁ (ବବରୁଚି) ରସ ବାହାର କରିବାକୁ କହିଲି । ସେ ୨/୩ ଗିଲାସ ରସ ଦେଲା । ଖୁବ ବଡ଼ ଗିଲାସ ନୁହେଁ । ଆଉ ଖାଇବାକୁ ଇଚ୍ଛା ହେଲା ନାହିଁ । ବୟସ ହେଲାଣି ତେଣୁ ଆଉ ବେଶି ଖାଇ ପାରୁ ନାହିଁ । ତମେମାନେ ସଂଧ୍ୟାରେ ନ ଗଲେ ଆମ୍ବ ଝୁଡ଼ିରେ ସଢ଼ି ଯିବ" । ସହକର୍ମୀମାନେ ନିଶ୍ଚୟ ଅନୁଗ୍ରହୀତ କରିବେ ।

ସେ ଯୁଗରେ କୌଣସି ଚିଠିର ଉତ୍ତର ଜିଲ୍ଲା ଅଫିସରୁ ମାସକ ଭିତରେ ନ ଗଲେ ଦୋଷାବହ । ୩ ମାସରୁ ଅଧିକା ହେଲେ ଜିଲ୍ଲାପାଳଙ୍କୁ କୈଫିୟତ ଦେବାକୁ ପଡ଼ିବ । ଏହା ସତ୍ତ୍ୱେ ଆବଶ୍ୟକୀୟ ତଥ୍ୟ ଅଭାବରୁ ବା ନିଜର ଅନାଗ୍ରହ ହେତୁ ଚିଠିର ଉତ୍ତର ରହିଯାଏ । ୩ ମାସରୁ ଅଧିକା ହୋଇଥିଲେ ଜିଲାପାଳଙ୍କୁ ଅବଗତ କରାଯିବ । ମାତ୍ର ଜିଲ୍ଲାପାଳ ମାସକୁ ୭/୮ ଦିନ ଅତିକମ୍‌ରେ ଟୁରରେ ଯିବାର କଥା । ସେହି ସମୟରେ ପ୍ରଭାତଚନ୍ଦ୍ର ତାଙ୍କ ଜଣାଶୁଣା ଠାପୁଆ ମନ୍ଦୁର ଅଧିକାରୀମାନଙ୍କୁ ଡକାଇ ପଠାଇବେ । କଣ ଯଦି ରହିଯାଇଛି ଆଣ ମୋ ହାତରେ ଦସ୍ତଖତ କରି ପଠାଇ ଦିଅ । ଏଣିକି ଆଉ ବିଳମ୍ବ କରିବ ନାହିଁ । ସେଇଆ ହୁଏ ମାତ୍ର ସମସ୍ତେତ ଜାଣନ୍ତି ପୁଣି ବିଳମ୍ବ ହେବ ଓ ସେ ମଧ ଦସ୍ତଖତ କରି ମଧୁର ଦିପଦ ଗାଳି ଶୁଣାଇ ଉତ୍ତର ପଠାଇଦେବେ ।

ଦେଶୀୟ ରାଜ୍ୟ ମିଶ୍ରଣ ପରେ ଅନେକ ପଦୋନ୍ନତି ପାଇ ଜିଲ୍ଲାପାଳ ହୋଇଗଲେ । ନିଜକୁ ନିତାନ୍ତ ଆଯୋଗ୍ୟ ନୁହନ୍ତି ଏହା ଦର୍ଶାଇବାକୁ ସେ ଜିଲ୍ଲାପାଳଭାବେ ବଉଦ ଫୁଲବାଣୀ ଗଲେ ମାତ୍ର ବରଷ ନ ପୁରୁଣୁ ନିଜେ ସରକାରଙ୍କୁ ନିବେଦନ କରି ନିଜର ପୁରୁଣା ପଦବୀକୁ ଫେରି ଆସିଲେ । ସେଇଠାରେ ତାଙ୍କର ହୃଦ୍‌ଘାତ ଫଳରେ କରୁଣଭାବରେ ମୃତ୍ୟୁ ଘଟିଲା ।

ଛୁଟିଦିନ ସକାଳେ ନିଜ ସହକର୍ମୀ କେତେଜଣଙ୍କ ସହିତ ଗପସପ କଲେ । ସେମାନଙ୍କୁ ଆମ୍ବ ବିଭିନ୍ନ ପ୍ରକାରର କାଟି ଖାଇବାକୁ ଦେଲେ । ମଧ୍ୟାହ୍ନ ଭୋଜନ ସାରି ଗୋସଲଖାନାରେ କମୋଡ଼ରେ ବସି ମଳତ୍ୟାଗ ସମୟରେ ଟଳି ପଡ଼ିଲେ । ସରକାରୀ ଇସ୍ପାତ ଯନ୍ତାର କଠୋରତା ମଧରେ ସ୍ନେହ ଶ୍ରଦ୍ଧା ବିତରଣ କରୁଥିବା ଏକ ଜୀବନର ଅବସରର କେତେମାସ ପୂର୍ବରୁ ପଞ୍ଚାବନ ବୟସରେ ପରିସମାପ୍ତି ଘଟିଲା ।

"ଛଇଳ ପଣ ନ ଥାଇ ଯାହାର
ଛଳ ନାହିଁ ସତ୍ୟ ବଚନ ସାର ।
ଛନ୍ଦ କୁଟିଳ ନ ଥାଇ ଯେ ଜନ
କହେ ଦନାଇ ଏ ପୁରୁଷ ରତନ ।।"



# ପ୍ରଜା ଦୁଃଖ ଲାଘବକୁ ଗୋରା ସାହେବ

ଜୟପୁର ଜମିଦାରିକୁ ବାଦ ଦେଲେ କନିକା ଓଡ଼ିଶାର ସର୍ବବୃହତ ଜମିଦାର ଥିଲା । କଟକ ଓ ବାଲେଶ୍ୱର ଦୁଇ ଜିଲ୍ଲାରେ ଏହା ବିସ୍ତାରି ଥିଲା । କନିକା ରାଜା ସାର ରାଜେନ୍ଦ୍ର ନାରାୟଣ ଭଞ୍ଜ ଦେଓ । ଉତ୍କଳ ସମ୍ମିଳନୀରେ ପ୍ରଦେଶ ଗଠନ କାର୍ଯ୍ୟରେ ମଧୁବାବୁଙ୍କର ପ୍ରଧାନ ସହାୟକ ଥିଲେ ଓ ତାଙ୍କଠାରୁ ପ୍ରେରଣା ପାଇ ସେ ବିହାର ଓଡିଆ ପ୍ରାଦେଶିକ ଲାଟ ସଭାର ସଭ୍ୟ ଥିଲେ । ପରେ ଏକଜକୁଟିଭ୍ କାଉନସିଲ୍ ମଧ୍ୟ ହୋଇଥିଲେ । ଇଂରେଜ ସରକାରଙ୍କ ପାଖରେ ତାଙ୍କର ଖୁବ୍ ଖାତିର ଥିଲା । ମାତ୍ର ତାଙ୍କ ନିଜ ଜମିଦାରି ପରିଚାଳନାରେ ତାଙ୍କର ସୁଖ୍ୟାତି ନ ଥିଲା । ନାନା ପ୍ରକାର ବେଆଇନ କର ପ୍ରଜାମାନଙ୍କଠାରୁ ଅସୁଲ କରାଯାଉଥିଲା । ସରକାରଙ୍କ କଚେରୀକୁ ନ ଯାଇ ନିଜ କର୍ମଚାରୀମାନଙ୍କ ଜରିଆରେ ବାକିଆ ରାଜସ୍ୱ ଆଦାୟ ନିମିତ୍ତ କେଶ୍ କରିବା ଓ ଏହି ଡିଗ୍ରିଜାରି ଟଙ୍କା କ୍ରୋକ କରି ନେବାପାଇଁ ସେ ସରକାରୀ ସମ୍ମତି ହାସଲ କରିଥିଲେ । ଉନ୍ନତ କୃଷିର ପ୍ରୟୋଗ, ଜଳସେଚନ ଆଦି କରି ପ୍ରଜାମାନଙ୍କର ଆର୍ଥିକ ଉନ୍ନତି ନିମିତ୍ତ କୌଣସି ପଦକ୍ଷେପ ଜମିଦାରିଙ୍କ ତରଫରୁ ନିଆଯାଉ ନ ଥାଏ । ପ୍ରଜାମାନେ ନିତାନ୍ତ ଦରିଦ୍ର ଥାଇ ନିମ୍ନସ୍ତରର ନାଗରିକଭାବରେ ଜୀବନଯାପନ କରୁଥିଲେ । ଏହି ସମୟରେ ୧୯୨୭ ମସିହାରେ ଅନାବୃଷ୍ଟି ଫଳରେ ଦୁର୍ଭିକ୍ଷ ଦେଖା ଦେଲା । ସରକାର ପରିସ୍ଥିତିର ଗୁରୁତ୍ୱ ଉପଲବ୍ଧ କରି ଲୋକମାନଙ୍କୁ ଚୂଡ଼ା ଚାଉଳ ଯୋଗାଇଦେବାକୁ ରିଲିଫ କ୍ୟାମ୍ପମାନ ଖୋଲିଲେ । ଜମିଦାରଙ୍କର ଏ ଦିଗରେ ଗୁରୁ ଦାୟିତ୍ୱ ଥିଲା । ପ୍ରଜାମାନଙ୍କର ଆର୍ଥିକ ମେରୁଦଣ୍ଡ ଯେପରି ଭାଙ୍ଗି ନ ଥାଏ ଓ ପରବର୍ଷର ଚାଷ ନିମିତ୍ତ ଯେପରି ସେମାନେ ପ୍ରସ୍ତୁତ ହେବେ ଏଥିପାଇଁ ତାଙ୍କର ଉଦ୍ୟମ କରିବା ଆବଶ୍ୟକ ଥିଲା । ସରକାରଙ୍କର ରିଲିଫ୍ କ୍ୟାମ୍ପ, ବ୍ୟତୀତ ଜମିଦାରଙ୍କର ତରଫରୁ କୌଣସି ସାହାଯ୍ୟ ଦେବାରେ ତତ୍ପରତା ଦେଖାଗଲା ନାହିଁ । କନିକା ରାଜା ପାଟଣାରେ ରହୁଥାଆନ୍ତି । ଶାସନରେ ସେ ଭାଗୀଦାର । ତାଙ୍କ ରାଜ୍ୟରେ ପ୍ରଶାସନିକ ବିଶୃଙ୍ଖଳା ଫଳରେ ଦୁର୍ଭିକ୍ଷ ଦେଖାଦେଇଛି ଏହା ସେ ବାହାର ଜଗତକୁ ଜଣାଇଦେବାକୁ ଚାହୁଁ ନ ଥିଲେ । ତେଣୁ ସେ ଦୁର୍ଭିକ୍ଷ ଘୋଷଣା ନିଷ୍ପତ୍ତିକୁ ବିରୋଧ କରୁଥାଆନ୍ତି ।

ବାଲେଶ୍ୱର ଜଣେ ଗୋରା ଜିଲ୍ଲାମାଜିଷ୍ଟ୍ରେଟ ଥାଆନ୍ତି ଜେ.ଜନଷ୍ଟନ । ସେ ଆଇରଲାଣ୍ଡର ଅଧିବାସୀ । ଅଳ୍ପଦିନ ହେଲା ଆଇସିଏସରେ ଯୋଗଦେଇ ଜିଲ୍ଲା କଲେକ୍ଟର ପାହିଆରେ ଥାଆନ୍ତି । ବାଲେଶ୍ୱର ଜିଲ୍ଲାବୋର୍ଡ଼ର ଚେୟାରମ୍ୟାନ ଜନନାୟକ ହରେକୃଷ୍ଣ ମହତାବ । ସେ ଜିଲ୍ଲାର ବିଭିନ୍ନ ଅଞ୍ଚଳ ଗସ୍ତ କରିବାବେଳେ ଜନଷ୍ଟନଙ୍କୁ ଦେଖନ୍ତି । ଜନଷ୍ଟନଙ୍କ କାର୍ଯ୍ୟପ୍ରଣାଳୀ ତାଙ୍କୁ ସନ୍ତୋଷ ଜନକ ଜଣାପଡୁଥାଏ । ମାତ୍ର ସେ ଶାସନ ବିରୋଧୀ କଂଗ୍ରେସ ଦଳର ଲୋକ । ତେଣୁ ନିଜକୁ ଦୂରେଇ ରଖିବାକୁ ଚେଷ୍ଟା କରୁଥାଆନ୍ତି । ତଥାପି ଜନଷ୍ଟନ ତାଙ୍କ ସହିତ ଘନିଷ୍ଠତା ରଖିଥାଆନ୍ତି । ଲୋକେ କହୁଥାନ୍ତି ଜନଷ୍ଟନ ସାହେବଙ୍କର ଘରଣୀ ମହତାବଙ୍କର ଧରମ ଭଉଣୀ । ଜିଲ୍ଲାରେ ଦୁଇଜଣଙ୍କର ଲୋକପ୍ରିୟତା ପ୍ରଶଂସନୀୟ ଥାଏ । ଜନଷ୍ଟନ ଆଇରଲାଣ୍ଡର ଲୋକ ଥାଇ ତାଙ୍କ ଦେଶବାସୀଙ୍କର ଆଠଶ ବରଷର ଇଂରେଜ ଦାସତ୍ୱ ଶୃଙ୍ଖଳରୁ ମୁକ୍ତି ନିମିତ୍ତ ଉଦ୍ୟମର ପ୍ରଶଂସକ । ତାଙ୍କ ଦେଶର ନେତା ଡି.ଭାଲେରା । ୧୯୧୬ ମସିହାରେ ଇଷ୍ଟର ବିଦ୍ରୋହରେ ଧରାଯାଇ ଫାଶି ପାଇ ଥିଲେ । ପରେ ଦଣ୍ଡକୁ ଦ୍ୱୀପାନ୍ତରରେ ପରିଣତ କରାଯାଇଥିଲା । ୧୯୧୭ ମସିହା ବ୍ରିଟିଶ ସରକାର ସର୍ବସାଧାରଣ ରାଜକ୍ଷମା ଘୋଷଣା କରିବାରୁ ସେ ମୁକ୍ତି ପାଇଥାନ୍ତି । ୧୯୧୯ ମସିହାରୁ ୧୯୨୧ ମସିହା ପର୍ଯ୍ୟନ୍ତ ଇଂଲଣ୍ଡ ଓ ଆଇରଲାଣ୍ଡ ମଧ୍ୟରେ ସ୍ୱାଧୀନତା ସଂଗ୍ରାମ ଲାଗି ରହିଥିଲା । ଜନଷ୍ଟନଙ୍କର ଚିନ୍ତାଧାରା ଓ ମନୋଭାବ ଏହା ଦ୍ୱାରା ପ୍ରଭାବିତ ହୋଇଥିଲା । ୧୯୨୭ ମସିହାରେ ତାଙ୍କ ଦେଶରେ ଇଂରେଜ କବଳରୁ ମୁକ୍ତିପାଇ ସ୍ୱାଧୀନ ରାଜ୍ୟ ଗଠନର ମୂଳଦୁଆ ପଡ଼ି ଆସୁଥାଏ । ଜନଷ୍ଟନ ମଧ୍ୟ ଉଦାରବାଦୀ ଥାଇ ସବୁ ପରାଧିନ ଦେଶ ଦିନେ ସ୍ୱାଧୀନ ହେବେ ଏଇ ସ୍ୱପ୍ନ ଦେଖୁଥାନ୍ତି । ୧୯୨୭ ମସିହାରେ ଭାରତରେ ସାଇମନ କମିସନ ବସିଥାଏ । ଦେଶକୁ କଣ ସ୍ୱାୟତ୍ତଶାସନ ଦିଆଯିବ ତାହା ଦେଶ ଗସ୍ତ କରି ସରକାରଙ୍କୁ ପରାମର୍ଶ ଦେବାକୁ ଏହାକୁ ଦାୟିତ୍ୱ ଦିଆଯାଇଥାଏ । ଜନଷ୍ଟନ ବ୍ୟକ୍ତି ଓ ଦେଶ ସ୍ୱାଧିନତାରେ ଅଧିକ ଆଶାବାଦୀ ହୋଇ ଥାଆନ୍ତି । ସ୍ଥାନୀୟ ଲୋକେ ଯେପରି ସରକାରୀ କଳର ଉତ୍ପୀଡ଼ନାରେ ନିର୍ଯ୍ୟାତିତ ନ ହୁଅନ୍ତି ସେଥିପ୍ରତି ଦୃଷ୍ଟି ରଖି ଥାଆନ୍ତି । ଦୁର୍ଭିକ୍ଷ ଘୋଷଣା କରିବା ଓ ଯଥୋଚିତ ସାହାର୍ଯ୍ୟ ଦେବା ନିମିତ୍ତ ସେ ସରକାରଙ୍କୁ ନିଜର ରିପୋର୍ଟ ଜରିଆରେ ପରାମର୍ଶ ଦେଉଥିଲେ । ମାତ୍ର ପାଟଣା ଦରବାରରେ ତାଙ୍କ ସ୍ୱର ଶୁଣାଯାଉ ନ ଥାଏ । କନିକା ରାଜା ଜମିଦାରଭାବରେ ପ୍ରଜାମାନଙ୍କୁ ସାହାଯ୍ୟ କରିବାକୁ ଆଗେଇ ଆସୁନଥାନ୍ତି । ଭଦ୍ରକର ଉପଜିଲ୍ଲାପାଳ (ଏସ୍.ଡ଼ି.ଓ) ଥାଆନ୍ତି ଏମ ଅହମ୍ମଦ । ସେ ଜଣେ ପ୍ରାଦେଶିକ ସଂସ୍ଥାର କର୍ମଚାରୀ । ସେ ମଧ୍ୟ ରାଜାଙ୍କର ଉଦାସୀନତାର ସମାଲୋଚକ । ଦୟାଦ୍ର ହୃଦୟରେ ଦୁଇ ରାଜକର୍ମଚାରୀ ମଫସଲ ବୁଲି ଲୋକମାନଙ୍କର ଦୁଃଖରେ ଫାଟି ପଡୁଥାନ୍ତି । ନିଜର କର୍ମଚାରୀମାନଙ୍କୁ ନିଷ୍ଠାପରଭାବରେ ସରକାରୀ ସେବା ଲୋକମାନଙ୍କ ପାଖରେ ପହଞ୍ଚିବାକୁ ଉଦ୍ୟମ କରିବା ପାଇଁ ପରାମର୍ଶ

ଦେଉଥାନ୍ତି । ମାତ୍ର ସରକାର ବିଧିବଦ୍ଧଭାବେ ଦୁର୍ଭିକ୍ଷଗ୍ରସ୍ତ ଅଞ୍ଚଳ ଘୋଷଣା କରିବାକୁ ତଥାପି ଉପରୁ ସହାନୁଭୂତିର ଅଭାବ ଥାଏ ।

ଆଶାନୁରୂପ କିଛି ଉଦ୍ୟମ ସରକାରୀ ସ୍ତରରେ ଦେଖାଯାଉନାହିଁ । ବାରମ୍ବାର ଜନଷ୍ଟନ ଏହା ସରକାରଙ୍କୁ ହେଜେଇ ଦେବାକୁ ଚିଠି ଲେଖୁଥାନ୍ତି । ଓଡ଼ିଶା ଡିଭିଜନର କମିସନର ବୀରେନ୍ଦ୍ରଚନ୍ଦ୍ର ସେନ । ବଙ୍ଗଳାର ଅଧିବାସୀ । ସରକାରଙ୍କର ଅତି ଅନୁରକ୍ତ । ଜନଷ୍ଟନଙ୍କ ଆଚରଣରେ ବିରକ୍ତ ହୋଇ ସେ ପ୍ରପୀଡ଼ିତ ଅଞ୍ଚଳ ଗସ୍ତରେ ଆସିଲେ । ଜନଷ୍ଟନ ଓ ଆହମେଦ ଖୁସି ହେଲେ । ତାଙ୍କୁ ଗାଁ ଗହଳକୁ ନେଇଗଲେ ଲୋକମାନଙ୍କର ଦୁରବସ୍ଥା ଦେଖାଇଲେ । ସାହେବମାନଙ୍କୁ ଦେଖି ଆଖ ପାଖରେ କୌତୁହଳବଶତଃ ଗୁଡ଼ିଏ ଅସ୍ଥିକଙ୍କାଳସାର ଗାଁ ପିଲା ବୁଲୁଥାଆନ୍ତି । ଜନଷ୍ଟନ ସେମାନଙ୍କୁ ଦେଖିଲେ । ତାଙ୍କ ପାଖକୁ ସେ କମିସନରଙ୍କୁ ଟାଣିନେଲେ । "ଦେଖନ୍ତୁ ମିଷ୍ଟର ସେନ, ଏହି ଅସ୍ଥିକଙ୍କାଳ ସାର ଦେହରେ କେବଳ ପ୍ରାଣମାତ୍ର ରହିଛି । ଖାଦ୍ୟ ସେମାନଙ୍କର ଦୁର୍ଲଭ ହେଲାଣି ।" ଜଣେ ବିଦେଶୀ ଶାସକଙ୍କର ସହାନୁଭୂତି ଜଣେ ଦେଶୀ କର୍ମଚାରୀଙ୍କୁ ଆତ୍ମ ବିଭୋର କରିପାରିଥାନ୍ତା । ମାତ୍ର ବୀରେନ୍ଦ୍ର ନିର୍ଲଜ ଭାବରେ କହିଲେ "ଜନଷ୍ଟନ, ତମେ ଜାଣ ନାହିଁ, ଆମ ଭାରତୀୟମାନଙ୍କର ସାଧାରଣ ସ୍ୱାସ୍ଥ୍ୟ ସବୁକାଳେ ଏମିତି । ସେମାନେ ସାରାଜୀବନ ଏଇ ପ୍ରକାର ସ୍ୱାସ୍ଥ୍ୟ ଘେନି ଜୀବନ ଧାରଣ କରନ୍ତି । ତେଣୁ ଅନାହାର ବା ଖାଦ୍ୟାଭାବ ଯୋଗୁ ଏପରି ସ୍ୱାସ୍ଥ୍ୟ ସାଧାରଣ ଲୋକଙ୍କର ହୋଇଛି ବୋଲି ତମେ ଧରିନେଇ ଶାସନ ପ୍ରତି ଗୁରୁତର ପ୍ରମାଦ ସୃଷ୍ଟି କରୁଛ ।"

କମିସନର ମଫସଲ ଗସ୍ତ କରି ଫେରିଗଲେ । ପାଟଣା ସରକାରଙ୍କୁ ରିପୋର୍ଟ ଦେଲେ । ଜନଷ୍ଟନ ଭ୍ରମାତ୍ମକ ରିପୋର୍ଟ ଦେଇ ଦୁର୍ଭିକ୍ଷର ଅତିରଞ୍ଜିତ ଚିତ୍ର ପ୍ରଦାନ କରିଛନ୍ତି । ସରକାର ସାଙ୍ଗେ ସାଙ୍ଗେ ଆହମେଦଙ୍କ ସହିତ ଜନଷ୍ଟନଙ୍କୁ ବଦଳି କଲେ । ଜନଷ୍ଟନଙ୍କୁ ଜିଲ୍ଲା ମାଜିଷ୍ଟ୍ରେଟ ପଦରୁ ହଟାଇ ଦିଆଗଲା । ଜଏଣ୍ଟ ମାଜିଷ୍ଟ୍ରେଟ ଓ ଡେପୁଟି କଲେକ୍ଟରଭାବରେ ତାଙ୍କୁ ରାଞ୍ଚିରେ ଅବସ୍ଥାପନ ନିମିତ୍ତ ଆଦେଶ ଦିଆଗଲା । ଆହେଦଙ୍କୁ ଡେପୁଟି କଲେକ୍ଟର ପାହିଆକୁ ଖସାଇ ଦିଆଗଲା ଓ ତାଙ୍କ ସ୍ଥାନରେ ସରକାରଙ୍କର ଅତି ନିମକ-ସଚ୍ଚା ଖାଁ ବାହାଦୁର ଦିଲଓ୍ୱର ଅଲି ଖାଁ ଭଦ୍ରକର ଏସ୍‌ଡ଼ିଓ ହେଲେ । ଜୋ ହୁକୁମ ହାକିମ ଆସିବା ଫଳରେ ଅବସ୍ଥା ପରିବର୍ତ୍ତିତ ହେଲା ବୋଲି ସରକାର ଅନୁଭବ କଲେ । ଜନଷ୍ଟନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରାଯାଇ ତାଙ୍କୁ ପଦଚ୍ୟୁତି କରାଗଲା । ମାତ୍ର ଜଣେ ଦେଶପ୍ରେମୀ ଓ ପ୍ରକୃତ ଜନ ସେବକ ଭାବରେ ସେ ଚାକିରିରୁ ଇସ୍ତଫା ଦେଇ ନିଜ ଦେଶକୁ ବାହୁଡ଼ି ଗଲେ ।

ହୁଏତ ଅନେକ ଜାଣି ନ ଥାନ୍ତି ଅସଲ ଗୋରା ସାହେବମାନଙ୍କ ଅପେକ୍ଷା ବାଦାମୀଚମଡ଼ା  ହାକିମ ଓ ଯୋ ହୁକୁମ ଖଇର ଖାଁମାନେ ଇଂରେଜ ଶାସନରେ ବେଶି ବିପଦଜନକ ଥିଲେ ।



# ଦୁଷ୍ଟ ନିବାରି ସନ୍ଥ ପାଳୁ ?

ଫେବୃଆରି ମାସ ୧୯୪୪ । ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ ସ୍ନାତକ ପରୀକ୍ଷା ସରିଲା । ପରୀକ୍ଷାର୍ଥୀମାନେକେବଳ ରେଭେନ୍ସା କଲେଜରୁ । ପ୍ରଦେଶର ଅନ୍ୟ ଡିଗ୍ରି କଲେଜ ପାରଳାଖେମୁଣ୍ଡିରେ । ଜୁନିଅର କଲେଜ ଖଲିକୋଟ ସହିତ ଏହା ସେ ବର୍ଷ ଆନ୍ଧ୍ର ବିଶ୍ୱବିଦ୍ୟାଳୟ ଅଧିନରେ । ରେଭେନ୍ସା କଲେଜରେ ଇଂରେଜୀରେ ଏମ୍.ଏ. ଥିଲା । ଓଡ଼ିଆରେ ବର୍ଷକ ଆଗରୁ ଖୋଲିଥାଏ । ଆଇନ କ୍ଲାସ ମଧ୍ୟ ରେଭେନ୍ସା କଲେଜରେ ସକାଳେ ବା ସଂଜରେ ହେଉଥାଏ । ଦି ବର୍ଷର ପାଠ୍ୟ । ଯେଉଁମାନେ ଏମ୍.ଏ. ସହିତ ଏହା ପଢ଼ିବେ ତିନିବର୍ଷରେ ସାରିପାରିବେ ।

ଉତ୍କଟ ଦାରିଦ୍ର୍ୟ । ପୁଣି ୧୯୪୩ର ବଙ୍ଗ ଦୁର୍ଭିକ୍ଷର ପ୍ରଭାବ ଓଡ଼ିଶାରେ ମଧ୍ୟ ପଡ଼ିଥାଏ । ତେଣୁ ଅନିଚ୍ଛା ସତ୍ତ୍ୱେ ମୋ ପୋଥିରେ ଡ଼ୋରି ବନ୍ଧା ହେଲା । ଯୁଦ୍ଧ ସରିବା ଭଳିଆ । ମିତ୍ରଶକ୍ତି ଜିତିବା ସ୍ପଷ୍ଟ ଜଣା ପଡୁଥାଏ । ଚାକିରିରେ କିଛି ଅଭାବ ନ ଥାଏ । କେରିଅର ଭଲ ଥିଲେ ଗେଜେଟେଡ୍ ଚାକିରି ମିଳିଯିବା କଷ୍ଟକର ନ ଥାଏ । ତେଣୁ ସେଥିକି ଅପେକ୍ଷା କରି ଗାଁକୁ ଯାଇ ନବପ୍ରତିଷ୍ଠିତ ହାଇସ୍କୁଲରେ ଶିକ୍ଷକତାରେ ପେଟ ପୋଷିବା ସାର ହେଲା । ଗୋଖେଲ ସାହେବ ସରକାରଙ୍କର ପରାମର୍ଶଦାତା । ମନ୍ତ୍ରୀମଣ୍ଡଳ ଭାଙ୍ଗି ଦିଆଯାଇ ୧୯୩୫ ଭାରତ ଶାସନ ଆଇନର ୯୩ ଧାରା ଅନୁସାରେ ରାଜ୍ୟପାଳ ଶାସନ ଚାଲୁଥାଏ । ଆଡଭାଇଜରଠାରୁ ଜଣେ ଉଚ୍ଚ ପଦାଭିଷିକ୍ତ ଅଧିକାରୀ ଜାଣିଥାନ୍ତି ଯୁଦ୍ଧ ଓ ଯୁଦ୍ଧୋତ୍ତର ଆବଶ୍ୟକତା ଦୃଷ୍ଟିରେ ରଖି ୧୯୪୫ ମସିହାରେ ସବଡ଼େପୁଟି ନିଯୁକ୍ତି ବେଶୀ ହେବ । ଡେପୁଟି କଲେକ୍ଟର ସିଧା ନିଯୁକ୍ତି ପ୍ରଦେଶ ଗଠନ ଦିନୁ ବନ୍ଦ ହୋଇଥାଏ । ପ୍ରତିବର୍ଷ ଖୁବ୍ ହେଲେ ୫/୬ ଜଣ ନିଯୁକ୍ତି ପାଆନ୍ତି । ସେ ବର୍ଷ ଏହାର ଦ୍ୱିଗୁଣ ଚାକିରି ପାଇବାର ସଂଭାବନା ଥାଏ । ବିହାର ଓଡ଼ିଶା ଓ ମଧ୍ୟ ପ୍ରଦେଶ ନିମିତ୍ତ ଗୋଟିଏ ଜଏଣ୍ଟ ପବ୍ଲିକ୍ ସର୍ଭିସ୍ କମିସନ ଥାଏ । ୩ ଜଣ ସଭ୍ୟ ପ୍ରତି ପ୍ରଦେଶରୁ ଜଣେ ଲେଖାଏଁ ।

ସେମାନଙ୍କର ହେଡ଼କ୍ୱାଟର ଥାଏ ରାଞ୍ଚିରେ । ସେମାନେ ଆବଶ୍ୟକତା ଅନୁସାରେ ପ୍ରତି ପ୍ରଦେଶ ଗସ୍ତ କରି ପରାମର୍ଶ ଦେଇଥାନ୍ତି । କମିସନରେ ଓଡ଼ିଶାରୁ ଆଗରୁ ଲକ୍ଷ୍ମୀଧର ମହାନ୍ତି କଟକ, ରାମକୃଷ୍ଣ ରଥ ବ୍ରହ୍ମପୁରର ସଭ୍ୟ ଥିଲେ । ୧୯୪୫ ବେଳକୁ ଓଡ଼ିଶା ଭାଗରେ ଚେୟାରମ୍ୟାନ ପଦ ପଡ଼ିଲା । ଓଡ଼ିଶାର ସଭ୍ୟ ଅବସରପ୍ରାପ୍ତ ପୋଲିସ ଆଇ.ଜି. ଇ.ଏ ପରକସନ୍ ଆଇ.ପି. । ଚାକିରି ଦରଖାସ୍ତ ସାଙ୍ଗରେ ଜିଲ୍ଲା ମାଜିଷ୍ଟ୍ରେଟଙ୍କଠାରୁ ସଦାଚରଣ ସାର୍ଟିଫିକେଟ୍ ଦାଖଲ କରିବାକୁ ହେବ । ପୁଣି ଦୁଇଜଣ ନିରପେକ୍ଷ ବ୍ୟକ୍ତିଙ୍କର ନାମ ଦେବ । ଯେଉଁମାନେ ପ୍ରାର୍ଥୀଙ୍କୁ ଜାଣିଥିବେ ଓ ଆବଶ୍ୟକସ୍ଥଳେ ତାଙ୍କର ଅତୀତର ବ୍ୟକ୍ତିଗତ ଆଚରଣ ଓ କାର୍ଯ୍ୟକଳାପ ସରକାରଙ୍କୁ ଜଣାଇବେ । ଡାକ୍ତର ସାର୍ଟିଫିକେଟ ମଧ୍ୟ ଦରକାର । ଅବଶ୍ୟ ପରେ ପୁଣି ନିଯୁକ୍ତି ପୂର୍ବରୁ ମେଡ଼ିକାଲ ବୋର୍ଡ଼ ତାଙ୍କ ସ୍ୱାସ୍ଥ୍ୟ ଉତ୍ତମ ଅଛି ଓ ସେ ଖରାକାକରରେ କ୍ଷେତ୍ର ଉପରେ କାର୍ଯ୍ୟ କରି ପାରିବେ ବୋଲି କହିବେ । ଡକ୍ଟର ଅଧ୍ୟାପକ ବିଦ୍ୟାଧର ମିଶ୍ର ପରେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ହେଲେ । ପାଟଣା ବିଶ୍ୱବିଦ୍ୟାଳୟରୁ ଅର୍ଥନୀତିରେ ଏମ୍.ଏରେ ପ୍ରଥମ ଶ୍ରେଣୀରେ ପ୍ରଥମ । ୧୯୪୪ ମସିହାରେ ବଛାଗଲେ ମାତ୍ର ମେଡ଼ିକାଲ ବୋର୍ଡ଼ ତାଙ୍କୁ ସ୍ୱାସ୍ଥ୍ୟଗତ କାରଣରୁ ଅନୁପଯୁକ୍ତ କହିଲା । ସେ କଲିକତାର ବିଶେଷଜ୍ଞଙ୍କଠାରୁ ତାଙ୍କର ହୃଦରୋଗ ନ ଥିବା ଓ ସେ ସଂପୂର୍ଣ୍ଣ ବାହାର କାର୍ଯ୍ୟପାଇଁ ଉପଯୁକ୍ତ ପ୍ରମାଣ ଦେବା ସତ୍ତ୍ୱେ ଏହା ମେଡ଼ିକାଲ ବୋର୍ଡ଼ର ଗ୍ରହଣ ଯୋଗ୍ୟ ହେଲା ନାହିଁ । ତେଣୁ ସରକାର ନିଯୁକ୍ତି ଦେଲେ ନାହିଁ । ଡକ୍ଟର ମିଶ୍ର ୮୭ ବର୍ଷ କର୍ମଠଭାବେ ବଞ୍ଚି ନିକଟରେ ପ୍ରାଣତ୍ୟାଗ କଲେ । ଦରଖାସ୍ତ ପରେ ୧୯୪୫ ଶେଷ ଆଡ଼କୁ କମିସନ କଟକ ଆସି ପ୍ରାର୍ଥୀ ନିର୍ବାଚନ କଲେ । ୧୨ ଜଣ ପ୍ରଥମ ଦଫାରେ ବଛାଗଲେ । ସେମାନେ ୧୯୪୬ ଫେବୃଆରୀ ମାସରେ ନିଜ କାର୍ଯ୍ୟରେ ଯୋଗ ଦେଲେ ।

ସିଧାସଳଖ ଓ ପ୍ରମୋସନ ପାଇଥିବା ପ୍ରାର୍ଥୀ, ଗଡ଼ଜାତର ଦେୱାନ ସହକାରୀ ଦେୱାନ କେତେଜଣଙ୍କ ସହିତ ୩ ମାସ ଅନୁଗୁଳରେ ଆଇନ ଟ୍ରେନିଂ ସହିତ ସର୍ଭେ ଓ ବନ୍ଦୋବସ୍ତ କାର୍ଯ୍ୟପ୍ରଣାଳୀ ଶିକ୍ଷା କଲେ । ସବଡ଼େପୁଟିମାନଙ୍କୁ ବିଭିନ୍ନ ଜିଲ୍ଲାକୁ ପଠାଇ ଦିଆଗଲା । ଶାସନର କାର୍ଯ୍ୟ ସେ ଯୁଗରେ ଖଜଣା ଅସୁଲ ଓ ଶାସନରେ ଆଇନ ଶୃଙ୍ଖଳା ରକ୍ଷା ମୁଖ୍ୟ ଥାଏ । ଘରୋଇ ବିଭାଗ ସେମାନଙ୍କର ପରିଚାଳନା କରୁଥାଏ ଓ ଖୋଦ ଚିଫ୍ ସେକ୍ରେଟ୍ରେରୀ ଏହି ବିଭାଗର ସର୍ବୋଚ୍ଚ କର୍ତ୍ତା । ଆଉ ଜଣେ ଆଇସିଏସ୍ ଅଣ୍ଡର ସେକ୍ରେଟ୍ରେରୀ ତାଙ୍କୁ ସାହାଯ୍ୟ କରନ୍ତି । ନିଯୁକ୍ତି ପତ୍ର ସହିତ ସେମାନଙ୍କୁ ମାଜିଷ୍ଟ୍ରେଟ କ୍ଷମତା ଦିଆଯାଉଥାଏ । ମୂଳରୁ ତୃତୀୟ ଶ୍ରେଣୀ ମାଜିଷ୍ଟ୍ରେଟଙ୍କ କ୍ଷମତା । ଏକମାସ ଜେଲ, ପଚାଶ ଟଙ୍କା ଜୋରିମାନା । କେଉଁ ଅପରାଧ ତାଙ୍କ ବିଚାର ଯୋଗ୍ୟ ତାହା

ବିଭିନ୍ନ ଆଇନରେ ଲିପିବଦ୍ଧ ଥାଏ । ଦ୍ୱିତୀୟ ଶ୍ରେଣୀ ହେଲେ ଛମାସ ଜେଲ ଓ ଦୁଇଶ ଟଙ୍କା ଜୋରିମାନା କ୍ଷମତା ମିଳେ । ପ୍ରଥମ ଛ ମାସର ଅଭିଜ୍ଞତା ଓ କାର୍ଯ୍ୟକୁ ବିଚାର କରି ୨ୟ ଶ୍ରେଣୀ କ୍ଷମତା ମିଳେ । ତା ପୂର୍ବରୁ ଆଇନରେ ମଧ୍ୟ ବିଭାଗୀୟ ପରୀକ୍ଷା ଅନ୍ତତଃ ନିମ୍ନ ଷ୍ଟାଣ୍ଡାର୍ଡ଼ରେ ପାସ କରିବାକୁ ହେବ । ପ୍ରଥମ ଶ୍ରେଣୀଙ୍କର କ୍ଷମତା ଦୁଇବର୍ଷ ଜେଲ ଓ ହଜାରେ ଟଙ୍କା ଜୋରିମାନା କାଳକ୍ରମେ ତାଙ୍କୁ ସମରି ପାୱାର Summary Power ମିଳେ । ତାହାହେଲେ ବେଶି ସାକ୍ଷ୍ୟ ପ୍ରମାଣ ଲେଖାଲେଖି ଦରକାର ପଡ଼େ ନାହିଁ । କେଉଁ ଧରଣର ଅପରାଧ ଏ ପଦ୍ଧତିରେ ବିଚାରଯୋଗ୍ୟ ତାହା ଫୌଜଦାରୀ କାର୍ଯ୍ୟବିଧି ଆଇନରେ ମଧ୍ୟ ଲିପିବଦ୍ଧ ଥାଏ ।

ଜିଲ୍ଲା ବା ସବଡ଼ିଭିଜନ ମହକୁମାରେ ମାଜିଷ୍ଟ୍ରେଟ ମକଦ୍ଦମା ବିଚାର କରନ୍ତି । ତା ସହିତ ଅଫିସର ଏକ ବା ବେଶୀ ସେକସନ୍‌ର ଦାୟିତ୍ୱରେ ରହି ଜିଲ୍ଲାପାଳଙ୍କୁ ଉପଜିଲ୍ଲାପାଳଙ୍କୁ ସାହାର୍ଯ୍ୟ କରନ୍ତି । ତହସିଲଦାର ବ୍ୟବସ୍ଥା ଦକ୍ଷିଣ ଓଡ଼ିଶାରେ ଓ ଉତ୍ତର ଓଡ଼ିଶାର ଖାସମାହାଲକୁ ସୀମାବଦ୍ଧ । ଯେଉଁମାନେ ଟୁର ଚାହାନ୍ତି ନାହିଁ ସେମାନେ ପ୍ରାୟ ମକଦ୍ଦମା ବିଚାର ମୁଖ୍ୟ କାମ ଧରିନିଅନ୍ତି । ୨ୟ ଓ ୩ୟ ଶ୍ରେଣୀ ମାଜିଷ୍ଟ୍ରେଟଙ୍କ ନିଷ୍ପତ୍ତି ଉପରେ ଅପିଲ ଜିଲ୍ଲାପାଳ ବା ଅତିରିକ୍ତ ଜିଲ୍ଲାପାଳ ଶୁଣନ୍ତି । ପ୍ରଥମ ଶ୍ରେଣୀଙ୍କର ଅପିଲ ଜିଲ୍ଲାଜଜ୍ ଶୁଣନ୍ତି । ବେଳେବେଳେ ପ୍ରଥମ ଶ୍ରେଣୀ ମାଜିଷ୍ଟ୍ରେଟ ଅଭାବ ଦେଖାଇ ୨ୟ ଶ୍ରେଣୀ ମାଜିଷ୍ଟ୍ରେଟଙ୍କୁ ସ୍ୱତନ୍ତ୍ର କ୍ଷମତା ନେଇ କେତେକ ପ୍ରଥମ ଶ୍ରେଣୀ ବିଚାରଯୋଗ୍ୟ ଅପରାଧ ବିଚାର କରିବାକୁ ଲଗାଯାଏ । ତାହାହେଲେ ଅପିଲ ଜିଲ୍ଲାପାଳ ଶୁଣିପାରିବେ । ମକଦ୍ଦମା ରାୟ ପୁଲିଶ କେଶ୍ ହୋଇଥିଲେ ପୁଲିଶ ସୁପରିଟେଣ୍ଡଙ୍କ ପାଖକୁ ଯାଏ । ତଳ କୋର୍ଟରେ ମକଦ୍ଦମା କୋଟ ବାବୁ (ସବଇନିସପେକ୍ଟର) ଚଳାଇଥାଆନ୍ତି । ଅପିଲ ବେଳେ କୋଟ ଇନ୍ସପେକ୍ଟର ଜବାବ ସୁଆଲ କରନ୍ତି । ନକଲ ଦେଖି ପୁଲିଶ ସାହେବ ଜିଲ୍ଲାମାଜିଷ୍ଟ୍ରେଟଙ୍କୁ ଦଣ୍ଡ ଯଥେଷ୍ଟ କି ନା ଓ ଖଲାସ ଆଇନ ସମ୍ମତ ବା ଯୁକ୍ତିଯୁକ୍ତ ହୋଇଛି କି ନା ତାହା ଜଣାନ୍ତି ଓ ଜିଲ୍ଲାପାଳ ଦରକାର ହେଲେ ମାଜିଷ୍ଟ୍ରେଟଙ୍କର ବକ୍ତବ୍ୟ ତା ଉପରେ ଦେଖନ୍ତି । ମକଦ୍ଦମା ବିଳମ୍ବ ହେଲେ ତ୍ରୈମାସିକ ଜିଲ୍ଲାପାଳଙ୍କର ସମୀକ୍ଷା ପରେ ତ୍ୱରାନ୍ୱିତ କରିବାକୁ ନିର୍ଦ୍ଦେଶ ରହେ । ବର୍ଷକୁ ଦୁଇଥର ହାଇକୋର୍ଟ ମଧ୍ୟ ବର୍ଷକରୁ ଉର୍ଦ୍ଧ୍ୱ ପଡ଼ି ରହିଥିବା ମକଦ୍ଦମାମାନଙ୍କର ବିଚାର ବିଳମ୍ବର କୈଫିୟିତ ମାଜିଷ୍ଟ୍ରେଟଙ୍କୁ ମାଗିଥାଆନ୍ତି । ବିଚାରା ମାଜିଷ୍ଟ୍ରେଟ ଦିଆଡୁ ଫଏସଲା ପାଇ ଚାପର ସମ୍ମୁଖୀନ ହୁଏ । ତାର ମନେ ପଡ଼େ "ଚଇତା, ଦିମାଇପର ଘଇତା, ପଖାଳ ଖାଇବୁ, ତବତ ଖାଇବୁ, ବେଳ ଥାଉ ଥାଉ କହିଥା" । ଯୁକ୍ତିଯୁକ୍ତ କୈଫିୟିତ ନ ଥିଲେ ହାଇକୋର୍ଟ ମାଜିଷ୍ଟ୍ରେଟଙ୍କ କାର୍ଯ୍ୟପ୍ରଣାଳୀ ଉପରେ ଜିଲ୍ଲାପାଳଙ୍କୁ ମଧ୍ୟ ଚିଠି ଲେଖିଥାନ୍ତି । ସମ୍ବଲପୁରରେ ଦ୍ୱିତୀୟ ଶ୍ରେଣୀ କ୍ଷମତା ମୁଁ

ପାଏ ତା ପୂର୍ବରୁ ନବରଙ୍ଗପୁରରେ ତୃତୀୟ ଶ୍ରେଣୀ କ୍ଷମତା ମିଳିଥିଲା । କେତୋଟି ରାୟ ଲେଖିଥିଲି ଅପିଲ ଶୁଣିଲେ ଏସଡ଼ିଓ ସ୍ଥଳାଭିଷିକ୍ତ ଏଜେଣ୍ଟ SAA । ତାଙ୍କର କ୍ଷମତା ଆସିଷ୍ଟାଣ୍ଟ ସେସନ ଜଜ୍ ଓ ସିଭିଲ୍ ସବଜଜ୍ ଥାଏ । ସେ ମଧ୍ୟ ଦ୍ୱିତୀୟ ଓ ତୃତୀୟ ଶ୍ରେଣୀ ମାଜିଷ୍ଟ୍ରେଟଙ୍କର ଅପିଲ ଶୁଣନ୍ତି । ତାଙ୍କ ପାଖରେ ମାଜିଷ୍ଟ୍ରେଟ ଟ୍ରେନିଂ ନେବାବେଳେ ସେ ପରାମର୍ଶ ଦେଇଥାଆନ୍ତି ଖରାପ ରାୟ ଲେଖୁ ଲେଖୁ ଭଲ ନିଷ୍ପତ୍ତି କରିବାର କ୍ଷମତା ଆସେ । ଭାଷାର ସୌଷ୍ଠବ ସହିତ ଆଇନ ତର୍ଜମାର ସୂକ୍ଷ୍ମତା ନିଜ ଅଭିଜ୍ଞତାରୁ ଆସେ । ତେଣୁ ତମର ଦୋଷ ତ୍ରୁଟି ପ୍ରଥମରୁ ଅନ୍ୟ ନଜରକୁ ଆସି ସମାଲୋଚିତ ହେଲେ ଏହା ଶିକ୍ଷାଦେବ । ସମ୍ବଲପୁରରେ ଆସି ଦ୍ୱିତୀୟ ଶ୍ରେଣୀ କ୍ଷମତା ପାଇଲି । ୧୯୪୮ ମସିହାରେ ପୋଖତ ଅଫିସରମାନେ ବିଭିନ୍ନ ଗଡ଼ଜାତମାନଙ୍କୁ ପଠାହୋଇଗଲେ । ସେଠାକାର ଅଫିସରମାନଙ୍କୁ କାର୍ଯ୍ୟ-ସୁଯୋଗ ଦେବା ପୂର୍ବରୁ କର୍ମଠତା ଓ ନିଷ୍ଠାର ପରୀକ୍ଷା କରାଗଲା । ତେଣୁ ସେମାନେ କମ କାମ ପାଇଥାଆନ୍ତି । ଟ୍ରେନିଂ ସମୟରେ ଜଣେ ଅଫିସର ପ୍ରଥମ ଶ୍ରେଣୀ ମାଜିଷ୍ଟ୍ରେଟ ବିଚାରକରୁଥିବା ବିବାଦୀୟ ଚାରୋଟି ମକଦ୍ଦମା ଓ ଜଜ୍‌କୋର୍ଟରେ ବିଚାର ହେଉଥିବା ଦୁଇଟିର ବିଚାର ସମୟରେ ହାଜର ରହି ପଦ୍ଧତି ଓ ସାକ୍ଷ୍ୟଗ୍ରହଣ ଆଇନ ଉପରେ ନିଜ ବକ୍ତବ୍ୟ ସହିତ ଏକ ନଥି ପ୍ରସ୍ତୁତ କରନ୍ତି । ଏହା ଆଇନ ବିଭାଗକୁ ପଠାଯାଇ ବିଧି ବିଶେଷଜ୍ଞ (ଲିଗାଲ ରିବେଂ ବ୍ରାନସାର)ଙ୍କ ଦ୍ୱାରା ସମୀକ୍ଷା କରାଯାଏ । ତାହା ମାଜିଷ୍ଟ୍ରେଟଙ୍କୁ ନିଜ ଦକ୍ଷତା ବୃଦ୍ଧି ଓ ଅଧିକ କ୍ଷମତା ଉପଭୋଗ କରିବାର ସୁଯୋଗ ଦିଏ । ରେକର୍ଡ଼ମାନ ଆଇନ ବିଭାଗ ଦ୍ୱାରା ଗୃହୀତ ନ ହୋଇଥିଲେ ବୃଦ୍ଧି ଦରମା ଓ ଅଧିକ କ୍ଷମତା ବନ୍ଦ ରଖାଯାଏ । ରେକର୍ଡ଼ ଗୃହୀତ ନହୋଇ ଫେରି ଆସିଲେ ବର୍ଣ୍ଣିତ ତ୍ରୁଟିମାନ ସଂଶୋଧନ କରି ପୁଣି ଦାଖଲ କରିବାକୁ ହୁଏ । ମୋର ସୌଭାଗ୍ୟକୁ ମୋର ପ୍ରସ୍ତୁତ ରେକର୍ଡ଼ ଯାଞ୍ଚ ସମୟରେ ଏ ଦିଗରେ ଦକ୍ଷତା ନିମିତ୍ତ ପ୍ରଶଂସାସୂଚକ ପତ୍ର ଆଇନ ବିଭାଗରୁ ରେକର୍ଡ଼ ଫେରାଇବା ସହିତ ଜିଲ୍ଲାମାଜିଷ୍ଟ୍ରେଟଙ୍କ ପାଖକୁ ଆସିଲା । ଏହା ମତେ ବିଚାର ବିଭାଗୀୟ କାର୍ଯ୍ୟ ପ୍ରତି ବିଶେଷ ଆକୃଷ୍ଟ କଲା । ମୋର ସେତେବେଳେ ଆଇନରେ ଡିଗ୍ରି ନ ଥାଏ । ସମ୍ବଲପୁରରେ ତିନି ବର୍ଷ ପରେ ମୁଁ ବଲାଙ୍ଗିରର ଟିଟିଲାଗଡ଼ରେ ମାଜିଷ୍ଟ୍ରେଟ ପ୍ରଥମ ଶ୍ରେଣୀ ହେଲି ।

ନୂତନ ସମ୍ବିଧାନ ପ୍ରଣୀତ ହେବା ପରେ ସରକାର ଶାସନ ଓ ବିଚାର ବିଭାଗକୁ ଅଲଗା କରିବାକୁ ନିଷ୍ପତ୍ତି ନେଇଥାଆନ୍ତି । ଏହା ସାମ୍ବିଧାନିକ ନିର୍ଦ୍ଦେଶ । ଆଇନ ସଂଶୋଧନ ନ କରି ବିଭାଗୀୟ ବ୍ୟବସ୍ଥା ଦ୍ୱାରା ଏହା ଅଳ୍ପ ଖରଚରେ କିପରି କରାଯିବ ଏଥିପାଇଁ ଓଡ଼ିଶା ସରକାର ଗୋଟିଏ କମିଟି ବସାଇଲେ । ବୋର୍ଡ଼ ଅଫ ରେଭିନ୍ୟୁ ଅଧ୍ୟକ୍ଷ ନୀଳମଣି ସେନାପତି ଓ ଜଷ୍ଟିସ୍ ଆର ଏଲ ନରସିଂହମ ଏହି କମିଟିର ସଭ୍ୟ ଥିଲେ । ସେମାନେ

ବିଭିନ୍ନ ମହକୁମାକୁ ଯାଇ ଏ ବିଷୟରେ ତଥ୍ୟ ସଂଗ୍ରହ କଲେ । ଉତ୍ତର ଓଡ଼ିଶା ଡ଼ିଭିଜନର ଦୁଇଟି ବେଶି ଫୌଜଦାରୀ ମକଦ୍ଦମା ବିଚାରକୁ ଆସୁଥିବା ବରଗଡ଼ ଓ ଟିଟିଲାଗଡ଼ ସବଡ଼ିଭିଜନ୍ ସେମାନେ ପରିଦର୍ଶନ କଲେ । ଜଷ୍ଟିସ୍ ନରସିଂହମ୍ ଏକା ଟିଟିଲାଗଡ଼ ଗଲେ । ବିଭିନ୍ନ ସମସ୍ୟା ସ୍ଥାନୀୟ ଓକିଲ ପ୍ରତିନିଧିମାନଙ୍କ ସହିତ ଆଲୋଚନା କରି ପୃଥକୀକରଣ କିପରି କରି ହେବ ତାହା ବୁଝିଲେ । କିଛି ସମୟ ବଳିଲା । ହଠାତ୍ ନିଷ୍ପତ୍ତି କଲେ ଗୋଟିଏ ମାଜିଷ୍ଟ୍ରେଟ କୋର୍ଟ ପରିଦର୍ଶନ କରିବେ । ଚଳନ୍ତି ରେକର୍ଡ଼ ଦୁଇଟି ଓ ରେକର୍ଡ଼ରୁମରୁ ଫଏସଲା ହୋଇଥିବା ଦୁଇଟି ରେକର୍ଡ଼ ମଗାଇ ସେ ଯାଞ୍ଚ କଲେ । କୌଣସି ଅମଲା ତାଙ୍କ ସାଙ୍ଗରେ ନ ଥାଏ । ନଥିରୁ ଆଦେଶ ଦେଖି ସେଇ ଅନୁସାରେ ରେଜିଷ୍ଟରମାନ ଯାଞ୍ଚ କରି ସେ କାର୍ଯ୍ୟରେ ସନ୍ତୋଷ ପ୍ରକାଶ କଲେ । ଏକମାତ୍ର ପ୍ରଥମ ଶ୍ରେଣୀ ମାଜିଷ୍ଟ୍ରେଟଭାବରେ ମକଦ୍ଦମା ମୋ ଅଦାଲତରେ ବହୁତ । ତା ସହିତ ମୁଁ ଏସଡ଼ିଓ ନ ଥିବାବେଳେ ତାଙ୍କ କାମ କରେ । ମୁଁ ସବଟେଜେରୀ ଅଫିସର, ସବରେଜିଷ୍ଟାର ଇତ୍ୟାଦି ଥାଏ । ଜଷ୍ଟିସ ନରସିଂହମ୍ କଟକରେ ଆସିଷ୍ଟାଣ୍ଟ କଲେକ୍ଟର ଭାବରେ କାର୍ଯ୍ୟ ଆରମ୍ଭ କରିଥିଲେ । ଜିଲ୍ଲା ମାଜିଷ୍ଟ୍ରେଟ ଓ ଜିଲ୍ଲାଜଜ୍ ହୋଇ ବିହାର ଓଡ଼ିଶାରେ କାମକରି ଆଇନ ବିଭାଗ ସଚିବଥିବାବେଳେ ୧୯୪୮ ମସିହାରେ ହାଇକୋର୍ଟ ଜଜ୍ ହେଲେ । ଡେପୁଟି, ସବଡ଼େପୁଟି କଲେକ୍ଟରମାନଙ୍କର କାର୍ଯ୍ୟପ୍ରଣାଳୀ ଓ ଦ୍ୱରାନିଷ୍ପତ୍ତି ନେବାର ମନୋବୃତ୍ତି ଉପରେ ତାଙ୍କର ଖୁବ୍ ବିଶ୍ୱାସ ଥାଏ । ଯାଞ୍ଚ ଶେଷରେ ମତେ କହିଲେ 'ତମେ ସବଡେପୁଟି, ବିଚାର ବିଭାଗ ଅଲଗା ହେଲେ ସେଠାରେ ସୁଯୋଗ ବେଶି ମିଳିବ । ତେଣୁ ତୁମର ଆଇନଗତ ଯୋଗ୍ୟତା ହାସଲ କରିବା ବାଞ୍ଛନୀୟ' । ଭାରତରେ ସେତେବେଳେ କୌଣସି ବିଶ୍ୱବିଦ୍ୟାଳୟ ଆଇନ ପରୀକ୍ଷା ଘରୋଇଭାବରେ ଦେବାକୁ ସୁଯୋଗ ଦେଉ ନ ଥାଏ । ମାତ୍ର ପାଟଣା ବିଶ୍ୱବିଦ୍ୟାଳୟରୁ ଅଲଗା ହୋଇ ଗଠିତ ବିହାର ବିଶ୍ୱବିଦ୍ୟାଳୟ ବିହାରରେ ଥିବା ଓଡ଼ିଆ ଡେପୁଟି କଲେକ୍ଟର ରଘୁମଣି ପଟ୍ଟନାୟକ ପରେ ବାରିଷ୍ଟର ଓ ଓଡ଼ିଶାର ଉଦୟନାଥ ରଥ (ପରେ ଆଇଏଏସ୍)ଙ୍କୁ ସେମାନଙ୍କର ମାଜିଷ୍ଟ୍ରେଟ ଯୋଗ୍ୟତା ଦୃଷ୍ଟେ ବିଶେଷ ଅନୁମତି ଦେଇଥାଏ । ସେହି ନଜିର ଦେଖାଇ ମୁଁ ମଧ ଅନୁମତି ପାଇଲି ଓ ଶତକଡ଼ା ୬୬ ନମ୍ବର ରଖି ବି.ଏଲ୍ ପାସ କଲି । ଶାସନ ବିଭାଗରେ ପୁଲିଶ ମକଦ୍ଦମାରେ ମୁଦାଲା ଖଲାସ ହେଉଥିଲେ ଏହା ଯୁକ୍ତିଯୁକ୍ତ କାରଣ ଉପରେ ନିର୍ଦ୍ଧାରିତ ଥିଲେ ମଧ ପୁଲିଶ ସରକାରଙ୍କୁ ଲେଖି ମାଜିଷ୍ଟ୍ରେଟଙ୍କୁ ଅବାଞ୍ଛିତ ମନେ କରୁଥିଲେ । ଅନେକ କ୍ଷେତ୍ରରେ ଜିଲ୍ଲାପାଳମାନେ ମଧ ଏ ରିପୋର୍ଟ ଦ୍ୱାରା ପ୍ରଭାବିତ ହୋଇ ଅଫିସରଙ୍କର ଦକ୍ଷତା ନିର୍ଦ୍ଧାରିତ ସମୟରେ ପ୍ରତିକୂଳ ମତ ପ୍ରଦାନ କରୁଥିଲେ । ଦୁର୍ବଳ ଜିଲ୍ଲାମାଜିଷ୍ଟ୍ରେଟ ଚିଠିପାଇ ଅଧସ୍ତନ ମାଜିଷ୍ଟ୍ରେଟଙ୍କୁ ଡାକି ସାକ୍ଷ୍ୟ ପ୍ରମାଣର ଯଥେଷ୍ଟତା ବିଚାର ନ କରି ମୁଦାଲାକୁ ଦୋଷୀ ଘୋଷଣା କରି ଦଣ୍ଡ ଦେବାକୁ ନିର୍ଦ୍ଦେଶ ଦେଉଥିଲେ । ଅବଶ୍ୟ ମୋ

ଭାଗ୍ୟରେ ଏମିତି କିଛି ଘଟି ନ ଥିଲା । ମାତ୍ର ଜଣେ ଅସାଧୁ ଅତିରିକ୍ତ ଜିଲ୍ଲାପାଳ ମିଳିଲେ । ସେ ଡ଼େପୁଟି କଲେକ୍ଟର ଚାକିରି ଆରମ୍ଭ କରିବାର ଦୁଇ ବର୍ଷ ଭିତରେ ପୈତୃକ ଆୟ ଶୂନ୍ୟ ଥାଇ କଟକ ସହରରେ ନିଜର କୋଠା ତିଆରି କରିଥିଲେ । ଏପରି ଅସାଧୁ ପଦାଧିକାରୀରୂପେ ସୁପରିଚିତ ଏଡ଼ିଏମ୍ କୌଣସି ମକଦ୍ଦମାରେ ବିଶେଷକରି ଯଦି ମୁଦାଲା ଧନୀ ଥାଏ ତାହାହେଲେ ଆସାମୀ ଖଲାସ ହେଲେ ରାୟ ନ ପଢ଼ି ଆଇନଗତ ଦିଗପ୍ରତି ଦୃଷ୍ଟି ନ ଦେଇ ମାଜିଷ୍ଟ୍ରେଟ ପଇସା ଖାଇଯାଇଛି ଏ ଧାରଣା ସୃଷ୍ଟିକରାନ୍ତି । ଖଲାସ ବିରୁଦ୍ଧରେ ଅପିଲ ପାଇଁ କୌଣସି ଯୁକ୍ତଯୁକ୍ତ ତଥ୍ୟ ନ ଥାଏ । ମୋର ବିଶେଷ କ୍ଷତି କରିବାକୁ ଅକ୍ଷମ ହୋଇ ଶେଷରେ ସେ ମତେ ଶୁଣାଇଲେ ଯେ ତାଙ୍କୁ ମୁଁ ସନ୍ତୁଷ୍ଟ କରିବା ଉଦ୍ୟମ କରୁନାହିଁ ମାତ୍ର ମୋର ଅକ୍ଷମତା ଦେଖି ଶେଷରେ ଏଥିରୁ ନିବୃତ୍ତ ହେଲେ ।

ଟିଟିଲାଗଡ଼ରେ ଗୋଟିଏ କମ୍ପାନୀ ମକଦ୍ଦମା ପଡ଼ିଲା । ଅପରାଧୀ ଧାନକଳ ମାଲିକ ଏହି କମ୍ପାନୀ ପ୍ରତିବର୍ଷ ଯେଉଁ ରିପୋର୍ଟ କମ୍ପାନୀ ରେଜିଷ୍ଟ୍ରାରଙ୍କ ପାଖକୁ ପଠାଇବା କଥା ତାହା ପଠାଇ ନାହାନ୍ତି । କଂପାନୀ ପୂର୍ବତନ ପାଟଣା ଷ୍ଟେଟରେ ରେଜିଷ୍ଟ୍ରି ହୋଇଥିଲା । ମିଶ୍ରଣ ପରେ ଏହା ପ୍ରାୟ ଅକାମି ହୋଇଥିଲା । ସମନ ପାଇ ମୁଦାଲା କଲିକତାରୁ ଆସି ହାଜର ହେଲେ । ତାଙ୍କ ଓକିଲ ଥିଲେ ପରେ ହାଇକୋର୍ଟ ଜଜ୍ ବାଳକୃଷ୍ଣ ବେହେରା । ସେ ଦୋଷ ମାନିନେଲେ । ତାଙ୍କୁ ଜୋରିମାନା କରି ଛାଡ଼ି ଦିଆଗଲା । ଆଇନଗତ ନିର୍ଦ୍ଦେଶ ପୁରଣରେ କିଛି ତ୍ରୁଟି ନ ଥାଏ । ଫଏସଲା ପରେ ରେକର୍ଡ଼ର ନଥି ଉତ୍ତରାଞ୍ଚଳ କମିସନର (ରାଜସ୍ୱ ପରିଷଦର ସଦସ୍ୟ) ମାଗିଲେ । ସେ ମଧ୍ୟ ରେଜିଷ୍ଟ୍ରାର କମ୍ପାନୀଭାବରେ ଅଭିଯୋଗକାରୀ । ରେକର୍ଡ଼ (GRCO) Vol-1. Criminal 1949 Edn. Rule 48, Part III, Chap 6 । ତତ୍କାଳୀନ ହାଇକୋର୍ଟ ନିୟାମାବଳୀ ଅନୁସାରେ କେବଳ ତଳ ଅଦାଲତରୁ ଜିଲ୍ଲା ମାଜିଷ୍ଟ୍ରେଟ ଅପିଲକୋଟ ବା ସିଭିଲ୍ କୋର୍ଟ ତଲବ କଲେ ସେଠାକୁ ପଠାଯାଇପାରିବ । ରେକର୍ଡ଼ ପଠାଇ ଦେଇଥିଲେ ଚଳି ଥାଆନ୍ତା ମାତ୍ର ମୋର ଅନଭିଜ୍ଞତା ଓ ନିୟମାବଳୀ ପ୍ରତି ଗଭୀର ନିଷ୍ଠା ବିବେକକୁ ବାଧା ଦେଲା । ହାଇକୋର୍ଟ ନିୟମାବଳୀର ସଂପୃକ୍ତ ନିୟମ ତାଙ୍କ ଦୃଷ୍ଟିକୁ ଆଣିଲି । ନଥିପତ୍ର ତେଣୁ ପଠାଗଲା ନାହିଁ । କିଛିଦିନ ପରେ ପୁଣି ସେଇ ରେକର୍ଡ଼ ପଠାଇବାକୁ ଚିଠି ଆସିଲା । ଏଥର ତା ସହିତ ଉକ୍ତ ହାଇକୋର୍ଟ ନିର୍ଦ୍ଦେଶାବଳୀର ସଂଶୋଧନ ମଧ୍ୟ ଆସିଥାଏ । ମୋର ଯୁକ୍ତିଯୁକ୍ତ ଆପତ୍ତି ଜାଣି ସେ ହାଇକୋର୍ଟକୁ ଲେଖିଲେ । ରୁଲ୍ କମିଟି ବସି ସଂଶୋଧନ କଲା । ଉକ୍ତ ରୁଲର ଗୋଟିଏ ବ୍ୟତିକ୍ରମ ଯୋଡ଼ାଗଲା । ଏହି ନିର୍ଦ୍ଦେଶ ରାଜସ୍ୱ ପରିଷଦର ସଦସ୍ୟ ପ୍ରତି ପ୍ରଜୁଜ୍ୟ ନୁହେଁ । କମିସନର ପଦବୀ ମେମ୍ବର ସି.ଟି. ବୋର୍ଡ଼ ଅଫ ରେଭିନ୍ୟୁ ଭାବରେ ନାମିତ ହୋଇଥାଏ । ଏହି ସାମାନ୍ୟ ଆପତ୍ତି ମୋର ଭାଗ୍ୟ ପରିବର୍ତ୍ତନ କଲା । ରାଜସ୍ୱ ପରିଷଦ ସଦସ୍ୟ ମୋର

ନିୟମ ପାଳନରେ ନିଷ୍ଠା ଅପେକ୍ଷା ମୋର ଖୋଦ କମିସନରଙ୍କର ନିର୍ଦ୍ଦେଶ ମାନ୍ୟ ନ କରିବାର ଧୃଷ୍ଟତା ସବୁଦିନ ପାଇ ମନେରଖିଲେ । କେମିତି ପାନେ ଦେବେ ସେଇ ସୁଯୋଗ ଅପେକ୍ଷାରେ ରହିଲେ ।

ଟିଟିଲାଗଡ଼ରେ ଜଣେ ମାରୱାଡ଼ି ଲୁହା ବ୍ୟବସାୟୀ ଥିଲେ । ତାଙ୍କର ଆଉ ଜଣେ ଖଣି ବ୍ୟବସାୟୀଙ୍କ ସହିତ ପ୍ରତିଦ୍ୱନ୍ଦିତା ଥାଏ । ଦ୍ୱିତୀୟ ଜଣକ ପଞ୍ଜାବୀ । ନାନା ପ୍ରକାରର ବିଦେଶୀ ମୂଲ୍ୟବାନ ପାନୀୟ ଦ୍ୱାରା ଉଚ୍ଚ ପଦାଧିକାରୀମାନଙ୍କୁ ସନ୍ତୁଷ୍ଟ କରିବା ତାଙ୍କ ସାମାଜିକ ଖ୍ୟାତି ଥାଏ । ରାଜଧାନୀରୁ ଗଲେ କୌଣସି ଉଚ୍ଚ ପଦାଧିକାରୀ ତାଙ୍କର ଆତିଥ୍ୟ ନିମିତ୍ତ ନିମନ୍ତ୍ରଣ ପାଉଥିଲେ । ସ୍ଥାନୀୟ ପୁଲିଶ ସାହେବ ଏହି ପାନୀୟ ଲାଭ ଫଳରେ ତାଙ୍କର ବଚସ୍କର ଏହା ତାଙ୍କର ତଳିଆ ପୁଲିଶ ଅଫିସରମାନେ ମଧ୍ୟ ଜାଣି ଥାଆନ୍ତି । ସେ ପ୍ରକାର ଦୁର୍ବ୍ୟବହାରରେ ଅତିଷ୍ଠ ହୋଇ ଧନୁର୍ଦ୍ଧର ରାଉତ ବୋଲି ଜଣେ ଉଦୀୟମାନ ସବଇନ୍ସପେକ୍ଟର ଚାକିରି ଛାଡ଼ିଦେଲେ ଓ ଓକିଲାତି କରି ପ୍ରତିଷ୍ଠା ଅର୍ଜନ କଲେ । ପଞ୍ଜାବୀ ବ୍ୟବସାୟୀ ଓ ଅସାଧୁ ପୁଲିଶ ସାହେବଙ୍କ ମେଣ୍ଟ ସର୍ବ ସାଧାରଣଙ୍କୁ ଅଜଣା ନ ଥାଏ । ଲୁହା ବ୍ୟବସାୟୀଙ୍କ ଖୋଲା ମାଲ ଘରପଛପଟ ପଡ଼ିଆରେ । ସେଠାରେ ରେଳବାଇରୁ ହଜିଯାଇଥିବା କିଛି ଲୁହା ପକାଇ ଦିଆଗଲା । ମାଲ ତଲାସି ହୋଇ ମିଳିଲା । ଚୋରାମାଲ୍ ରଖିଥିବା ଅପରାଧରେ ତାଙ୍କ ନାମରେ କେଶ୍ ରଜୁ କରାଗଲା । ଦିବା ୪ ଟାରେ ସାଧାରଣତଃ କୋର୍ଟ ଓ ଅଫିସ ବନ୍ଦ ହୁଏ । ତାଙ୍କୁ ଚାରିଟା ପରେ ଜାଣିଶୁଣି ଗିରଫ କରାଗଲା । ଉଦ୍ଦେଶ୍ୟ ଯେପରି ସେ ଦିନ ତାଙ୍କୁ କଚେରୀରେ ହାଜର କରାଯାଇ ନ ପାରିବ ଓ ସେ ଜାମିନ ଆଣିପାରିବେ ନାହିଁ । ଚବିଶ ଘଣ୍ଟା ସେ ପୁଲିଶ ହାଜତରେ ରହି ପାରିବେ । ସେ ବୋଧହୁଏ ଏହାର ସୁରାକ ଆଗରୁ ପାଇଥିଲେ । ତେଣୁ ଓକିଲ ମଧ୍ୟ ଠିକ୍ ରଖିଥାଆନ୍ତି । ଉପଜିଲ୍ଲାପାଳ (ଏସଡ଼ିଏମ୍) ଜଣେ ଦୁର୍ବଳମନା ପୂର୍ବତନ ଗଡ଼ଜାତର ଅଫିସର । ତାଙ୍କୁ ଜିଲ୍ଲା ପୁଲିଶ ସୁପରିଟେଣ୍ଡ ଜାମିନ ନ ଦେବାକୁ କହିଥାନ୍ତି । ଆଇନ ଆସାମୀ ସପକ୍ଷରେ । ଧର୍ତ୍ତବ୍ୟ ଅପରାଧ ଜାମିନ ଯୋଗ୍ୟ ପୁଣି ଆସାମୀ ଜାମିନରେ ଗଲେ ପଳାତକ ହେବାର ସଂଭାବନା ଆଦୌ ନ ଥାଏ । ପୂର୍ବରୁ ମହୀପ୍ରକାଶ ମଠ କେଶ୍‌ରେ ଚିଫ୍ ଜଷ୍ଟିସ ବୀର କିଶୋର ରାୟ ଜାମିନ ଦେବାରେ ଉଦାର ହେବାକୁ ନିର୍ଦ୍ଦେଶ ଦେଇଥାନ୍ତି । ଉପଜିଲ୍ଲାପାଳ ଜାମିନ ନ ଦେବାର ଯୁକ୍ତିଯୁକ୍ତ କାରଣ ନ ଦେଖି କଚେରୀକାମ ସରିବା ପରେ ଚୁପ୍‌ଚାପ୍ ଟୁର୍‌ରେ ଚାଲିଗଲେ । ସେଇଟା ତାଙ୍କର ଅଭ୍ୟାସ ଥାଏ । କାମ ସାରି ଡାକ ବଙ୍ଗଳାରେ ରାତ୍ରି ଯାପନ ଗସ୍ତଖର୍ଚ୍ଚ ଅର୍ଜନରେ ମଧ୍ୟ ଲାଭଦାୟକ । ଓକିଲ ଦୟାନିଧି ହୋତା ପରେ ଜିଲ୍ଲା ଜଜ୍ ଓ ଆଇନ ବିଭାଗ ସଚିବଭାବେ ଅବସର ନେଲେ । ସେ ତାଙ୍କୁ ଖୋଜି ବୁଲିଲେ । ଘରେ ନ ଥିବାରୁ ଅପେକ୍ଷା କଲେ ।

ସେତେବେଳେ ଟ୍ରେଜେରୀ ମଧ୍ୟ ବ୍ୟାଙ୍କ କାମ କରୁଥାଏ । ଦୁଇ ତରଫରୁ ହିସାବ ନ ମିଳିବା ପର୍ଯ୍ୟନ୍ତ ମତେ ଅଫିସରେ ବସିବାକୁ ପଡ଼େ । ୬ଟା ପର୍ଯ୍ୟନ୍ତ ମୁଁ ଅଫିସରେ ଥାଏ । ମୋତେ ତାଙ୍କ ଅନୁପସ୍ଥିତିରେ ଜାମିନ ଦରଖାସ୍ତ ବିଚାର ପାଇଁ କୁହାଗଲା । ମୁଁ ଭଲଭାବେ ପୁଣି ଖୋଜା ଲୋଡ଼ା କରି ତାଙ୍କୁ ଦେଖିବାକୁ କହିଲି । ସେ ଅପେକ୍ଷା କଲେ । ହାକିମଙ୍କ ପେସ୍କାର ସେ ଟୁରରେ ଯାଇଥିବା କହିଲେ । ଜଣେ କାଠବୁହା ଟ୍ରକର ଡ୍ରାଇଭର ତାଙ୍କ ଗାଡ଼ି (ଜିପ ORR 8 ) ୧୫/୨୦ ମାଇଲ ଦୂର ଜଙ୍ଗଲ ଡାକବଙ୍ଗଳା ପାଖରେ ଦେଖିଥିବା କହିଲେ । ଓକିଲ ଅପେକ୍ଷା କଲେ । ମୁଁ ମଧ୍ୟ ୧୦ଟା ପରେ ଆସାମୀର ସମ୍ମାନ ରକ୍ଷା ଦୃଷ୍ଟେ ଜାମିନ ଦେବା ଉଚିତ୍ ଭାବି ଆଦେଶ ଦେଲି । ଆସାମୀକୁ ଗିରଫ ହୋଇଛି କି ନାହିଁ ତାକୁ କୁହାଯାଇନଥାଏ । ମାତ୍ର ତାକୁ ଥାନାରେ ଅଯଥା ଅଟକା ଯାଇଥାଏ । ସେତେବେଳେ Anticipatory Bail ନୂଆ ଚାଲୁଥାଏ । ଆଜିକାଲି ପରି ତାହା ଏତେ ସାଧାରଣ ଭାବରେ ବ୍ୟବହୃତ ହେଉ ନ ଥାଏ । ଜିଲ୍ଲାମାଜିଷ୍ଟ୍ରେଟ ନୂତନ ସଂବିଧାନ ପ୍ରଣୟନ ପରେ ବ୍ୟକ୍ତିଗତ ସ୍ୱାଧୀନତା ରକ୍ଷା କେତେ ଗୁରୁତ୍ୱପୂର୍ଣ୍ଣ ତାହା ଦର୍ଶାଇ ଜାମିନ ଦରଖାସ୍ତ ଅବିଳମ୍ବେ ଫଏସଲା ନିମିତ୍ତ ସବୁ ମାଜିଷ୍ଟ୍ରେଟମାନଙ୍କୁ ଏକ ନିର୍ଦ୍ଦେଶନାମା ପଠାଇଥାଆନ୍ତି । ଜାମିନ ଦରଖାସ୍ତରେ କୌଣସି ମନ୍ଦ ଅଭିପ୍ରାୟ ନ ଥିବା ଦର୍ଶାଇବାକୁ ସମୟ ମଧ୍ୟ ରାତି ସାଢ଼େ ଦଶଟା ବୋଲି ଲେଖାଗଲା । ଆସାମୀ ଜାମିନ ପାଇଲେ । ସର୍ତ୍ତ ପରଦିନ ପୁଣି କଚେରୀରେ ହାଜର ହେବ । ପୁଲିଶ ସାହେବ ବଙ୍ଗଳାରେ ଅପେକ୍ଷାରେ ଥାଆନ୍ତି ତାଙ୍କ ବନ୍ଧୁଙ୍କୁ ସାହାର୍ଯ୍ୟ ନିମିତ୍ତ । ଖଲାସ ହୁକୁମ ତାଙ୍କୁ ବାଧିଲା । ସେ ପରଦିନ ସେଇ ଦୁର୍ବଳମନା ଗଡ଼ଜାତ ହାକିମଙ୍କୁ  ଡାକି ଭର୍ତ୍ସନା କଲେ । ଉତ୍ତରରେ ସେ କହିଲେ ମୁଁ ବାହାରକୁ ଯାଇନାହିଁ । ଘରେ ଥିଲି । ମୋର ଅଧସ୍ତାନ ମାଜିଷ୍ଟ୍ରେଟ ଏ ପ୍ରକାର ଦୁଷ୍କର୍ମ କରିଛନ୍ତି । ଉତ୍ତରରେ ସେ ମଧ୍ୟ ଲେଖିକରି ଏହା ଜିଲ୍ଲାମାଜିଷ୍ଟ୍ରେଟଙ୍କୁ ଜଣାଇଦେଲେ । ତାଙ୍କଠାରୁ ଚିଠି ପାଇ ମୁଁ ଉଚିତ୍ କୈଫିୟତ ଦେଲି ଉପଜିଲ୍ଲାପାଳ ଅନୁପସ୍ଥିତ ଥିବା ଓକିଲଙ୍କ ବୟାନରୁ ସ୍ପଷ୍ଟ ଓ ମୋର ପରଦିନ ଆସାମୀ ତାଙ୍କ ପାଖେ ହାଜର ହେବା ଆଦେଶର ଯୌକ୍ତିକତା ତାଙ୍କୁ ଜଣାଇଲି । ସେ କୌଣସି କାର୍ଯ୍ୟାନୁଷ୍ଠାନରୁ ବିରତହେଲେ । ସମ୍ବଲପୁର ରାଜସ୍ୱ ପରିଷଦ ସଭ୍ୟ ଦୈବାତ ଟୁରରେ ଥାଇ ଏ ବିଷୟରେ ଅବଗତ ହେଲେ । ପୂର୍ବ ଅନମନିୟତାଯୁକ୍ତ ଆଚରଣ ଯୋଗୁ ଉପରିସ୍ଥ ପଦାଧିକାରୀଙ୍କୁ ଜାଣିଶୁଣି ଅପ୍ରସ୍ତୁତ ଓ ଅପଦସ୍ଥ କରିବା ମୋର ଉଦ୍ଦେଶ୍ୟଥିବ ବୋଲି ସେ ଧରିନେଲେ । ତାଙ୍କଠାରୁ ଚିଠିପାଇ ଏସଡ଼ିଓ ନିଜ ପକ୍ଷ ସମର୍ଥନ ଓ ମୋର ଦୁର୍ବୃତ୍ତ ଆଚରଣର ବିସ୍ତୃତ ବର୍ଣ୍ଣନା କରି ନିଜ ଦୋଷ ଛଡ଼ାଇବାକୁ ରିପୋର୍ଟ ଦେଲେ । ମୋ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଆରମ୍ଭ ହେଲା । ଅପରାଧ ତ୍ରୁଟିପୂର୍ଣ୍ଣ ଆଦେଶ । ଅଥଚ ପରବର୍ତ୍ତୀ ଦିବସରେ ନିଜେ ଏସଡ଼ିଓ ମଧ୍ୟ ମୁଁ ଦେଇଥିବା ସର୍ତ୍ତରେ ଆସାମୀକୁ ଜାମିନ ଦେଲେ । ମୋ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ

ହୋଇ ପାରିବ କି ନା ଏ ସଂକ୍ରାନ୍ତରେ ରାଜସ୍ୱ ପରିଷଦରୁ ଆଇନ ବିଭାଗର ମତାମତ ଲୋଡ଼ାଗଲା । ସେମାନେ ଜଣାଇଲେ ନ୍ୟାୟିକ କର୍ମ ସଂପାଦନାରେ ମନ୍ଦ ଉଦ୍ଦେଶ୍ୟ ନ ଥାଇ ତ୍ରୁଟିପୂର୍ଣ୍ଣ ଆଦେଶ ଦେଲେ ମଧ ମାଜିଷ୍ଟ୍ରେଟଙ୍କ ବିରୁଦ୍ଧରେ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ହୋଇପାରିବ ନାହିଁ । ମାତ୍ର ଆଇନ ବିଭାଗର ମତାମତ ରାଜସ୍ୱ ପରିଷଦ ସଭ୍ୟଙ୍କର ଗ୍ରହଣୀୟ ହେଲାନାହିଁ । ଅଥଚ ସେ ନିଜେ ଥରେ ଆଇନ ବିଭାଗତ ମତାମତ ଯୋଗୁ ଅମର୍ଯ୍ୟାଦା ସୂଚକ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନରୁ ବର୍ତ୍ତିଯାଇଥିଲେ ।

ମିଷ୍ଟର ଶିବରମଣ ICS ତତ୍କାଳୀନ ପରିଷଦ ସଭ୍ୟ ୧୯୩୮ ମସିହାରେ ବ୍ରହ୍ମପୁରର ସବକଲେକ୍ଟର ଓ ଜଏଣ୍ଟ ମାଜିଷ୍ଟ୍ରେଟ ଥିଲେ । ଜିଲ୍ଲାମାଜିଷ୍ଟ୍ରେଟ ଥିଲେ ପ୍ରମୋସନ ପାଇ ନିଯୁକ୍ତ ଅନନ୍ତରାମ ରଥ । ସରକାରୀ ଓକିଲ ନିଯୁକ୍ତିରେ ସେ ପକ୍ଷପାତିତା କରିଛନ୍ତି ଓ କଂଗ୍ରେସ ମନ୍ତ୍ରୀମଣ୍ଡଳର ନିକଟ ଉମାଚରଣ ପଟ୍ଟନାୟକଙ୍କୁ ନିଯୁକ୍ତି ଦେଇଛନ୍ତି ଅଥଚ ଆଉ ଜଣେ ଓକିଲ ଲିଙ୍ଗରାଜ ପାଣିଗ୍ରାହୀ ଏଥିପାଇଁ ଅଧିକ ଯୋଗ୍ୟ । ତାଙ୍କର ଏହି ଆଚରଣ ଯୋଗୁ କଂଗ୍ରେସ ମନ୍ତ୍ରୀମଣ୍ଡଳ ଅନନ୍ତରାମ ରଥଙ୍କୁ ଅବସର ପ୍ରଦାନ ନ କରି ତାଙ୍କ କାର୍ଯ୍ୟକାଳ ବଢ଼େଇ ଦେଇଛି । ଏହି ପ୍ରକାର ସମ୍ବାଦ ଓଡ଼ିଶାର ଏକମାତ୍ର ଇଂରେଜି ଦୈନିକ 'ନିଉ ଓଡ଼ିଶା'ରେ ପ୍ରକାଶ ପାଇଲା । ଏହାର ସଂପାଦକ ଥିଲେ ଶଶିଭୂଷଣ ରଥ । ଜିଲ୍ଲାମାଜିଷ୍ଟ୍ରେଟ ସମ୍ବାଦପତ୍ର ବିରୁଦ୍ଧରେ ତା ୪.୩.୩୮ରେ ମାନହାନୀ ମକଦ୍ଦମା ଦାଏର କଲେ । ଏହାର କେଶ ନମ୍ବର ଥିଲା CC No.19/38 । ଏହା ପ୍ରଦେଶରେ ଚାଞ୍ଚଲ୍ୟ ସୃଷ୍ଟି କଲା ଓ ଏହା ନିଉ ଓଡ଼ିଶା ମାନହାନୀ ମକଦ୍ଦମା ନାମରେ ପରିଚିତ । ମକଦ୍ଦମା ବିଚାର କରିବାର ଥିଲା ଆଉ ଜଣେ ମାଜିଷ୍ଟ୍ରେଟ ଦୟାନିଧି ପଟ୍ଟନାୟକଙ୍କର । ଶିବରମଣ କେବଳ ଏଜେନ୍ସି ଏରିଆର ମକଦ୍ଦମା ବିଚାର ପାଇଁ ଜଏଣ୍ଟ ମାଜିଷ୍ଟ୍ରେଟ ଥିଲେ । ସେ ମକଦ୍ଦମା ନଥି ମଗାଇ ଆଣି ନିଜେ ବିଚାର ପାଇଁ ରଖିଲେ । ତାଙ୍କ କହିବା ଅନୁସାରେ ଦୟାନିଧି ନିଜେ ତାଙ୍କୁ ଏ ମକଦ୍ଦମା ବିଚାର ପାଇଁ କହିଲେ । ବିଚାର ହେଲା । ଆସାମୀକୁ ଖଲାସ କରି ଦିଆଗଲା । ପ୍ରମୋସନ ପ୍ରାପ୍ତ ଓଡ଼ିଆ ଜିଲ୍ଲାମାଜିଷ୍ଟ୍ରେଟଙ୍କୁ ଭର୍ତ୍ସନା କରିବାକୁ ସେ ମଧ ଛାଡ଼ିଲେ ନାହିଁ । ରାୟ ଚହଳ ପକାଇଲା । ସରକାର ଖଲାସ ଆଦେଶ ବିରୁଦ୍ଧରେ ପାଟଣା ହାଇକୋର୍ଟରେ ଅପିଲ କଲେ । ଏହି ଅପିଲ ନଂ ୨/୧୯୩୯ ଜଷ୍ଟିସ ନୁର ଓ ଚିଫ ଜଷ୍ଟିସ ହାରିସ ଶୁଣିଲେ । ସଂପାଦକ ନିଜ ସୀମା ଲଂଘନ କରି ସମାଲୋଚନା କରିଛନ୍ତି ବୋଲି ମତ ଦେଲେ । ତଳ କୋର୍ଟ ରାୟ ଓଲଟାଇ ଆସାମୀକୁ ଦୋଷୀ ସାବ୍ୟସ୍ତ କଲେ ଓ ତାଙ୍କୁ ଶହେ ଟଙ୍କା ଜୋରିମାନା ସାବ୍ୟସ୍ତ କଲେ । ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାସ । ତଳକୋର୍ଟ ରାୟ ପଢ଼ି ଗଞ୍ଜାମର ପ୍ରଥମ ଓଡ଼ିଆ ଜିଲ୍ଲାମାଜିଷ୍ଟ୍ରେଟଙ୍କୁ ଭର୍ତ୍ସନା ତାଙ୍କ ଓଡ଼ିଆ ସ୍ୱାଭିମାନକୁ ଆଘାତ ହେଲା ।

ସେ ଶିବରମଣଙ୍କ ଆଚରଣରେ କ୍ଷୁବ୍ଧ ହେଲେ । ଆଇନ ବିଭାଗରେ ସଚିବ ସି.ଗୋବିନ୍ଦନ ଅନୁଚିତଭାବରେ ଆସାମୀଙ୍କୁ ଖଲାସ କରିଥିବାରୁ ମାଜିଷ୍ଟ୍ରେଟଙ୍କ ବିରୁଦ୍ଧରେ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ନିମିତ୍ତ ପରାମର୍ଶ ଦେଲେ । ଚିଫ ସେକ୍ରେଟ୍ରେରୀ ଏମ୍.କେ,ଭେଲୋଡ଼ି । ସେ ନ୍ୟାୟିକ ବ୍ୟବସ୍ଥାରେ କାର୍ଯ୍ୟ କରୁଥିବାବେଳେ ତଥାକଥିତ ତ୍ରୁଟି ଘଟାଇଥିବାରୁ ଚିଫ୍ ଜଷ୍ଟିସଙ୍କର ପରାମର୍ଶ ଲୋଡ଼ିଲେ । ସେ ମତ ଦେଲେ ଅପିଲରେ ଆଦେଶ ଓଲଟା ଯାଇଥିଲେ ମଧ୍ୟ ଆଦେଶ ଇର୍ଷାସୂଚକ ବା ବିକୃତ ବୋଲି ପ୍ରମାଣିତ ହୋଇ ନାହିଁ । ତେଣୁ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ନ କରିବାକୁ ପରାମର୍ଶ ଦେଲେ । ଆଇନଙ୍କ ମତ ମିଳିଲା ଯୋଗୁ ଶିବରମଣ ମୁଖ୍ୟମନ୍ତ୍ରୀଙ୍କ କ୍ରୋଧର ଶିକାର ହୋଇ ପାରିଲେ ନାହିଁ । ଏହା ସେ ନିଜର ଆତ୍ମଜୀବନୀ 'ତିକ୍ତ ମଧୁର' (Bitter Sweet) ରେ ବର୍ଣ୍ଣନା କରିଅଛନ୍ତି । ନିଜେ ଆଇନ ପରାମର୍ଶ ଯୋଗୁ ଉପକୃତ ମାତ୍ର ଅନ୍ୟ ଉପରେ ନିଜର କ୍ରୋଧ ଆଇନସଚିବଙ୍କ ମତାମତକୁ ଅସମ୍ମାନ କଲା । ମୋ ବିରୁଦ୍ଧରେ ଅଭିଯୋଗ ପତ୍ର ଆସିଲା । ଆଦେଶ ବେଆଇନ । ଉପଜିଲ୍ଲାପାଳଙ୍କ ଉପସ୍ଥିତିରେ ମୁଁ ଆଦେଶ ଦେବା ଅନୁଚିତ୍ ଥିଲା । ମତେ ସାମୟିକ କାର୍ଯ୍ୟଚ୍ୟୁତି କରାଗଲା । କୈଫିୟିତ ଦେବାକୁ ୧୫ ଦିନ ସମୟ ଦିଆଯାଇଥିଲେ ମଧ୍ୟ ୭ ଦିନ ମଧ୍ୟରେ ମୁଁ ଜବାବ ଦେଲି । ପୂର୍ବରୁ ଲିଗାଲ ପ୍ରଫେସନ ଆକ୍ଟ ଅନୁସାରେ ମୁଁ ଅନୁଚିତ ଆଚରଣ ନିମିତ୍ତ ଓକିଲ ଦୟାନିଧି ହୋତାଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷନ କରିଥାଏ । ସେ ସାକ୍ଷ୍ୟ ଦେଇ ପ୍ରମାଣ କଲେ ଏସଡ଼ିଓ ଘରେ ନ ଥିଲେ । ଜିଲ୍ଲାମାଜିଷ୍ଟ୍ରେଟ ଓ ଜିଲ୍ଲା ଜଜ୍ ଉଭୟ କାର୍ଯ୍ୟନୁଷ୍ଠାନ ନିମିତ୍ତ କୌଣସି କାରଣ ନ ଥିବା କହି ତାଙ୍କୁ ଏଥିରୁ ମୁକ୍ତ କଲେ ଓ ଏହା ପରେ ସେ ସରକାରୀ ଚାକିରିରେ ମୁନସଫ୍ ଭାବେ ଯୋଗଦେଲେ । ତେଣୁ ଏସଡ଼ିଓ ନ ଥିବା ପ୍ରମାଣିତ ହୋଇଥାଏ । ମୋର ଆଦେଶ ସଂପୂର୍ଣ୍ଣ ଆଇନ ସଙ୍ଗତ ବୋଲି ଦର୍ଶାଇ ମୁଁ ବିଭିନ୍ନ ହାଇକୋର୍ଟରେ ନିଜରମାନ ଦାଖଲ କଲି । ତଥାପି ମୋର କୈଫିୟିତ ଗୃହୀତ ନ ହୋଇ ନିଷ୍ପତ୍ତି ଦିଆ ନ ଯାଇ ୧୮ ମାସ ପର୍ଯ୍ୟନ୍ତ ମତେ ସେପରି ସସପେନସନରେ ରଖାଗଲା ଓ ଏହି ସମୟ ମଧ୍ୟରେ ତିନି ଗୋଟି ବ୍ୟାଚରେ ବହୁସଂଖ୍ୟକ ସବଡେ଼ପୁଟି ପ୍ରମୋସନ ପାଇଲେ । ଏହା ପରେ ମୋତେ ଦୋଷ ମୁକ୍ତ ଘୋଷଣା କରାଗଲା । ୧୮ ମାସ ପରେ ଅବଶ୍ୟ ଉକ୍ତ ରାଜସ୍ୱ ପରିଷଦ ସଭ୍ୟ ସମ୍ବଲପୁରରୁ ବଦଳି ହୋଇଯାଇଥାଆନ୍ତି । ତିନି ଜଣିଆ ରାଜସ୍ୱ ପରିଷଦ ଏହି ଫଏସଲା କଲେ । ମୋର ଚରିତ୍ର ପଞ୍ଜିକାରେ ମୁଁ ଦୋଷମୁକ୍ତ ହେବା ଲିପିବଦ୍ଧ କରା ନ ଯାଇ ତିନି ଥର ଏହି ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ଲେଖାଯାଇଥିଲା । ୧୯୫୬ ମସିହାରେ ଆଇଏଏସ୍ ବିଶେଷ ନିଯୁକ୍ତି ସମୟରେ ଲିଖିତ ପରୀକ୍ଷାରେ ମୁଁ ଶତକରା ୬୨ ନମ୍ବର ପାଇଥିବାବେଳେ ଏହି ତଥାକଥିତ ଗର୍ହିତ ଆଚରଣ କେନ୍ଦ୍ର ପବ୍ଲିକ୍ ସର୍ଭିସ କମିସନକୁ ଜଣାଇ ମତେ ନିଯୁକ୍ତିରୁ ବଞ୍ଚିତ କରାଗଲା । ଏ ହେଲା ଉଦାହରଣ

ଉଚ୍ଚ ପଦାଧିକାରୀ ସେମାନଙ୍କର ଉଗ୍ର ଅହଂଭାବ ଆଘାତ ପାଇଲେ କି ପ୍ରକାର ନୀଚ ଓ ହିଂସ୍ର ଆଚରଣ ଦେଖାଇପାରନ୍ତି । ଶାସନ ବିଭାଗର ଏହି ନିଷ୍ଠୁରତା ମୋତେ କାର୍ଯ୍ୟପ୍ରତି ବିରାଗ ଆଣିଲା । ବିଚାର ବିଭାଗ ପୃଥକୀକରଣ ସୁଯୋଗକୁ ଅପେକ୍ଷା କରି ରହିଲି ।

"ଅଧମବ୍ୟକ୍ତି ହୁଏ ଧନାଭିଳାଷୀ,
ମଧ୍ୟମ ହୁଏ ଧନମାନ ପ୍ରତ୍ୟାଶୀ,
ଉତ୍ତମ ବ୍ୟକ୍ତି ଏକା ଲୋଡ଼ଇ ମାନ
ମାନମହତଧନ ବୁଝେ ପ୍ରବୀଣ"।
-ଚାଣକ୍ୟ

୧୯୬୦ ଅପ୍ରେଲ ମାସରେ ମୁଁ ପଦୋନ୍ନତି ପାଏ । ୧୯୬୦ ମେ ମାସ ପହିଲାରେ ଉପକୂଳବର୍ତ୍ତୀ ତିନିଗୋଟି ଜିଲ୍ଲାରେ ବିଚାର ବିଭାଗ ଅଲଗା ହେବା ପ୍ରକ୍ରିୟା ଆରମ୍ଭ ହୁଏ । ମୋର ସୌଭାଗ୍ୟ ଏହି ଯୋଜନାକୁ କାର୍ଯ୍ୟକାରୀ କରିବାରେ ମୁଖ୍ୟ ଭୂମିକା ଥିବା ଜଷ୍ଟିସ୍ ନରସିଂହମ ସେତେବେଳକୁ ହାଇକୋର୍ଟ ମୁଖ୍ୟ ବିଚାରପତି । ସେ ଟିଟିଲାଗଡ଼ର ସେହି ମାଜିଷ୍ଟ୍ରେଟକୁ ମନେ ରଖିଥିଲେ । ବିଶେଷ ଅଧିକାରୀ (ସ୍ପେଶାଲ ଅଫିସର) ଜଣେ ପୁରୁଖା ଜିଲ୍ଲାଜଜ୍ ମତେ ଜାଣିଥିଲେ ଓ ମୋର ସେବା ଆଇନ ବିଭାଗକୁ ବଦଳାଇବାରେ ସହାୟକ ହେଲେ । ମୁଁ ଭଦ୍ରକର ସବଡ଼ିଭିଜନାଲ ମାଜିଷ୍ଟ୍ରେଟ ଭାବରେ ଯୋଗଦେଲି । ଉପଜିଲ୍ଲାପାଳ ଖାଲି ସବଡ଼ିଭିଜନାଲ ଅଫିସର ରହିଲେ । ବହୁତ ପୁରୁଣା ଫୌଜଦାରୀ ମକଦ୍ଦମା ପଡ଼ି ରହିଥାଏ । ଆମେ ତିନି ଜଣ ଅଫିସର ଶାସନ ବିଭାଗରୁ ଯାଇଥିଲୁ । ସେମାନଙ୍କ ଉଦ୍ୟମରେ ବରଷକରୁ ବେଶି ଆୟୁଷର କୌଣସି ମକଦ୍ଦମା ଆଉ ବିଚାର ପାଇ ରହିଲା ନାହିଁ । । ଏହା ସ୍ପେଶାଲ ଅଫିସର (ପରେ ଜଷ୍ଟିସ) ବାଳକୃଷ୍ଣ ପାତ୍ର ମୋର ବାର୍ଷିକ କାର୍ଯ୍ୟ ସମୀକ୍ଷାରେ ବିଶେଷ ଉଲ୍ଲେଖ କରିଥିଲେ ଓ ପ୍ରତି ତିନିମାସ ସମୀକ୍ଷାରେ ସବୁଠାରୁ ବେଶି ସାକ୍ଷୀର ଇଜହାର ନେଉଥିବା ଯୋଗୁ ମାନ୍ୟବର ହାଇକୋର୍ଟ ମଧ୍ୟ ମତେ ପ୍ରଶଂସା କରି ଚିଠି ପଠାଇଲେ । ବରଷକ ପରେ ବଦଳି ଭୁବନେଶ୍ୱର । ସେଠାରେ ମଧ୍ୟ ତିନି ବରଷ ଭିତରେ ସବୁ ବରଷିକିଆ ବାକିଆ ମକଦ୍ଦମାମାନ ସଫା ହୋଇ ଗଲାରୁ ପ୍ରଶଂସାପତ୍ର ମିଳିଥିଲା । ବଦଳି ହେଲା ବ୍ରହ୍ମପୁର । ଏହା ମଧ୍ୟରେ ସମ୍ମତିପତ୍ର ବିଚାର ବିଭାଗକୁ ଯିବାକୁ ମଗାଗଲା ଓ ମୁଁ ସମ୍ମତି ପଠାଇଦେଇଥାଏ । ମୋର ବିଶ୍ୱାସ ଥାଏ ଶାସନ ବିଭାଗରେ ଯେଉଁପ୍ରକାର ଅନୁଚିତ ବ୍ୟବହାର ଉଚ୍ଚ ଅଧିକାରୀମାନଙ୍କଠାରୁ ପାଇଛି ତାହା ବିଚାର ବିଭାଗରେ ମିଳିବ ନାହିଁ ଓ ସମ୍ମାନର ସହିତ "ଜି ହଜୁର ଖଇର ଖାଁ" ନ ହୋଇ ଆଉ ୧୬ ବର୍ଷ ଚାକିରିରେ କଟାଇବାକୁ ପଡ଼ିବ । ଯେଉଁମାନେ ବିଚାର ବିଭାଗରେ ରହିବାକୁ ସମ୍ମତ ହେଲେ ସେମାନେ ଏହା ଦ୍ୱାରା ନିଜର ଆର୍ଥିକ କ୍ଷତିର ଜ୍ଞାତ ଥାଆନ୍ତି ।

ଶାସନ ବିଭାଗରେ ବିଶେଷ ନିଯୁକ୍ତି ମିଳେ । ଅନ୍ୟତ୍ର ଡେପୁଟେସନରେ ଯିବା ଓ ଅଧିକ ବେତନ ଆଦିର ସୁଯୋଗ ଥାଏ । ମାତ୍ର ବିଚାର ବିଭାଗରେ ସ୍ୱାଧିନ ଜୀବନ ଓ ନିଜ ଦକ୍ଷତାର ଉପଯୁକ୍ତ ମୂଲ୍ୟାୟନ ଆଶ ସବୁରି ଦୃଢ଼ ଥାଏ । ସବୁ ଜାଗାରେ ଏସଡ଼ିଓମାନଙ୍କର ଘର ଥାଏ ଓ ତାହା ସେମାନେ ବିନା ଭଡ଼ାରେ ଉପଭୋଗ କରନ୍ତି । ଭୁବନେଶ୍ୱରରେ ଏକ ସରକାରୀ ଘରେ ଥାଇ ଏସଡ଼ିଏମ୍ ଏସଡ଼ିଓ ସମପଦବୀ ହେତୁ ଘରଭଡ଼ା ଛାଡ଼ି ଦେବାକୁ ମୁଁ ପ୍ରସ୍ତାବ ଦେଲି । ଘରୋଇ ବିଭାଗ ହୁଏତ ଏହା ମଞ୍ଜୁର କରିଥାଆନ୍ତେ । ମାତ୍ର ବିଚାର ବିଭାଗର ଅନ୍ୟ ଅଫିସରମାନେ ଏ ସୁଯୋଗ ନ ପାଉଥିବାରୁ ମୋର ପ୍ରସ୍ତାବ ସମର୍ଥିତ ନ ହୋଇ ଏ ବିଷୟରେ ସରକାରଙ୍କ ନ ଜଣେଇବାକୁ ମତେ ତାଗିଦ୍ କରାଗଲା । କି ପ୍ରକାର ସୁବିଧା ହରାଇଲୁ ଏହା ତାହାର ଏକ ଉଦାହରଣ ।

୧୯୪୬ ମଇ ମାସରେ ବ୍ରହ୍ମପୁରରେ ଯୋଗଦେଲି । ସରକାରୀ ଘର ନ ଥାଏ । ଘରଭଡ଼ା ଖୁବ୍ ବେଶୀ । ତଥାପି ସରକାରୀ ଘର ଖାଲି ହେଲେ ପାଇବି ଏହି ଆଶାରେ ଭଡ଼ା ଘରେ ରହିଲି । ଜଣେ ବିଚାର ବିଭାଗୀୟ ଅଫିସର ଏଡ଼ିଏମ୍ ଜୁଡ଼ିସିଆଲ ପଦବୀରେ ତଳ ମାଜିଷ୍ଟ୍ରେଟଙ୍କର କାର୍ଯ୍ୟ ନିରୀକ୍ଷକ ନିମିତ୍ତ ନିଯୁକ୍ତ ହୋଇ ଅବସ୍ଥାପିତ ହୋଇଥାଆନ୍ତି । ଜିଲ୍ଲାଜଜ୍ ମଧ ବ୍ରହ୍ମପୁରରେ ଥାଆନ୍ତି ଯଦିଓ ଜିଲ୍ଲାମାଜିଷ୍ଟ୍ରେଟ ଛତ୍ରପୁରରେ ରହନ୍ତି । ଅବିଭକ୍ତ ମାନ୍ଦ୍ରାଜ୍ ପ୍ରଦେଶରେ ସୁପ୍ରିମ୍‌କୋର୍ଟ ଜଜ୍ ଭାବରେ ଭାରତ ବିଖ୍ୟାତ ଜଷ୍ଟିସ ଏନ ଚନ୍ଦ୍ରଶେଖର ଆୟାର ଓ ତାଙ୍କ ଭଳି ଅନେକ ବିଜ୍ଞ ଆଇସିଏସ ଓ ନ୍ୟାୟବିଦ ପୂର୍ବରୁ ଏହି ପଦବୀ ମଣ୍ଡନ କରି ଏହାର ଏକ ଗୌରବାନ୍ୱିତ ପରମ୍ପରା ସୃଷ୍ଟି କରି ଯାଇଛନ୍ତି । ଦଶଏକର ପରିମିତ ହତାରେ ତାଙ୍କର ବାସସ୍ଥାନ । ଏଥିରୁ ତାଙ୍କ ପଦ ଗୌରବ ସୂଚିତ ହୁଏ । ମୁଁ ଯୋଗଦାନ ସମୟରେ ଜଣେ ଓଡ଼ିଆ ଜିଲ୍ଲାଜଜ୍ ଥାଆନ୍ତି । ତାଙ୍କର ବିଶେଷ ଗର୍ବ ସେ ତଳୁ ଉଠି ନାହାନ୍ତି, ସିଧା ସଳଖ ଜର୍ଜୟତି ପାଇଛନ୍ତି । କେହି ଜଣେ ମଜ୍ଜାଳିଆ ଲୋକ କହିଛନ୍ତି ଜଜ୍ ଦୁଇ ପ୍ରକାରର । କେତେକ ଆଇନ ଜାଣିଥାନ୍ତି ଆଉ କେତେକ ଆଇନ ମନ୍ତ୍ରୀଙ୍କୁ ଜାଣିଥାନ୍ତି । ମୋର ଜିଲ୍ଲାଜଜ୍‌ଙ୍କ ଯୋଗ୍ୟତା ଓଡ଼ିଶାର ଏକ ଆଂଶିକ ବହିର୍ଭୁତ ଅଞ୍ଚଳରେ ସେ ଦୀର୍ଘ ଦିନ ଓକିଲାତି କରି ଥାଆନ୍ତି । ଭାରତ ଶାସନ ଆଇନ ୧୯୩୫ ଅନୁସାରେ ଏହି ଅଞ୍ଚଳ ମାନଙ୍କରେ ନିୟମିତ ଦେୱାନି କାର୍ଯ୍ୟବିଧି ଆଇନ ପ୍ରଚଳିତ ନ ଥାଏ । ଫୌଜଦାରୀ ଆଇନ ଚଳଣ ଓ ଓକିଲାତି ଲାଇସେନ୍ସ ଦେବାରେ ବିଶେଷ ସର୍ତ୍ତ ମଧ ଥାଏ ।

ଆଂଶିକ ବହିର୍ଭୁତ ଅଞ୍ଚଳରେ ନ୍ୟାୟିକ ପ୍ରଶାସନର ଉଦାହରଣ ଅଭିଜ୍ଞତାରୁ କହୁଛି । ରାୟବାହାଦୂର ଚିନ୍ତାମଣି ଆଚାର୍ଯ୍ୟ କଟକର ବଡ଼ ଫୌଜଦାରୀ ଓକିଲଭାବରେ ପ୍ରିତିଷ୍ଠିତ । କୋରାପୁଟର ଏଜେନ୍ସିସେସନ୍ସ ଜଜ୍‌ଙ୍କ ଅଦାଲତରେ ଏକ ନରହତ୍ୟା ମକଦ୍ଦମାରେ

୧୯୪୬ ମସିହାରେ ସେ ଅଭିଯୁକ୍ତର ଓକିଲ ନିଯୁକ୍ତ ହେଲେ । ସରକାରୀ ଓକିଲ ରାଚକୋଣ୍ଡା ଜଗନ୍ନାଥ ରାଓ । ସେ ପରେ କେନ୍ଦ୍ରରେ ଆଇନ ମନ୍ତ୍ରୀ ହେଲେ । ଗୋରା ଜିଲ୍ଲାମାଜିଷ୍ଟ୍ରେଟ ଜଜ୍ । ଏବେଜେନ୍ସି ସବଜଜ (ପରେ ଜଷ୍ଟିସ) ଜଗନ୍ନାଥ ମହାନ୍ତିଙ୍କୁ ଅତିରିକ୍ତ ସେସନ୍ସ ଜଜ କ୍ଷମତା ଦିଆଯାଇଥାଏ । ସେ ମକଦ୍ଦମା ବିଚାରର ହାକିମ । ରାୟବାହାଦୁରଙ୍କୁ ଜିଲ୍ଲାମାଜିଷ୍ଟ୍ରେଟ ଅନୁମତି ଦେଲାପରେ ସେ ମକଦ୍ଦମାରେ ହାଜର ହେଲେ । ସୋର୍ସଲା ସୂର୍ଯ୍ୟନାରାୟଣ ମୂର୍ତ୍ତି ଆଇଏଏସ୍ । ଓଡ଼ିଶାର ଉନ୍ନୟନ ସଚିବ ଥାଇ ଅକାଳରେ ପ୍ରାଣତ୍ୟାଗ କଲେ । ସେ ଆଗରୁ ଓକିଲ ଥିଲେ । ରାୟଗଡ଼ାରେ ଗୋଟିଏ ଫୌଜଦାରୀ ମକଦ୍ଦମା ଅପିଲ ପଡ଼ିଲା । ଅପିଲ କୋର୍ଟରେ ଜବାବ ସୁଆଲ କରିବା ପାଇଁ ସେ ଗୁଣପୁରର ଆସାମୀ ତରଫରୁ ନିଯୁକ୍ତ ଥାଆନ୍ତି । ନୂଆ ଓକିଲ । ଆଇନରେ ପ୍ରଥମ ଶ୍ରେଣୀରେ ପାସ କରିଥାଆନ୍ତି । ଅନେକ ହାଇକୋର୍ଟର ରୁଲିଂ ବହି ଆଣି ସେ କୋର୍ଟରେ ଥାକ କରି ରଖିଥାଆନ୍ତି । ମକଦ୍ଦମା ପଡ଼ି ନ ଥାଏ । ହାକିମଙ୍କ ଦୃଷ୍ଟି ପଡ଼ିଗଲା । ତାଙ୍କ ପ୍ରଶ୍ନର ଉତ୍ତରରେ ଶୁଣିଲେ ଏ ସବୁ ଅପିଲରେ ଦାଖଲ ହେବ । ସେ ଗରଜି ଉଠିଲେ ମୋର ଆଉ କିଛି କାମ ନାହିଁ ଏ ସବୁ ପଢ଼ିବି । ଶୁଣ, ଏଇ ଦେଖୁଛ ଆଠ ଦଶ ପୃଷ୍ଠାର ଏବେଜେନ୍ସି ରୁଲ୍ସ । ତମର ସବୁ ବକ୍ତବ୍ୟ ଏହା ମଧ୍ୟରେ ସୀମିତ ରଖ ନ ହେଲେ ଭଲ ଫଳ ହେବ ନାହିଁ । ଓକିଲ ବୁଝିଗଲେ । ସ୍ୱୟଂ ମୂର୍ତ୍ତି ଏହା କଳାହାଣ୍ଡି ଜିଲ୍ଲା ମାଜିଷ୍ଟ୍ରେଟଥିବା ସମୟରେ ସ୍ୱାଧିନତା ପୂର୍ବର ଆଇନ ବ୍ୟବସ୍ଥା ପ୍ରସଙ୍ଗରେ କହିଥାନ୍ତି ।

ସେମିତି ଜୟପୁରର ଜଣେ ଦ୍ୱିତୀୟ ଶ୍ରେଣୀ ଅନରାରୀ ମାଜିଷ୍ଟ୍ରେଟଙ୍କର ଅପିଲ ଶୁଣାଣି । ମାଜିଷ୍ଟ୍ରେଟ ସର୍ଦ୍ଦାର ଖରକ ସିଂହ ଜଣେ ପ୍ରତିଷ୍ଠିତ ବ୍ୟବସାୟୀ । ରେଳ ବିଭାଗକୁ କାଠ ସ୍ଲିପର ଯୋଗାଇ ପ୍ରଭୂତ ଅର୍ଥ ଉପାର୍ଜନ କରିଥାନ୍ତି । ଅବୈତନିକ ମାଜିଷ୍ଟ୍ରେଟ କେବଳ ଗୌରବ ନିମିତ୍ତ । ଦୀର୍ଘ ରାୟ ଲେଖନ୍ତି । ମକଦ୍ଦମା ବିଷୟ ବସ୍ତୁ କଣ ତାହା ପୁଲିସ ରିପୋର୍ଟ ବା ମୁଦେଇର ଅଭିଯୋଗପତ୍ରରୁ ଉତାରି ଦିଅନ୍ତି । ପକ୍ଷର ସାକ୍ଷ୍ୟ ସବୁ ସାକ୍ଷ୍ୟଙ୍କର ବୟାନ ଗୋଟିଗୋଟିକରି ଲେଖନ୍ତି । ପ୍ରତି ପକ୍ଷର ସଫେଇ ସେମିତି ତାର ସାକ୍ଷୀମାନଙ୍କ ବୟାନ ନ ହେଲେ ଜବାବରୁ ବିବୃତ କରନ୍ତି । ଶେଷରେ ନିଜ ନିଷ୍ପତ୍ତି ଆଠ ଦଶ ଧାଡ଼ିରେ ଶୁଣାଇ ଦିଅନ୍ତି । ତୃତୀୟ ଶ୍ରେଣୀ ଥିଲେ । ଦ୍ୱିତୀୟବାର ନିଯୁକ୍ତିବେଳେ ଦ୍ୱିତୀୟ ଶ୍ରେଣୀ ପାଇଛନ୍ତି । କୌଣସି ରାୟ ତାଙ୍କର ହାତ ଲେଖାରେ ୧୦/୧୫ ପୃଷ୍ଠାରୁ କମ୍ ନୁହେଁ । ଅପିଲ ଅଦାଲତ ନଥି ଦେଖିଲେ । ସାମାନ୍ୟ ଚୋରି ମକଦ୍ଦମା ତାଙ୍କ ପାଖରେ ଥିଲେ ସମାରି ବିଚାରରେ ଫଏସଲା ହୋଇଥାଆନ୍ତା । ଡକାଗଲା ଅବୈତନିକ ମାଜିଷ୍ଟ୍ରେଟଙ୍କୁ । ତାଙ୍କୁ ଖାସ କାମରାରେ କୁହାଗଲା ତମର କୌଣସି ରାୟ ୪/୫ ପୃଷ୍ଠାରୁ ବେଶି ହେଲେ ତମକୁ ପୁର୍ନନିଯୁକ୍ତି ଦିଆଯିବ ନାହିଁ । ଏତିକି ମନେ ରଖିଥାଅ । ଲାଇସେନ୍ସ

ଖାରଜ କି ସାମୟିକ ରଦ୍ଦ ଡରରେ ଓକିଲ ମଧ୍ୟ ନୀରବ ।

ସିଧାସଳଖ ଜିଲ୍ଲାଜଜ୍‌ଙ୍କର ଓକିଲାତି କରୁଥିବା କର୍ମସ୍ଥଳୀରେ ସେଠାରେ ଏସଡ଼ିଓ ବ୍ୟତୀତ ଆଉ ଜଣେ ଡେପୁଟି ବା ସବଡେପୁଟି ଥାଆନ୍ତି । ସେ ପ୍ରଥମ ଶ୍ରେଣୀ ମାଜିଷ୍ଟ୍ରେଟ ଓ ମୁନସଫ କ୍ଷମତା ଉପଭୋଗ କରନ୍ତି । ଅବିବାଦୀୟ ଦେଓ୍ୱାନି ମକଦ୍ଦମାରେ ବିଚାର କରନ୍ତି । ବିବାଦୀୟ ହୋଇଥିଲେ ଅନ୍ୟ ଜିଲ୍ଲାରୁ ଜଣେ ନିୟମିତ ମୁନସଫ ଆସି ତାହା ବିଚାର କରି ଫଏସଲା କରନ୍ତି । ତାଙ୍କ ବିଚାର ପାଇ ସବୁ ନଥିପତ୍ର ପ୍ରସ୍ତୁତ କରି ରଖାଯାଇଥାଏ । ପ୍ରତି ତିନି ମାସରେ ପ୍ରାୟ ସେ ଥରେ ଆସନ୍ତି । ଓକିଲମାନେ ଲାଇସେନ୍ସ ନବୀକରଣ ପାଇଁ ଏସଡ଼ିଓଙ୍କ ମରଜି ଉପରେ ଥାଆନ୍ତି । ସେ ଟୁରରେ ଥିଲେ ଅନ୍ୟ ମାଜିଷ୍ଟ୍ରେଟ (ସେକେଣ୍ଡ ଅଫିସର) ମକଦ୍ଦମା ଶୁଣନ୍ତି । ଏସଡ଼ିଓ ମାନେ ନିଜେ ବେଶି ଜଟିଳ ମକଦ୍ଦମା ନ ରଖି ତାଙ୍କ ଅଧସ୍ତନ ଏହି ପ୍ରଥମ ଶ୍ରେଣୀ ମାଜିଷ୍ଟ୍ରେଟଙ୍କୁ ଦେଇଦିଅନ୍ତି । ତାଙ୍କର ମଧ୍ୟ ଅନ୍ୟ କାମ ଥାଏ । ସବୁ ସରିଲେ ସେ ଫୌଜଦାରୀ ମକଦ୍ଦମା ବିଚାର ଆରମ୍ଭ କରନ୍ତି । ବିଳମ୍ବରେ ଶୁଣାଣି ଆରମ୍ଭ ହୁଏ । କଚେରୀ ସମୟ ଶେଷ ହେଲା ପରେ ମଧ୍ୟ ବିଚାର ଚାଲେ । ହାକିମ ଅନ୍ୟ କାମରେ ବ୍ୟସ୍ତ ଥିଲେ ମକଦ୍ଦମା ପଡ଼ି ନ ପାରେ ଭାବି ଓକିଲ ହାଜିରା ଦେଇ ଘରକୁ ଚାଲିଯାଆନ୍ତି । ମାତ୍ର ସେ ମକଦ୍ଦମା ହୁଏତ ବିଳମ୍ବରେ ଆରମ୍ଭ କରି ଗରହାଜର ଓକିଲଙ୍କୁ ଭର୍ତ୍ସନା କରନ୍ତି । ଦୀର୍ଘ ସମୟ ଅପେକ୍ଷା କରି ରହିଥିଲେ ସେ ଦିନେ ଦିନେ କହି ଦିଅନ୍ତି ଆଉ ଗୋଟିଏ ତାରିଖ ହେଲା । ମୋର ଅନ୍ୟ କାମ ଅଛି । ଓକିଲମାନଙ୍କର ସଂଖ୍ୟା କମ । ସେମାନେ ସଂଘବଦ୍ଧ ନ ଥାଆନ୍ତି । ପୁଣି ହାକିମଙ୍କର ବିଭାଗ ଭାଜନ ହେଲେ ଲିଗାଲ ପ୍ରାକଟିସନର ଆକ୍ଟ ଅନୁସାରେ କାର୍ଯ୍ୟାନୁଷ୍ଠାନ ଓ ସାମୟିକ ଲାଇସେନ୍ସ ରଦ୍ଦ କରାଯିବାର ସଂଭାବନା ମଧ୍ୟ ଥାଏ । ଓକିଲଙ୍କର ଏହି କ୍ଷୁବ୍ଧ ଓ ବ୍ୟଥିତ ମନୋଭାବ ଘେନି ଏହି ସିଧାସଳଖ ନିଯୁକ୍ତ ଜିଲ୍ଲାଜଜ୍ ଚାକିରିରେ ଯୋଗଦେଲେ । ତାଙ୍କର ଧାରଣା ଯେତେ ଡେପୁଟି ସବଡ଼େପୁଟି କାମ କରନ୍ତି ସେମାନେ ସମସ୍ତେ ଉପରଠାଉରିଆ କାମ କରନ୍ତି ଓ ଅନ୍ୟ ପ୍ରତି ଶିଷ୍ଟାଚରଣ ପ୍ରଦର୍ଶନରେ ତ୍ରୁଟି ରଖନ୍ତି । ଓଡ଼ିଶାରେ ଦ୍ୱିତୀୟ ସାଧାରଣ ନିର୍ବାଚନରେ ସେ ଏକ ପ୍ରାଦେଶିକ ଦଳ ତରଫରୁ ପ୍ରାର୍ଥୀ ଥିଲେ । ଜିତିବାର ସଂଭାବନା ନ ଥିଲା ତଥାପି ଭବିଷ୍ୟତ ଉନ୍ନତିର ଆଶା ରଖି ଓକିଲ ନିର୍ବାଚନ ଲଢ଼ିଲେ । ହାରିବା ସ୍ୱତଃସିଦ୍ଧ ଥିଲା । ଅମାନତ ରହିଲା ନାହିଁ । ମୋଟ ଏକଲକ୍ଷ ୪୭ ହଜାର ୪୧୮ରୁ ସେ ପାଇଲେ ୫୭୩୮ ।

ଲାଭ ହେଲା ଯେତେବେଳେ ସେଇ ପ୍ରାଦେଶିକ ରାଜନୈତିକ ଦଳ ରାଜ୍ୟ ଶାସନରେ ଭାଗୀଦାର ହେଲେ ଆଇନ ବିଭାଗ ସେମାନଙ୍କ ଭାଗରେ ପଡ଼ିଥିଲା । ଜିଲ୍ଲାଜଜ୍ ନିଯୁକ୍ତିରେ ଏହି ଅଭିଜ୍ଞତା ବେଶ ଲାଭଦାୟକ ହେଲା । ଚାକିରିରେ ନିଜ ବୃତ୍ତିଗତ

ଦକ୍ଷତା ପ୍ରମାଣିତ ହେଲା ପରବର୍ତ୍ତୀ କାଳରେ । ସାଧାରଣତଃ ସିଧାସଳଖ ନିଯୁକ୍ତ ଜିଲ୍ଲାଜଜମାନେ ହାଇକୋର୍ଟ ଜଜ ପଦୋନ୍ନତି ପାଇଥାଆନ୍ତି । ମାତ୍ର ଦୀର୍ଘ ଅଭିଜ୍ଞତା ସତ୍ତ୍ୱେ ପଦବୀ ଖାଲି ଥାଇ ମଧ୍ୟ ତାଙ୍କୁ ସେଥିପାଇଁ ଅନୁପଯୁକ୍ତ ମନେ କରାଗଲା । ଓକିଲାତିରେ ନିଜର ପୂର୍ବ ତିକ୍ତ ଅଭିଜ୍ଞତା ହେତୁ ତାଙ୍କର ଧାରଣା ଥାଏ ଡେପୁଟି ସବଡେପୁଟିଭାବେ ପୂର୍ବରୁ କାର୍ଯ୍ୟ କରିଥିବା ହାକିମମାନେ ବିଶେଷ ଆଇନ ଜାଣନ୍ତି ନାହିଁ । ବ୍ରହ୍ମପୁରରେ ଶାସନ ବିଭାଗରୁ ଯେଉଁ ଅଫିସରମାନେ ଯାଇଥିଲେ ସେମାନେ ପ୍ରାୟ ସମସ୍ତେ ଆଇନରେ ପ୍ରଥମ ଶ୍ରେଣୀ । ଅନ୍ତତଃ ଶତକରା ଷାଠିଏରୁ ଅଧିକ ନମ୍ବର ରଖି ପାସ କରିଥାଆନ୍ତି । ଏହା ତାଙ୍କୁ ମନେ ପକାଇଦେଲେ ମଧ୍ୟ ଫଳ ହେଲା ନାହିଁ । ସେ ଆଶା କରିଥାଆନ୍ତି ଲାଇସେନ୍ସ କଟିଯିବା ବା ସାମୟିକ ରଦ୍ଦ ହେବା ଡରରେ ସେ ସ୍ଥାନୀୟ ସେକେଣ୍ଡ ଅଫିସର ଓ ଏସଡ଼ିଓଙ୍କୁ ଯେତିକି ଭକ୍ତି ଓ ମାନ୍ୟତା ଦେଖାଉଥିଲେ ତାଙ୍କ ତଳ କର୍ମଚାରୀମାନେ ତାଙ୍କୁ ସେଇପ୍ରକାର ସମ୍ମାନ ଦେଖାଇବେ । ସେମାନେ ଏଥିପାଇଁ ପ୍ରସ୍ତୁତ ନ ଥିଲେ, ବିଶେଷ କରି ଯେଉଁମାନେ ବିଶେଷ ସୁଯୋଗ ଓ ଭତ୍ତା ପ୍ରତ୍ୟାଖ୍ୟାନ କରି କେବଳ ମର୍ଯ୍ୟାଦା ଓ ସମ୍ମାନର ସହିତ ନିଜ କାର୍ଯ୍ୟ କରିବାକୁ ବିଚାର ବିଭାଗରେ ଯୋଗ ଦେଇଥାଆନ୍ତି । ନିଜର ବିଭାଗୀୟ ସ୍ଥାୟୀ ହାକିମମାନେ ଅନ୍ୟ ଉପାୟ ନ ଦେଖି ତାଙ୍କ ଆଚରଣରେ ପ୍ରତିବାଦ ନ କରି ଭିନ୍ନ ସୁଯୋଗ ଅପେକ୍ଷା କଲେ । ମାତ୍ର ଯେଉଁମାନେ ସ୍ଥାୟୀ ହୋଇ ନାହାନ୍ତି ଓ ଯେଉଁମାନଙ୍କର ଅନ୍ୟ ବିଭାଗରେ ସ୍ଥାୟୀ ନିଯୁକ୍ତି ଅଛି ସେମାନେ କ୍ଷୁବ୍ଧ ହେବା ସ୍ୱାଭାବିକ । ସାକ୍ଷାତ ହେଲେ ସେ ନିଜର ହାକିମି ମନୋଭାବ ଘରୋଇ କଥାବାର୍ତ୍ତାବେଳେ ମଧ୍ୟ ଦେଖାଇଲେ । ତାଙ୍କ ପାଖକୁ କେହି ଗଲେ ନାହିଁ ଓ ଏହା ତାଙ୍କ ପ୍ରତି ଅସୌଜନ୍ୟ ବୋଲି ତାଙ୍କର ଧାରଣା ହେଲା । ଅପିଲ ଶୁଣିବାବେଳେ ନିଜକୁ ସଂପୂର୍ଣ୍ଣ ପକ୍ଷପାତଶୂନ୍ୟ ଓ ପୂର୍ବ ଧାରଣା ବିବର୍ଜିତ ରଖିବା କଥା ମାତ୍ର ସେ ପ୍ରଥମେ ଯେଉଁ ହାକିମଙ୍କର ଆଦେଶ ବିରୁଦ୍ଧରେ ଅପିଲ ଆସିଛି ତାଙ୍କର ଆଚରଣ ମନେ ପକାଇବେ । ମୋର ନାତିମଧୁର ଅଭିଜ୍ଞତା । ହାଇକୋର୍ଟର ସମ୍ମତି କ୍ରମେ ବିଳମ୍ବରେ ମଧ୍ୟ ଏସଡ଼ିଏମ୍ ମାନଙ୍କୁ ଷ୍ଟେନୋ ମିଳିଥାଏ । ପୁରୁଣା ଷ୍ଟେନୋମାନଙ୍କୁ ନ ପଠାଇ ନୂତନ ନିଯୁକ୍ତ କର୍ମଚାରୀଙ୍କୁ ସେମାନଙ୍କୁ ଦିଆଯାଇଥାଏ । ବାରମ୍ବାର ଟାଇପ ଓ ସଂଶୋଧନ ସତ୍ତ୍ୱେ ସେମାନଙ୍କର ନକଲ କରିଥିବା ରାୟରେ ଭାଷାଗତ ବନାନଗତ ତ୍ରୁଟି ରହିଯାଉଥାଏ । ଗୋଟିଏ ରାୟରେ ମୁଁ କହିଥିବା To prove his innocuousness the accured ବଦଳରେ To prove his innocence the accused ଟାଇପ ହୋଇ ଯାଇଥାଏ । ମୋର ଦୁର୍ଭାଗ୍ୟ ଏହି ଗୁରୁତର ଭାଷାପ୍ରମାଦଗତ ତ୍ରୁଟି ମୋର ନଜରକୁ ଏଡ଼ାଇ ଗଲା । ପକ୍ଷନେବା ନକଲରେ ତାହା ରହିଗଲା । ମକଦ୍ଦମା ଗୋଟିଏ ଦ୍ରୁତ ଓ ବେପରୁଆଭାବରେ ମଟରଗାଡ଼ି ଚାଳନା କେଶ୍ । ଅପିଲରେ ଏହା କୋର୍ଟ ଦୃଷ୍ଟିକୁ ଅଣାଗଲା । ସମସ୍ତ

ଅନୁଚ୍ଛେଦ ପଢ଼ିଲେ ଶବ୍ଦ ଯେ ଅନ୍ୟଗୋଟିଏ ହେବ ଏହା ବେଶ ଜଣାପଡୁଥିଲା । ମାତ୍ର ଅପିଲ ଅଦାଲତ ସେଥିପ୍ରତି ନଜର ଦେବା ମାନସିକ ଅବସ୍ଥାରେ ନ ଥିଲେ । କ୍ରୋଧ ପ୍ରକାଶ କରିବାକୁ ସେ ଲେଖିଲେ ଜଣେ ଉଚ୍ଚପଦାଧିକାରୀ ମାଜିଷ୍ଟ୍ରେଟ ଫୌଜଦାରୀ ଆଇନର ମୂଳମନ୍ତ୍ର accused presumed to be innocent (ଆସାମୀ ନିରପରାଧ ଏହା ପ୍ରଥମରୁ ଧରିନେବ) ଏ ବିଷୟରେ ଅଜ୍ଞାତ ହୋଇ ତାକୁ ନରପରାଧତା ପ୍ରମାଣ କରିବାକୁ କହୁଛନ୍ତି । ଏହାଠାରୁ କ୍ଷୋଭ ଓ ଲଜ୍ଜ୍ୟାଜନକ ଆଉ କଣ ହୋଇପାରେ । ମୁଦାଲା ଖଲାସ ହେବା ସହିତ ମାଜିଷ୍ଟ୍ରେଟଙ୍କୁ ଭର୍ତ୍ସନା ମାନ୍ୟବର ହାଇକୋର୍ଟ ଦୃଷ୍ଟିକୁ ତାହା ଅଣାଗଲା । ଜଣେ ଦୁଇଜଣ ପୋଖତ ଜିଲ୍ଲାଜଜ୍‌ଙ୍କୁ ରାୟ ଦେଖାଇଲି । ସେମାନେ ସମସ୍ତେ କହିଲେ ପଢ଼ିବାବେଳେ ମନେ ହେବ ଶବ୍ଦ ସଂଯୋଜନାରେ କଣ ତ୍ରୁଟି ରହି ଯାଉଛି । ପ୍ରଥମ ପର୍ଯ୍ୟାୟରେ ମୋର ବିଚାର ବିଭାଗ ଉପରେ ଥିବା ଉଚ୍ଚ ଆଶାରେ ଆଞ୍ଚ ଆସିଲା ।

ଜିଲ୍ଲାଜଜ୍‌ଙ୍କର ଏ ପ୍ରକାର ଅପଦାର୍ଥ ମାଜିଷ୍ଟ୍ରେଟଙ୍କର ଅଦାଲତ ଯାଞ୍ଚ କରିବା ଜରୁରୀ । ସେ କୋର୍ଟ ଇନ୍ସପେକସନର ପ୍ରୋଗ୍ରାମ କଲେ । ଜଣେ କିରାଣିକୁ ନିଜ ଅଫିସରୁ ପଠାଇଲେ । ଆଗତୁରା ସେ ଯାଇ ସବୁ ରେଜିଷ୍ଟର ପତ୍ର ଯାଞ୍ଚ କରି ତ୍ରୁଟି ମାନଙ୍କର ତାଲିକା କରିବେ । ଅବଶ୍ୟ ଯାଞ୍ଚରେ କିଛି ଗୁରୁତର ତ୍ରୁଟି ମିଳିବ ନାହିଁ ଏ ବିଷୟରେ ମୁଁ ଦୃଢ଼ ଥିଲି । ପୂର୍ବରୁ ଜୁଡ଼ିସିଆଲ ଏଡ଼ିଏମ ନଥି ଦେଖି କୋର୍ଟର ରେଜିଷ୍ଟାରମାନ ଯାଞ୍ଚ କରି ତାଙ୍କର ଅର୍ଦ୍ଧବାର୍ଷିକ ସମୀକ୍ଷାରେ ମୋର କାର୍ଯ୍ୟର ପ୍ରଶଂସା କରିଥାନ୍ତି । ହାଇକୋର୍ଟ ନିୟମାବଳୀ ଅନୁସାରେ ଜିଲ୍ଲାଜଜଙ୍କର ତଳ କୋର୍ଟ ଯାଞ୍ଚର ପରିସର ସୀମାବଦ୍ଧ । GRCO Criminal Vol.I-1949 Edition Chap II Rule 2 । ଏଥିରେ ଅଛି ଜିଲ୍ଲାଜଜ ମୋଟାମୋଟି ନ୍ୟାୟିକ ପ୍ରକ୍ରିୟା ଯାଞ୍ଚ କରିବେ । କିଛି ନଥିପତ୍ର ଦେଖି ପ୍ରଦତ୍ତ ଆଦେଶମାନଙ୍କର ଯୌକ୍ତିକତା ବିଷୟରେ ମାଜିଷ୍ଟ୍ରେଟଙ୍କୁ ପରାମର୍ଶ ଦେବେ । ଶାସନ ବିଭାଗରେ ଥିବାବେଳେ ନିୟମ ଦେଖାଇ ଶେଷରେ - GRCO ନିୟମ ବଦଳାଇଲା ପରେ ପାନେ ଏଇଥିପାଇଁ ପାଇଥିଲେ ମଧ୍ୟ ବିଚାର ବିଭାଗରେ ଏହା ମୋ ପକ୍ଷରେ ଜ୍ଞାନପରିସର ପ୍ରଶସ୍ତ ବୋଲି ପ୍ରଶଂସନୀୟ ହେବ ଏହି ଆଶାରେ ମୁଁ ଜିଲ୍ଲାଜଜଙ୍କୁ ନିର୍ଦ୍ଧାରିତ ନିୟମାବଳୀ ସୂଚାଇ ପତ୍ର ଦେଲି । ଫଳ ଓଲଟା ହେଲା । ତାଙ୍କୁ ଅପମାନିତ କରିବାକୁ ମୁଁ ଆପତ୍ତି ଉଠାଇଛି ଓ ତାଙ୍କ କ୍ଷମତା ସୀମିତ ଏହା ଅନ୍ୟମାନଙ୍କୁ ଜଣାଇବା ମୋର ମତଲବ ଅଛି ଏହି ମର୍ମରେ ସେ ମାନ୍ୟବର ହାଇକୋର୍ଟକୁ ମୋର ଏହି ଗର୍ହିତ ଆଚରଣ ପ୍ରତି ଦୃଷ୍ଟି ଆକର୍ଷଣ କଲେ । ଅବଶ୍ୟ ଇନ୍ସପେକ୍ସନ ହେଲା ନାହିଁ । ମାତ୍ର ଉଚିତ କାରଣ ଥାଇ ମଧ୍ୟ ନିୟମାବଳୀର ବିରୁଦ୍ଧାଚରଣ ଅନ୍ୟର ଦୃଷ୍ଟିକୁ ଆଣିବା ସକାଶେ ମାନ୍ୟବର ହାଇକୋର୍ଟ

ମୋର ଆଚରଣକୁ ନିନ୍ଦାକରି ଭବିଷ୍ୟତରେ ସତର୍କ ହେବାକୁ ମତେ ଜଣାଇଲେ । ଏହା ମୋତେ କ୍ଷୁବ୍ଧ କଲା । ମୁଁ ନିଜ ବିଭାଗକୁ ଫେରିଯିବା ପାଇଁ ଓ ମୋର ସମ୍ମତି ପ୍ରତ୍ୟାହାର କରି ଚିଠି ଦେଲି । ତିନିମାସ ଛୁଟିରେ ଗଲି । ମୋର ବିଶ୍ୱାସ ଥିଲା ଏହି ସମୟରେ ମୋତେ ବିଭାଗକୁ ଫେରାଇ ଦିଆଯିବ ଓ ବର୍ଷର ଆରମ୍ଭ ଓ ବଦଳି ଋତୁର ସୁଯୋଗରେ ମତେ ଶାସନ ବିଭାଗରେ ଯଥାଯୋଗ୍ୟ ସ୍ଥାନ ମିଳିବ । ମାତ୍ର ସେତେବେଳେ ମୋତେ ଫେରାଇ ଦିଆଗଲା ନାହିଁ । ଛୁଟିରୁ ଫେରି ବ୍ରହ୍ମପୁରରେ ପୁଣି ଯୋଗଦାନ କଲି । ପୂଜା ଛୁଟି ପୂର୍ବରୁ ମୋର ବଦଳି ହେଲା । ବ୍ରହ୍ମପୁରରୁ ବଣେଇ । ରାଜ୍ୟରେ ଆନ୍ଧ୍ର ପ୍ରଦେଶର ସୀମାନ୍ତରୁ ବିହାରର ସୀମାନ୍ତକୁ ଯେପରି ମୋ ପରି ଅଯୋଗ୍ୟ ମାଜିଷ୍ଟ୍ରେଟ ପାଇ ଏହା ଭିତରେ ଅନ୍ୟ କୌଣସି ସ୍ଥାନ ଉପଯୁକ୍ତ ନ ଥିଲା । ମୋର ଦୁଇ କଲେଜ ପଢୁଆ ଝିଅ ଥାଆନ୍ତି । ବଣେଇରେ କଲେଜ ନ ଥାଏ । ଅନ୍ୟ ତିନି ଜଣ ସ୍କୁଲରେ । ଏହା କର୍ତ୍ତୃପକ୍ଷଙ୍କୁ ଅବଗତ ଥିଲା ତଥାପି ପୂଜାଛୁଟି ପୂର୍ବରୁ ବଦଳି ଆଦେଶ ଦେଲେ । ନିର୍ଦ୍ଦେଶ ଥିଲା କଚେରୀ ଖୋଲିବା ଦିନ ବଣେଇରେ ଯୋଗଦାନ କରିବାକୁ । ଚାକିରିରେ ଜଏନିଂ ଟାଇମ (ଯୋଗଦାନ କରିବା ସମୟ) ଉପଭୋଗ କରିବା ଏକ ଅଧିକାର । ଏହା କାହା ମରଜି ଉପରେ ନିର୍ଭର କରେ ନାହିଁ । ତଥାପି ବିଭାଗରୁ ବିଦାୟ ନେଉଥିବାରୁ ଆଉ ଅଧିକ ବିବାଦୀୟ ନ ହୋଇ ହୁକୁମ ତାମିଲ କଲି ଓ ବଣେଇରେ ନିର୍ଦ୍ଧାରିତ ଦିନ ନାନା ଅଭାବ ଅସୁବିଧା ସତ୍ତ୍ୱେ ଯୋଗଦାନ କଲି । ଖାଲି ଭକ୍ତକବି ଦୀନକୃଷ୍ଣଙ୍କ ପଦ ମନେ ପଡ଼ିଲା -

"କରୁଣା କୃପଣ ହେଲେ ପ୍ରଭୁପଣ
ରକ୍ଷଣର କେଉଁ ଯଶ ହେ ମୋହନ" ?

ଏହା ମଧ୍ୟରେ ଚିଫ୍ ଜଷ୍ଟିସ୍ ନରସିଂହମ ପାଟଣା ହାଇକୋର୍ଟକୁ ବଦଳି ହୋଇଥାଆନ୍ତି । କାର୍ଯ୍ୟରେ ସଂପୂର୍ଣ୍ଣ ଅନାଗ୍ରହୀ ବିହାରରୁ ଜଣେ ଚିଫ୍ ଜଷ୍ଟିସ ଆସିଥାଆନ୍ତି । ସଂପୂର୍ଣ୍ଣ କ୍ଷମତା ଜଣେ ପୁନି (Puisne) ଜଷ୍ଟିସଙ୍କ ହାତରେ । ନରସିଂହମଙ୍କର ଶାସନ ବିଭାଗରୁ ଆସିଥିବା ମାଜିଷ୍ଟ୍ରେଟଙ୍କ ପ୍ରତି ଦୁର୍ବଳତା ଥାଏ ମାତ୍ର ବ୍ରହ୍ମପୁରର ଜିଲ୍ଲାଜଜ୍ ଏହିମାନେ ତାଙ୍କୁ ନିଜ କ୍ଷମତା ଦେଖାଇ ଅତୀତରେ ହଇରାଣ କହିଛନ୍ତି । ସେ ବର୍ତ୍ତମାନ ଦେଖାଇଦେବେ ଜଜ୍ ହୋଇ ସେ କିପରି ସର୍ବଶକ୍ତିମାନ । ଏହି ପ୍ରକାରର ମାନସିକ ଚିନ୍ତାଧାରା ଦ୍ୱାରା ପ୍ରଭାବିତ ଅବିଭକ୍ତ ଦୁଇ ଜିଲ୍ଲା ଗଞ୍ଜାମ ଓ ଫୁଲବାଣୀର ନ୍ୟାୟିକ ବ୍ୟବସ୍ଥା ସେ ଚଳାଉଥାଆନ୍ତି ଓ ଉପରୁ ତାଙ୍କୁ ସମର୍ଥନ ମିଳୁଥାଏ । ପୁନି ଜଜ୍ ଜଣକ ଜିଲ୍ଲାଜଜଙ୍କର ବୈବାହିକ ସୂତ୍ରରେ ସଂପର୍କୀୟ ମାତ୍ର ବୃତ୍ତି, ବିଦ୍‌ବତ୍ତା ଓ ବ୍ୟକ୍ତିତ୍ୱରେ ସେ ଅସାଧାରଣ ଥିଲେ । ବିଚାର ବିଭାଗରେ ମୋର ଦକ୍ଷତା ହାଇକୋର୍ଟରୁ ପାଇଥିବା ପ୍ରଶଂସା ପତ୍ରରୁ ସୂଚୀତ ହେଉଥାଏ ମାତ୍ର ଏ ସବୁ ସତ୍ତ୍ୱେ ଜଣେ ସଂପର୍କୀୟଙ୍କୁ ଅଭିଯୋଗ ଅନୁଯାୟୀ

ଅପମାନିତ ଓ ତାଚ୍ଛଲ୍ୟ କରିବା ଉଦ୍ଦେଶ୍ୟ ମୋର ଗୁରୁତର ତ୍ରୁଟି । ମୋର କୌଣସି ଅଭିଯୋଗ ଉପରସ୍ତରରେ ଶୁଣାଗଲା ନାହିଁ । ବଣାଇରେ ଛମାସ ରହି ନିଜର ଆସ୍ଥାନ ସେଠାରେ ବିନା ପରିବାରରେ ଜମାଇ ଆସିବା ବେଳକୁ ମୋତେ ଶାସନ ବିଭାଗକୁ ଅଧାବର୍ଷରେ ଫେରାଇ ଦିଆଗଲା । ଅମର୍ଯ୍ୟାଦାକର ପରିସ୍ଥିତିରେ ମୋତେ ସେଠାରେ ଯୋଗଦେଇ ପୋଷ୍ଟିଂ ଅପେକ୍ଷାରେ ରହିବାକୁ ପଡ଼ିଲା । ବିଚାର ବିଭାଗରେ କଠିନ ପରିଶ୍ରମ କରିବାର ଫଳ ଏଇଆ ଥିଲା । ଆଲେକଜାଣ୍ଡର ପୋପଙ୍କର କବିତା ମନେ ପଡ଼ିଲା -

" The hungry judges soon the sentence sign
And wretches hang that jury men may dine."

ଜୀବନର ଅସ୍ତରାଗବେଳେ ମତେ ପ୍ରଶ୍ନ ପଚାରିଲେ ଶାସନ କି ବିଚାର ବିଭାଗ କେଉଁଠି ଚାକିରିରେ ଆରାମ ଓ ସୁଖ ଅଛି ମୁଁ ତାର ଉତ୍ତର ଦେବି ସବୁଠାରେ ଉପରିସ୍ଥ ଅଧିକାରୀଙ୍କର ଅହଂଭାବକୁ ଆଶାତୀତ ସମ୍ମାନ କଲେ ଏହା ମିଳିବ । ସବୁଠାରେ ସର୍ବୋଚ୍ଚ କ୍ଷମତାପ୍ରାପ୍ତ ଅଧିକାରୀ ଏକ ଚରିତ୍ରର । 'ସ୍ତୋତ୍ର କସ୍ୟ ନ ବଶ୍ୟଯେ' ଏହା ସବୁଠାରୁ ବେଶି ଏଇମାନଙ୍କ ପାଇଁ ପ୍ରଯୁଜ୍ୟ । ଦକ୍ଷତା, ଆଦର୍ଶ ମାନବିକ ମୂଲ୍ୟବୋଧ, ନିଷ୍କଳଙ୍କ ଆଚରଣ ଏସବୁ ଗୌଣ । ଯେଉଁମାନେ କହନ୍ତି "ବିଚାର ବିଭାଗର ସବୁ କ୍ଷେତ୍ରରେ ସାଧୁତା, ସ୍ୱଚ୍ଛତା, ଉତ୍ତରବୋଧତା ଉପରେ ହିଁ ଭବିଷ୍ୟତ ନିର୍ଭର କରେ" ସେମାନେ ନିଜ କ୍ଷମତା ପ୍ରୟୋଗରେ ତାହା ଦେଖାଇ ଆଦର୍ଶ ସ୍ଥାନୀୟ ହୋଇ ପାରନ୍ତି ନାହଁ ।"



# ଗଞ୍ଜାମର ପାଗଳା ଜଜ୍
# ଓ
# ଟ୍ରଙ୍କ ମର୍ଡ଼ର କେଶ୍

୧୯୩୬ ମସହାରେ ଓଡ଼ିଶା ପ୍ରଦେଶ ଗଠନ ହେବା ବେଳେ ସମଗ୍ର ଓଡ଼ିଶା ଦୁଇଗୋଟି ଜଜସିପରେ ବିଭକ୍ତି ହୋଇଥାଏ । ପ୍ରଥମ କଟକ ସମ୍ବଲପୁର ଯାହାର ଜିଲ୍ଲା ଓ ସେସନ୍ସଜଜ୍ କଟକରେ ରହୁଥାନ୍ତି । କଟକ ସମ୍ବଲପୁର ବାଲେଶ୍ୱର ତାଙ୍କର କ୍ଷମତା ପରିସର । ପୁରୀ ଗଞ୍ଜାମ ଜଜସିପର ସୀମା ଗଞ୍ଜାମ ଫୁଲବାଣୀ ଓ ପୁରୀ ଜିଲ୍ଲା । ଜଜ ବ୍ରହ୍ମପୁରରେ ରହୁଥାନ୍ତି । କୋରାପୁଟ ଜିଲ୍ଲାରେ ନିୟମିତ ନ୍ୟାୟିକ ବ୍ୟବସ୍ଥା ଚାଲୁ ନ ଥାଏ । ଜିଲ୍ଲା କଲେକ୍ଟର ଲାଟସାହେବଙ୍କ ଏଜେଣ୍ଟଭାବରେ ଜିଲ୍ଲା ଓ ସେସନ୍ସ ଜଜ କ୍ଷମତା ଉପଭୋଗ କରୁଥାଆନ୍ତି । ମାନ୍ଦ୍ରାଜ ପ୍ରଦେଶର ଅନ୍ତର୍ଭୁକ୍ତ ଥିବା ସମୟରୁ ଗଞ୍ଜାମ ଜିଲ୍ଲା ମାଜିଷ୍ଟ୍ରେଟ ଛତ୍ରପୁରରେ ରହୁଥିବାବେଳେ ଜିଲ୍ଲାଜଜ ବ୍ରହ୍ମପୁରରେ ରହୁଥାନ୍ତି ।

ପ୍ରଥମ ଜିଲ୍ଲା ଜଜ ହୋଇ ଆସିଲେ ଯୋସେଫ ଅଷ୍ଟିନ ବାୟାରସ । ଇଂଲଣ୍ଡର ଗୋରା ହାକିମ । ୧୯୨୧ ମସିହାରେ ଆଇସିଏସ୍ ପାଇଁ ବଛାଯାଇ ଭାରତ ଆସିଥିଲେ । ମାନ୍ଦ୍ରାଜ ପ୍ରଦେଶ ତାଙ୍କର ଭାଗରେ ପଡ଼ିଲା । ଚାକିରି ଆରମ୍ଭରୁ ସେ ଚିଡ଼ଚିଡ଼ା ପ୍ରକୃତିର ଥାଇ ବୟସ ବଢ଼ିବା ସାଙ୍ଗେ ସାଙ୍ଗେ ଆଡ଼ବାୟା ଆଚରଣ ଦେଖାଇବାରେ ଲାଗିଲେ । ଦୈବ ଯୋଗକୁ ସେଇ ଭଳି ପ୍ରକୃତିର ଜଣେ ଅର୍ଦ୍ଧାଙ୍ଗିନୀ ମଧ ତାଙ୍କୁ ମିଳିଯାଇଥାନ୍ତି । ପ୍ରଥମ ଚାକିରି ତାମିଲନାଡୁ ତିରୁପାତୁରର ସବକଲେକ୍ଟର । ତାଙ୍କର ଗୋଟିଏ ପୋଷା କୁକୁର ଅତି ପ୍ରିୟ । କୁକୁରଟି ହଜିଗଲା । ପୁଲିଶରେ ଇତ୍ତାର ଦିଆଗଲା । ମାଜିଷ୍ଟ୍ରେଟଭାବରେ ପୋଲିଶ ଉପରେ ତାଙ୍କର ଅଧିକାର ଆଇନ ସମ୍ମତ । ପୁଲିଶକୁ କୁକୁର ଖୋଜିବାରେ ଦିନରାତି ଲଗାଗଲା । ସେମାନେ ପାଇଲେ ନାହିଁ । ତାହା ତାଙ୍କୁ ଜଣାଇଲେ । ହାକିମଙ୍କ ହୁକୁମ ହେଲା କୁକୁର ଯଦି ମିଳୁନାହିଁ ତେବେ ମରିଯାଇଛି । ଯଦି ମରିଛି ତାର ମଳାଦେହ ନିଷ୍ଚୟ ମିଳିବ । ପୁଲିଶକୁ ସେଇଟା ଖୋଜିବାରେ ପୁଣି

ଲଗାଗଲା । ଶେଷକୁ ପୁଲିଶ ବାଧହୋଇ ଗୋଟିଏ କୁକୁରର ପଚା ସଢ଼ା ଶବ ଠାବ କରି ଖବର ଦେଲେ । ସାହେବ ତାଙ୍କୁ ମର୍ଯ୍ୟାଦାର ସହିତ ସମାଧି ଦେଲେ । ପୋଷା କୁକୁରକୁ ଉପଯୁକ୍ତ ଭାବରେ ପ୍ରତିପାଳନ କରିଛନ୍ତି ବୋଲି ତାଙ୍କ ମନରେ ସନ୍ତୋଷ ଆସିଲା ।

କଚେରିରେ ମକଦ୍ଦମା ବିଚାର ଚାଲେ । ବାୟାରସ ସାହେବ ସାକ୍ଷ୍ୟ ପ୍ରମାଣ ଶୁଣନ୍ତି । ସାକ୍ଷ୍ୟ ପ୍ରମାଣରେ ବୈଷମ୍ୟ ଦେଖିଲେ ସେ ଚିଡ଼ି ଉଠନ୍ତି । ସବୁ ଦୀର୍ଘ ମୌଖିକ ସାକ୍ଷ୍ୟ ଶୁଣିବାକୁ ଧୈର୍ଯ୍ୟ ନ ଥାଏ । ଦିନେ ଜଣେ ସାକ୍ଷୀର ବୟାନ ତାଙ୍କୁ ମିଥ୍ୟା ଜଣାପଡ଼ିଲା । ସେ ଧରିନେଲେ ସାକ୍ଷୀ ମିଛ ସାକ୍ଷ୍ୟ ଦେଉଛି । ଦଣ୍ଡ ପାଇବା ପାଇଁ ଆଇନଗତ ପନ୍ଥାର ଆଶ୍ରୟ ନ ନେଇ ନିଜ ଟେବୁଲ ଉପରେ ଥିବା ଦୁଆତ ଦାନିରୁ ଗୋଟିଏ ଦୁଆତ କାଢ଼ି ସାକ୍ଷୀ ଗଡ଼ାରେ ଥିବା ଲୋକଟି ଉପରକୁ ଫୋପାଡ଼ିଦେଲେ । ସାକ୍ଷୀ ମଧ୍ୟ ଅନେକ ଘାଟରେ ପାଣି ପିଇବା ଆସାମୀ । ସେ ଡରିଯିବାର ଲୋକ ନୁହେଁ । ସାକ୍ଷୀ ଗଡ଼ାରେ ଠିଆ ହୋଇ ନିଜ ପାଦରୁ ଜୋତା କାଢ଼ି ହାକିମଙ୍କ ଉପରକୁ ଠିକ୍ ଲକ୍ଷ୍ୟ ରଖି ପକାଇଲା । ସଫଳ ମଧ୍ୟ ହେଲା । ନିଜ ଆଚରଣର ପରିଣାମ ଦେଖି ସାହେବ ନୀରବ ରହିଲେ । ସେଇ ଦିନଠାରୁ ହୁକୁମ ହେଲା ସେ ସାକ୍ଷ୍ୟ ପ୍ରମାଣ ଇଝାର ନେଉଥିବାବେଳେ ଟେବୁଲ ଉପରେ କୌଣସି ଦୁଆତ ରହିବ ନାହିଁ । ନିଜ ଲେଖନୀ ବ୍ୟବସ୍ଥା ସେ ନିଜେ କରିବେ ।

ବ୍ରହ୍ମପୁର ଆସି ଜିଲ୍ଲା ଜଜ୍ ହେଲେ । ଜଜ୍ ସାହେବଙ୍କ ବଙ୍ଗଳା ବିରାଟ ଭୂଖଣ୍ଡର ସୀମା ରେଳ ଲାଇନ ପର୍ଯ୍ୟନ୍ତ ଲମ୍ବିଛି । କଲିକତା ମାନ୍ଦ୍ରାଜ ରେଳଲାଇନରେ ରାତିବେଳେ ଅପ ଡାଉନ ଦୁଇଗୋଟି ଲେଖା ଏକ୍ସପ୍ରେସ୍ ଟ୍ରେନ ଯିବା ଆସିବା କରେ । ଷ୍ଟେସନରେ ପଶିବା ଆଗରୁ ଟ୍ରେନ୍ ଜୋରରେ ହୁଇସିଲ ଦିଏ । ଜଜ୍ ସାହେବଙ୍କୁ ଏହା ବିରକ୍ତିକର ବୋଧହୁଏ । ମନା କଲେ ଶୁଣୁଛି କିଏ ? ଦିନେ ସେ ଗୁଡ଼ିଏ ପଥର ଖଣ୍ଡ ଏକାଠି କଲେ । ଟ୍ରେନ ହୁଇସିଲ ଦେବା କ୍ଷଣି ନିଜ ନାଇଟ ଗାଉନ ପିନ୍ଧି ସାହେବ ଦମ୍ପତି ବାହରିପଡ଼ିଲେ । ଚାଲିଲା ଡ୍ରାଇଭରକୁ ଲକ୍ଷ୍ୟ କରି ପଥର ଫୋପଡ଼ା । ଗାଡ଼ି ଷ୍ଟେସନ ପ୍ଲାଟଫର୍ମରେ ଥିବା ଯାଏ ଦିଜଣଙ୍କର ଏ ପ୍ରକାର ବିଶୃଙ୍ଖଳା ଆଚରଣ ଚାଲୁ ରହିଲା । ମାତ୍ର ଫଳ କିଛି ହେଲା ନାହିଁ । ଦୈନିକ ଗାଡ଼ି ହୁଇସିଲ ସେମିତି ଚାଲିଲା । ସେ ସେମିତି ପଥର ଫୋପାଡ଼ନ୍ତି । ପାଗଲା ଜଜ୍ ଆଚରଣ ଜାଣିବାରୁ ସମସ୍ତେ ମଧ୍ୟ ସଂଭାଳି ନେଲେ ।

ସ୍ୱଳ୍ପ ସଂଖ୍ୟା ହେତୁ ବ୍ରହ୍ମପୁରରେଗୋରା ସାହେବମାନଙ୍କର ସାମାଜିକ ସଂପର୍କ ଅତି ସୀମିତ । ପାଖରେ ଗୋପାଳପୁର ସମୁଦ୍ରକୂଳରେ । ସେଠାରେ ବେଙ୍ଗଲ ନାଗପୁର ରେଲୱେର ପ୍ରସିଦ୍ଧ ପାମବିଚ୍ ହୋଟେଲ । ସମୁଦ୍ର କୂଳରେ ଶନିବାର ରବିବାର କଟାଇବାକୁ

କଲିକତାରୁ ଅନେକ ଇଉରୋପୀୟ ଦମ୍ପତି ଆସନ୍ତି । ବାୟାର୍ସ ଶନି ରବି ଦୁଇଦିନ ସେଠାରେ ମଉଜରେ ସମୟ କଟାନ୍ତି । ୧ ୯୩୭ ମସିହା ଜୁନ ମାସରେ ଦିନେ ଶନିବାର ଉପରବେଳା ସେ ହୋଟେଲରେ ପହଞ୍ଚି ନିଜର ପ୍ରିୟ କୋଠରୀରେ ରହିବାକୁ ଚାହିଁଲେ । ତାହା ତାଙ୍କୁ ମିଳିଲା ନାହିଁ । ମ୍ୟାନେଜର ତାଙ୍କୁ ଖେଦ ପ୍ରକାଶ କରି ଜଣାଇଲେ ହୋଟେଲର ସମସ୍ତ କମରା ତାଙ୍କର ଜଣେ ଗରାଖ ସେଦିନ ଓ ତା ପରିଦିନ ପାଇଁ ବହୁ ମୂଲ୍ୟ ଦେଇ ରିଜର୍ଭ ରଖିଛନ୍ତି । ପଚାରି ବୁଝିଲେ ଗରାଖ ଜଣକ ପିଠାପୁର ଜମିଦାରୀର ମେନେଜର ପାକଲା ନାରାୟଣ ସ୍ୱାମୀ ।

ସେ ହତ୍ୟାକାରୀ ବୋଲି ତାଙ୍କ ବିରୁଦ୍ଧରେ ଆଉ ତିନିଜଣ ସହଯୋଗୀଙ୍କ ସହିତ ଅଭିଯୋଗ ଫର୍ଦ୍ଦ ଦାଖଲ ହୋଇଥିଲା । ସେତେବେଳେର ଆଇନ ବ୍ୟବସ୍ଥା ଅନୁସାରେ ପ୍ରଥମେ ଜଣେ ପ୍ରଥମ ଶ୍ରେଣୀ ମାଜିଷ୍ଟ୍ରେଟ ଇନକୁଆରି କରି ଜଜକୋଟରେ ବିଚାରଯୋଗ୍ୟ ଅପରାଧ ସଂଘଟିତ ହୋଇଛି କି ନା ତାହା ଦେଖିବେ ଓ ତାଙ୍କର ହୃଦବୋଧ ହେଲେ ସେ ମକଦ୍ଦମା ସେସନ୍ସ ଜଜଙ୍କ ଇଜଲାସରେ ବିଚାର ପାଇଁ ଦଉରା ସୁପର୍ଦ୍ଦ କରିବେ । ବାୟାର୍ସ ପଚରାଉଚରା କରି ବୁଝିଲେ ମାଜିଷ୍ଟ୍ରେଟ ତାଙ୍କୁ ଦଉରା ସୁପର୍ଦ୍ଦ ନ କରି ଛାଡ଼ି ଦେଇଛି । ସେଇଥିପାଇଁ ସେମାନେ ଆନନ୍ଦରେ ବନ୍ଧୁବାନ୍ଧବମାନଙ୍କ ସହିତ ଗୋପାଳପୁରରେ ଉତ୍ସବ କରିବାକୁ ଏକତ୍ରିତ ହୋଇଛନ୍ତି । ରହିବାର ସଂଭାବନା ନ ଦେଖି ଜଜ ଦଂପତି ବ୍ରହ୍ମପୁର ଫେରିଗଲେ । ସୋମବାର ଦିନ ଛତ୍ରପୁର ମାଜିଷ୍ଟ୍ରେଟଙ୍କ ଅଦାଲତରୁ ଏହି ମକଦ୍ଦମାର ନଥି ତଲବ କରାଗଲା । ତନ୍ନତନ୍ନ କରି ସାକ୍ଷ ପ୍ରମାଣ ପଢ଼ି ବାୟାର୍ସ ଅନୁଭବ କଲେ ଯେ ଛତ୍ରପୁରର ମାଜିଷ୍ଟ୍ରେଟ ମକଦ୍ଦମା ଜଜ ଅଦାଲତକୁ ନ ପଠାଇବା ଦ୍ୱାରା ଆଇନର ଉପଯୁକ୍ତ ପ୍ରୟୋଗ କରାଯାଇ ନାହିଁ । ନିଜର ବିଶେଷ କ୍ଷମତା ପ୍ରୟୋଗ କରି ସେ ଆସାମୀମାନଙ୍କୁ ଦଉରା ସୁପର୍ଦ୍ଦ ହେବା ଆଦେଶ ଦେଲେ ଓ ନିଜ ଅଦାଲତରେ ହାଜର ହେବାକୁ ସେମାନଙ୍କୁ ସମନ ପଠାଇଲେ । ସେସନ୍ସ ଜଜଙ୍କର ଏ ପ୍ରକାର ଆଚରଣରେ ଚାରିଆଡ଼େ ଚମକ ଖେଳିଗଲା । ମକଦ୍ଦମାର ବିଷୟ ବସ୍ତୁ ଏହିପରି ଥିଲା ।

୧ ୯୩୭ ମସିହା ମାର୍ଚ୍ଚ ତେଇଶ ତାରିଖ ମଙ୍ଗଳବାର ପୁରୀ ରେଲଷ୍ଟେସନରେ ଗୋଟିଏ ରେଲଗାଡ଼ିର ତୃତୀୟ ଶ୍ରେଣୀ ଡବାରେ ଗୋଟିଏ ବଡ଼ ଟ୍ରଙ୍କ ପଡ଼ିରହିଲା । ଯାତ୍ରୀମାନେ ଚାଲିଗଲେ । ଏହାର କେହି ଦାବିଦାର ନ ଥିଲେ । ପୁଲିଶ ତଦନ୍ତ କଲେ । ଟ୍ରଙ୍କ ଖୋଲାଗଲା । ଗୋଟିଏ ମଣିଷର ଅଙ୍ଗପ୍ରତ୍ୟଙ୍ଗ ସାତ ଖଣ୍ଡରେ ମିଳିଲା । ତଦନ୍ତର କିଛିଦିନ ପରେ ଏହି ଶବ କୁରି ନୁକାରାଜୁ ଜଣେ ତିରିଶ ବର୍ଷ ବୟସ ବ୍ୟକ୍ତିଙ୍କର ବୋଲି ଜଣାଗଲା । ସେ ପିଠାପୁର ଜମିଦାରିର ଦେୱାନଙ୍କ ଅଫିସରେ ଜଣେ କର୍ମଚାରୀ ଭାବରେ କାମ କରୁଥିଲେ । ପିଠାପୁର ମାନ୍ଦ୍ରାଜ୍ ପ୍ରଦେଶର ଗୋଟିଏ ବଡ଼ ଜମିଦାରି ଥିଲା ।

ଦେୱାନଙ୍କ ଝିଅ ପାକଲା ନାରାୟଣ ସ୍ୱାମୀଙ୍କୁ ବିଭା ହୋଇଥିଲେ । ବିବାହ ପରେ ସେମାନେ ୧୯୧୯ ମସିହାରେ ୨୦୦ ମାଇଲ ଦୂର ବ୍ରହ୍ମପୁର ସହରକୁ ଆସି ସେଠାରେ ବାସ କରୁଥିଲେ । ପୋଲିଶ ଅନୁସନ୍ଧାନରୁ ଜଣାଗଲା ଦେୱାନଙ୍କ ଝିଅର ବୟସ ତେର ବର୍ଷ ଥିବାବେଳେ ତାଙ୍କର ମୃତ ନୁକାରାଜୁ ସହିତ ଘନିଷ୍ଠତା ଥିଲା । ୧୯୧୮ ମସିହାରେ ଏହି ଝିଅ ଲେଖିଥିବା ଚାରି ଗୋଟି ଚିଠିରୁ ଏହା ଜଣାପଡୁଥିଲା । ଏହି ଝିଅ ଓ ତାର ସ୍ୱାମୀଙ୍କର ଟଙ୍କା ଦରକାର । ସେମାନେ ୧୯୩୬ ମସିହାରେ ବିଭିନ୍ନ ସମୟରେ ନୁକାରାଜଠାରୁ ଟଙ୍କା ଧାର କରି ଆଣୁଥିଲେ । ଶେଷକୁ ଏହା ତିନିହଜାର ଟଙ୍କାରେ ପହଞ୍ଚିଲା । ସୁଧରହାର ଶତକରା ଅଠର ଥିଲା । ମୃତ ନୁକାରଜୁର ପିଠାପୁର ଘରୁ ଝିଅର ଦସ୍ତଖତ ଥାଇ ମିଳିଥିବା ପ୍ରାୟ ପଚାଶ ଗୋଟି ଚିଠି ଓ ଚିଠାରୁ ଏହା ପରିଷ୍କାର ଜଣାପଡୁଥିଲା । ୧୯୩୭ ମାର୍ଚ୍ଚମାସ ୨୦ ତାରିଖରେ ନୁକାରାଜୁ ପିଠାପୁରରେ ଗୋଟିଏ ଚିଠି ପାଇଲା । ଏଥିରେ ସେ ସେଇଦିନ ବା ତା ପରିଦିନ ବ୍ରହ୍ମପୁର ଆସି ଧାର ଟଙ୍କା ଫେରସ୍ତ ନେବାକୁ କୁହାଯାଇଥିଲା । ନିଜ ସ୍ତ୍ରୀକୁ ସେ ଏହି ଚିଠି କଥା ଜଣାଇ ବ୍ରହ୍ମପୁର ଚାଲି ଆସିଲା । ମାର୍ଚ୍ଚ ୨୧ ତାରିଖ ଦିନ ସେ ଆସି ଫେରସ୍ତ ବ୍ରହ୍ମପୁର ଟ୍ରେନ ଧରିଲା । ମାର୍ଚ୍ଚ ୨୩ ତାରିଖ ଦିନ ତାର ଖଣ୍ଡିତ ଶବ ପୁରୀରେ ପୁଲିଶ ପାଇଲେ । ପୁଲିଶ ସନ୍ଦେହରେ ନାରାୟଣ ସ୍ୱାମୀଙ୍କ ବ୍ରହ୍ମପୁର ଘର ତଲାସ କଲେ । ନିର୍ଭରଯୋଗ୍ୟ ପ୍ରମାଣ ପାଇ ନାରାୟଣ ସ୍ୱାମୀ ତାଙ୍କର ସ୍ତ୍ରୀ ତାଙ୍କର ଶାଳକ ଓ ତାଙ୍କର ଘରେ ରହୁଥିବା ନିଜ ଗୁମାସ୍ତାକୁ ପୁଲିଶ ଗିରଫ କଲେ ।

ବ୍ରହ୍ମପୁରରେ ଗୋଟିଏ ଦୋକାନରେ ଟ୍ରଙ୍କ ତିଆରି ହୋଇ ବିକ୍ରି ହୁଏ । ମାଲିକକୁ ପଚରା ଉଚରା କରି ଜଣାଗଲା ମାର୍ଚ୍ଚ ୨୨ ତାରିଖ ଉପରବେଳା ନାରାୟଣ ସ୍ୱାମୀଙ୍କର ଧୋବା ଦୋକାନକୁ ଆସି ଗୋଟିଏ ଟ୍ରଙ୍କ କିଣିବାକୁ ବରାଦ ଦେଲେ । ସେହି ଅନୁସାରେ ଗୋଟିଏ ଟ୍ରଙ୍କ ତାଙ୍କ ଘରକୁ ନିଆଯାଇଥିଲା । ମାତ୍ର ନାରାୟଣ ସ୍ୱାମୀ ଓ ତାଙ୍କ ପତ୍ନୀ ଏହା ଟିକେ ବଡ଼ ହୋଇଯାଉଛି ବୋଲି କହି ତାକୁ ଫେରାଇଦେଲେ । ଅପେକ୍ଷାକୃତ ଛୋଟ ଟ୍ରଙ୍କ ଗୋଟିଏ ଏହା ପରେ ଦୋକାନରେ ତାଙ୍କ ଧୋବା ବାଛିଲା ଓ ଏହା ତାଙ୍କ ଘରକୁ ନିଆଗଲା । ଏହି ବିକ୍ରି କଥା ଦୋକାନର ଖରିଦବିକ୍ରି ଖାତାରେ ଲେଖା ଯାଇଥିଲା । ଗଳିତ ଶବଥିବା ଟ୍ରଙ୍କଟି ସେ ବିକ୍ରି କରିଥିବା ଦୋକାନୀ ଚିହ୍ନଟ କଲା । ଧୋବାକୁ ଡକରାଗଲା । ସେ ମଧ୍ୟ ଏହି ଟ୍ରଙ୍କ ସେ ଖରିଦ କରି ନେଇଥିବା ମାନିଲା ମାତ୍ର ଖାତାରେ ଲେଖା ସୋମବାର ବିକ୍ରି ବଦଳରେ ସେ ଏହା ଶନିବାରର କଥା ବୋଲି କହିଲା । ଗାଙ୍ଗୁଲାବୋଲି ଗୋଟିଏ ଝଟକା ବାଲା ସାକ୍ଷ୍ୟ ଦେଲା । ସେ ଟ୍ରଙ୍କଟିକୁ ସୋମବାର ନିଜ ଗାଡ଼ିରେ ରେଳଷ୍ଟେସନକୁ ନେଇଥିଲା ସେଠାରେ ଏହା ଗାଡ଼ିରୁ ଓହ୍ଲାଯାଇ ଷ୍ଟେସନ ଭିତରକୁ

ଯିବା ସେ କହିଲା । ୯ଟକାର ଘୋଡ଼ା ଅମଣିଆ ଥିଲେ । ସେଥିପାଇଁ ଗାଡ଼ି ସାଙ୍ଗରେ ଦଉଡ଼ି ଦଉଡ଼ି ଆଉ ଜଣେ ୯ଟକାବାଲାର ସହାୟକ ଯାଉଥିଲା । ସେ ମଧ୍ୟ ସେଇଆ କହିଲା । ଜଣେ ବିଶିଷ୍ଟ ଲୋକ ୨୩ ତାରିଖ ସକାଳେ ନାରାୟଣ ସ୍ୱାମୀଙ୍କୁ ରେଳଷ୍ଟେସନରେ ଦେଖିଥିବାର ସାକ୍ଷ୍ୟ ଦେଲେ ମାତ୍ର ସେ ରେଳଗାଡ଼ିରେ ଗଲେ କି ନା ତାହା ଏହି ସାକ୍ଷୀକୁ ଜଣା ନ ଥିଲା । ମୁଦାଲା ନାରାୟଣ ସ୍ୱାମୀଙ୍କର ଜମାନବନ୍ଦି ଅପ୍ରେଲ ଚାରି ତାରିଖରେ ନିଆଗଲା । ସେ କହିଲେ ନୂକାରାଜୁ ୨୧ତାରିଖ ଦିନ ସଂଧ୍ୟାରେ ତାଙ୍କ ଘରକୁ ଆସିଥିଲା । ରାତିରେ ବାହାର ଘରେ ଶୋଇଥିଲା ଓ ୨୨ ତାରିଖ ସଂଧ୍ୟାରେ ପାସେଞ୍ଜର ଗାଡ଼ିରେ ଚାଲିଗଲା । ସେ ୨୩ ତାରିଖ ଦିନ ଗାଙ୍ଗୁଲୁ ୯ଟକାରେ ରେଳଷ୍ଟେସନ୍‌କୁ ଯାଇଥିଲେ । ଛତ୍ରପୁରର ଚିରଂଜିବୀ ରାଓ ପାଖରେ ତାଙ୍କର କାମ ଥିଲା । ଛତ୍ରପୁର ରେଳଷ୍ଟେସନରେ ଚିରଂଜୀବୀ ରାଓ ନ ଥିବା ଜାଣି ସେ ଭାଇଜାଗ ପାସେଞ୍ଜରରେ ଲେଉଟି ଆସିଲେ । ଜଗନ୍ନାଥପୁର ଷ୍ଟେସନରେ ଓହ୍ଲାଇ ସେଠାରୁ ନରେନ୍ଦ୍ରପୁରର ଜୁରିଆ ନାୟକ ପାଖକୁ ଯାଇଥିଲେ । ସେ ମଧ୍ୟ ନ ଥିଲା ତେଣୁ ତାଙ୍କୁ ବ୍ରହ୍ମପୁର ୯ଟକାରେ ଫେରିବାକୁ ପଡ଼ିଥିଲା । ଅପ୍ରେଲ ଚାରି ତାରିଖରେ ମୁଦାଲାମାନେ ଜେଲ ଗଲେ । ତାଙ୍କ ରହିବା ଘରେ କେହି ରହିଲେ ନାହିଁ । ସାତ ତାରିଖ ଦିନ ପୁଲିଶ ଘର ତଲାଶ କଲେ । ମୁଦାଲା ଜମାନବନ୍ଦୀ ମୁତାବକ ଘର ଭିତରେ ଖୋଳି ଦେଢ଼ଫୁଟ ଗହୀରରେ ଗୁଡ଼ିଏ ଛିଣ୍ଡାକନା ପାଇଲେ । ସେ ସବୁ ଧୂଆ ଯାଇଥିଲେ ମଧ୍ୟ ରକ୍ତ ଚିହ୍ନର ଦାଗ ଥିଲା । ଗାଧୁଆ ଘରେ ଗୋଟିଏ ବାକ୍ସ ଥିଲା । ସେଥିରୁ ଗୁଡ଼ିଏ କନା ମିଳିଲା । ସେ ସବୁ ଓଦା ଥିଲା ଓ ରକ୍ତର ଦାଗ ଲାଗିଥିଲା । ପୁଲିଶ ଚାରିଜଣ ମୁଦାଲାଙ୍କ ବିରୁଦ୍ଧରେ ଚାର୍ଜସିଟ୍ ଦାଖଲ କଲେ । ଛତ୍ରପୁରର ମାଜିଷ୍ଟ୍ରେଟ ଅଦାଲତରେ ମକଦ୍ଦମା ଦଉରା ସୁପର୍ଦ୍ଦ ପାଇ ସାକ୍ଷ୍ୟ ନିଆଗଲା । ମୁଖ୍ୟସାକ୍ଷୀ ମୃତ ବ୍ୟକ୍ତିକୁ ଜାଣି ନ ଥିବା କହିଲା । ସେ ବ୍ରହ୍ମପୁରକୁ ଗୋଟିଏ ମକଦ୍ଦମା ସଂକ୍ରାନ୍ତରେ ମାର୍ଚ୍ଚ ୧୭ ତାରିଖରେ ଆସିଥିଲା । ଟ୍ରଙ୍କ ଖରିଦ ଓ ୯ଟକାରେ ଏହାକୁ ବ୍ରହ୍ମପୁର ଷ୍ଟେସନକୁ ନେବା ମଧ୍ୟ ସେ ଅସ୍ୱୀକାର କଲା । ମିଛରେ ପୋଲିଶ ତାକୁ ମକଦ୍ଦମାରେ ପକାଇଛି ବୋଲି ସେ ଅଭିଯୋଗ କଲେ । ତେଣୁ ଛତ୍ରପୁରର ମାଜିଷ୍ଟ୍ରେଟ ଯଥେଷ୍ଟ ପ୍ରମାଣ ଅଭାବରୁ ଆସାମୀ ଜଣଙ୍କୁ ଦଉରା ସୁପର୍ଦ୍ଦ ନ କରି ଖଲାସ କରିଦେଲେ ।

ପୁଣି ମକଦ୍ଦମାର ବିଚାର ହେଲା । ମାନ୍ଦ୍ରାଜ ଓ ଓଡ଼ିଶାର ଟାଣୁଆ ଓକିଲମାନେ ଅସାମୀଙ୍କ ତରଫରୁ ଲଢ଼ିଲେ । ମାତ୍ର ଆସାମୀ ପାକାଳା ନାରାୟଣ ସ୍ୱାମୀ ଓ ଅନ୍ୟ ତିନି ଜଣ ବିଚାରରେ ଦୋଷୀ ସାବ୍ୟସ୍ତ ହେଲେ । ନାରାୟଣ ସ୍ୱାମୀ ନରହତ୍ୟା ଅପରାଧରେ ଫାଶି ଦଣ୍ଡ ପାଇଲେ । ଷଡ଼ଯନ୍ତ୍ର ମକଦ୍ଦମାରେ ପ୍ରମାଣ ନଷ୍ଟ କରିବା ଅପରାଧରେ

ଅନ୍ୟମାନେ ଦଣ୍ଡିତ ହେଲେ । ପାଟଣା ହାଇକୋର୍ଟରେ ରାୟ କାଏମ ରହିଲା । ସେ ବିଲାତରେ ପ୍ରିଭି କାଉନସିଲରେ ଅପିଲ କଲେ । ୧୯୩୯ ମସିହାରେ ସେଠାରେ ମଧ ଦଣ୍ଡାଦେଶ କାଏମ ରହିଲା । ସେହି ମକଦ୍ଦମାରେ ପ୍ରଦତ୍ତ ସାକ୍ଷ୍ୟ ଆଇନର ୩୨ ଧାରା ଓ ଫୌଜଦାରୀ କାର୍ଯ୍ୟକାରୀ ଆଇନର ୧୬୨ ଧାରାର ବାଖ୍ୟା ଏକ ନୂତନ ମାର୍ଗ ଉନମୋଚନ କଲା । ତଳ ଅଦାଲତରେ ମାଜିଷ୍ଟ୍ରେଟ ଏହି ଯେଉଁ ସାକ୍ଷ୍ୟ ପ୍ରମାଣ ଗ୍ରହଣ ଯୋଗ୍ୟ ନୁହେଁ ବୋଲି ଆସାମୀଙ୍କୁ ଖଲାସ କରିଥିଲେ ପାଗଲା ଜଜ୍ ବାୟାରର୍ସ ତାହା ବିଚାରକୁ ନେଇ ଆସାମୀମାନଙ୍କୁ ଦଣ୍ଡ ଦେଲେ । ଏହି ନିଷ୍ପତ୍ତି ମଧ ହାଇକୋର୍ଟ ଓ ବିଲାତରେ କାଉନସିଲରେ କାୟମ ରହିଲା । ଏବେ ମଧ ଏହା ଏକ ମାଇଲଖୁଣ୍ଟ ବୋଲି ଗଣା ଯାଉଛି । ଏହି ମକଦ୍ଦମାଟି ସମଗ୍ର ଭାରତବର୍ଷରେ ଟ୍ରଙ୍କ ମର୍ଡ଼ର କେଶ ନାମରେ ସୁପରିଚିତ । ଦୈବର କ୍ରୁର ପରିହାସ ସେ ଦିନ ପାମବିଚ ହୋଟେଲରେ ଯଦି ଏହି ପାଗଲା ଜଜ୍ ସ୍ଥାନ ପାଇଥାନ୍ତେ ଖଲାସ ପାଇଥିବା ଆସାମୀମାନଙ୍କର ଭାଗ୍ୟ ଜାଜ୍ଜ୍ୱଲ୍ୟମାନ ରହିଥାନ୍ତା ।

ବ୍ରହ୍ମପୁରରେ ଥିବାବେଳେ ବାୟାରସ ମାନ୍ଦ୍ରାଜ୍ ହାଇକୋର୍ଟର ଜଜଭାବରେ ପଦୋନ୍ନତି ପାଇଲେ । ସେଠାରେ ଯାଇ ଯୋଗ ଦେଲେ । ମାତ୍ର ନିଜର ଅସହିଷ୍ଣୁତା ଓ କ୍ଷଣକୋପନ ସ୍ୱଭାବ ତାଙ୍କୁ ଛାଡ଼ିଲା ନାହିଁ । ୧୯୪୬ ମସିହା । ଭାରତ ସ୍ୱାଧୀନ ହେବା ଛଳଛଳ ଦେଖା ଗଲାଣି । ଆଜାଦ ହିନ୍ଦ ଫୌଜର ସେନାପତିମାନଙ୍କର ବିଚାର ଚାଲୁଥାଏ । ରସିଦ୍ ଅଲି ନାମରେ ଜଣେ ସେନାଧକ୍ଷଙ୍କର ବିଚାରରେ ଦଣ୍ଡ ହୋଇଥାଏ । ଛାତ୍ରମାନେ ଏହି ଦଣ୍ଡ ବିରୁଦ୍ଧରେ ବିକ୍ଷୋଭ କରୁଥାଆନ୍ତି । ଜଷ୍ଟିସ୍ ବାୟାର୍ସ ହାଇକୋର୍ଟ ଯିବା ରାସ୍ତାରେ ସେମାନେ ତାଙ୍କୁ ବାଧା ଦେଲେ । ଉତ୍ୟକ୍ତ ହୋଇ ସେ ନିଜ ପାଖରେ ଥିବା ରିଭଲଭରରୁ ଗୁଳି ଚଳାଇ ଜଣେ ଛାତ୍ରଙ୍କୁ ହତ୍ୟା କଲେ । ନରହତ୍ୟା ଅପରାଧରେ ତାଙ୍କର ବିଚାର ହେଲା । ଶେଷରେ ମାନ୍ଦ୍ରାଜର ଚିଫ୍ ପ୍ରେସିଡେ଼ନ୍ସି ମାଜିଷ୍ଟ୍ରେଟ ମକଦ୍ଦମାର ଶୁଣାଣି କରି ତାଙ୍କୁ ଖଲାସ କରିଦେଲେ । ରାଜ୍ୟରେ କଂଗ୍ରେସ ମନ୍ତ୍ରୀମଣ୍ଡଳ । ରାଜଗୋପାଳଚାରୀ ମୁଖ୍ୟମନ୍ତ୍ରୀ । ଏହପରି ଜଣେ ପାଗଳ ଜଜ୍‌ଙ୍କଠାରୁ ତ୍ରାହି ପାଇବାକୁ ସେ ବହୁତ ବୁଝା ସୁଝାକରି ତାଙ୍କର ଉଚିତ୍ ପେନସନ୍ ଓ ଥୟଥାନର ବ୍ୟବସ୍ଥା ସହିତ ତାଙ୍କୁ ଦେଶକୁ ପଠାଇଦେଲେ ମାତ୍ର ଟ୍ରଙ୍କ ମର୍ଡ଼ର କେଶ୍ ତାଙ୍କର ଅମ୍ଳାନ କୀର୍ତ୍ତି ରହିଲା ।



# ଆଣ୍ଠୁକୁଡ଼ା ପଣ୍ଡିତେ

ଆଜିକୁ ଶହେ ବାଇଶ ବରଷ ତଳେ ଆମର ଦେଶର କଂଗ୍ରେସର ପ୍ରଥମ ସଭା ବମ୍ବେରେ ବସିଲା । ସେଇ ବରଷ ଜଗତସିଂହପୁର ଜିଲ୍ଲାର ବାଲିକୁଦାରେ ଜମିଦାର ପରୀକ୍ଷିତ ଦାସ ଗୋଟିଏ ମାଇନର ସ୍କୁଲ ବସେଇଲେ । ଧାଡ଼ିଏ ଚାଳଘର । ସେଇଠି ସ୍କୁଲ ଶ୍ରେଣୀମାନ ଚାଲିଲା । ପାଖ ଆଖରେ ଆଉ କେଉଁଠି ସ୍କୁଲ ନଥାଏ । ଦୂର ଗାଁରୁ ମଧ ପିଲାମାନେ ଆସିଲେ । ସେମାନେ ରହିବାର ସୁବିଧା କରାଗଲା । ଦିନକୁ ଅଧକେଜି ଚାଉଳ, ଛଅଗ୍ରାମ ଡାଲି, ଏବର ଦିଓଟି ନୂଆ ପଇସା ଖରଚା ଦେଲେ ସେଇଥିରେ ସବୁ ଚଳିଯାଏ । ସେ କାଳ ବଜାରରେ ଚାଉଳ ଟଙ୍କାରେ ପନ୍ଦର କେଜି । କେହି କିନ୍ତୁ ତିନି ବରଷଯାଏ ସେ ସ୍କୁଲରୁ ପାସ୍ କରି ପାରିଲେ ନାହିଁ ।

ଜମିଦାର ମନ ଦୁଃଖ କଲେ । କଟକରୁ କମିସନର ସାହେବ ବିଜେ କଲେ । ସ୍କୁଲ ଦେଖିଲେ । ଭଲ ପାଠପଢ଼ା ହେବାକୁ ବାଟ ବତାଇଦେଲେ । ଯାହାହେଉ ସେଇ ବରଷ ଦି'ଜଣ ପିଲା ପାସ୍ କଲେ । ମାତ୍ର ତା'ଆଗରୁ ଥେଲାଘର ବାପମାନେ ନିଜ ପିଲାମାନଙ୍କୁ ଫେଲ ହେବା ଡରରେ କଟକରେ ପଢ଼ିବାକୁ ପଠେଇ ଦେଲେ । ସେଇ ବରଷ କଟକରେ ବାଲିକୁଦାରୁ ଯାଇ ପଢୁଥିବା ଗୋଟିଏ ପିଲା ପରୀକ୍ଷାରେ ଓଡ଼ିଶାରେ ପ୍ରଥମ ହେଲା । ତା'ର ବଡ଼ ଭାଇ ମଧ ଓଡ଼ିଶାରେ ପନ୍ଦର ନମ୍ବର ସ୍ଥାନ ଅଧିକାର କରିଥିଲା ।

ଯେ ପ୍ରଥମ ହୋଇଥିଲେ ତାଙ୍କ ନାଁ ବାଳ ମୁକୁନ୍ଦ କାନୁନ୍‌ଗୋ । ସେ ପରେ ପାଠ ପଢ଼ି ବଡ଼ ଚାକିରି ପାଇ ଦିପୋଟି ହେଲେ । ତାଙ୍କର ଏକମାତ୍ର ପୁଅ ନିତ୍ୟାନନ୍ଦ କାନୁନ୍‌ଗୋ ଓଡ଼ିଶା ଓ କେନ୍ଦ୍ରରେ ବହୁଦିନ ମନ୍ତ୍ରୀ ଥାଇ ପରେ ଗୁଜୁରାଟ ଓ ବିହାରର ରାଜ୍ୟପାଳ ହୋଇଥିଲେ । ସେତେବେଳେ ସେଇ ମୁଲକରେ ସେ ସ୍କୁଲ ଖୁବ୍ ନାମଜାଦା ଥିଲା । ବହୁତ ପାଠୁଆ ପିଲା ସେଠାରୁ ବାହାରିଲେ । ସେମାନେ ପାସ୍ କରି ଦେଶରେ ସବୁଦିଗରେ

ନାଁ କମେଇଲେ । ଓଡ଼ିଶାରେ ଜଣେ ନାମାଜାଦା କଲେଜ ଶିକ୍ଷକ ଓ କହିବାବାଲା ଶ୍ରୀରାମଚନ୍ଦ୍ର ଦାଶ ୧୯୩୧ ମସିହାରେ ସେଇ ସ୍କୁଲରୁ ବୃତ୍ତିପାଇ ପାସ୍ କରିଥିଲେ ।

ମାତ୍ର ସବୁଠାରୁ ବଡ଼ ନାମ କମେଇ ଥିବା ଛାତ୍ର ହେଲେ ଅଧ୍ୟାପକ ପ୍ରାଣକୃଷ୍ଣ ପରିଜା । ତାଙ୍କ ଗାଁ ଇଚ୍ଛାପୁର ସ୍କୁଲଠାରୁ ତିନି କିଲୋମିଟର ଦୂର । ସେ ପ୍ରାଥମିକ ପାଠ ପଢ଼ାରେ ବୃତ୍ତି ପାଇଲେ । ଆଉ ଅଧିକ ପାଠ ନ ପଢ଼ି ଜମିଦାରି ସିରସ୍ତାରେ କାମ ଶିଖିଲେ । ତାଙ୍କ ବାପା ଦୂର ଜାଗାରେ ଚାକିରି କରୁଥାନ୍ତି । ଘରେ ମାଆ ଥାଆନ୍ତି । ଖବର ପାଇ ସ୍କୁଲରେ ପଣ୍ଡିତ ଦିନେ ତାଙ୍କ ମାଆଙ୍କ ପାଖକୁ ଗଲେ । ଅଧିକ ପାଠ ପଢ଼ାଇବାକୁ ବୁଝାଇଲେ । ସେ ରାଜି ହେଲେ । ନାମ ଲେଖାଗଲା । ପ୍ରାଣକୃଷ୍ଣ ତିନି ବରଷ ପଢ଼ି ସେଇଠୁ ମାଇନର ପାସ୍ କଲେ । କଟକ ଯାଇ ପଢ଼ିଲେ । ଏତେ ଭଲ ପାଠ ପଢୁଥାଆନ୍ତି ଯେ, ବରଷକୁ ଦି'ଦିଇଟା କ୍ଲାସ ସେ ଟପିଗଲେ । ଶେଷକୁ ୧୯୦୯ ମସିହାରେ ଏବର ବିହାର ଓଡ଼ିଶା ଅବିଭକ୍ତ ବଙ୍ଗଳା ଆସାମକୁ ନେଇ କଲିକତା ବିଶ୍ୱବିଦ୍ୟାଳୟରେ ସଂସ୍କୃତରେ ପ୍ରଥମ ଓ ସବୁ ମିଶାଇ ନବମ ହୋଇ ସେ ପ୍ରବେଶିକା ପାସ୍ କଲେ । କଟକରୁ ବି.ଏସ୍.ସି. ପାସ୍ କଲେ । କଲିକତା ଯାଇ ଷଷ୍ଠ ବାର୍ଷିକ ଶ୍ରେଣୀରେ ପଢୁଥିବା ବେଳେ ବିଲାତର କେମ୍ବ୍ରିଜରେ ଉଦ୍ଭିଦ ବିଜ୍ଞାନ ପଢ଼ିବାକୁ ତାଙ୍କୁ ଗୋଟାଏ ବୃତ୍ତି ମିଳିଲା । ପ୍ରଥମ ମହାଯୁଦ୍ଧ ଲାଗିବା ଆଗରୁ ସେ ବିଲାତ ଗଲେ । ଯୁଦ୍ଧ ଲାଗିଗଲା । ଘମାଘୋଟ ଲଢ଼େଇ । ତାଙ୍କ ପାଠପଢ଼ା ସରିଗଲେ ମଧ ତାଙ୍କୁ ଫେରିବାକୁ ଆଉ ଜାହାଜ ମିଳିଲା ନାହିଁ । ଶତ୍ରୁପକ୍ଷ ଜର୍ମାନର ବୁଡ଼ାଜାହାଜ ଜଳଜାହାଜମାନଙ୍କୁ ତୋପଗୁଳାରେ ଜଖମ କରି ବୁଡ଼େଇ ଦେଉଥାଏ । ବାଧ ହୋଇ ସେ ବିଲାତରେ ଛ' ବରଷ ରହିଗଲେ । ଗବେଷଣା କଲେ । ସାତବରଷରେ ଶିକ୍ଷା ବିଭାଗର ସବୁଠାରୁ ବଡ଼ ଚାକିରି ଆଇ.ଇ.ଏସ୍. ପାଇ ସେ ଓଡ଼ିଶାକୁ ଲେଉଟି ଆସିଲେ । କଟକର ଚାଉଳିଆ ଗଞ୍ଜରେ ନୂଆହୋଇ ଶୂନଛାତ କୋଠାକୁ କଲେଜ ଉଠି ଯାଇଥାଏ । ସେ ଆସି ସେଇଠି କାମ କଲେ । ଖୁବ୍ ନାମ କମେଇଲେ । ବହୁତ ବଛା ବଛା ବୁଦ୍ଧିମାନ ଦରିଦ୍ର ପିଲାଙ୍କୁ ସାହାର୍ଯ୍ୟ କଲେ । ପିଲାମାନେ କିପରି ଭଲ ମଣିଷ ହେବେ, ଭଲ ପାଠ ପଢ଼ିବେ, ଦେଶ ଓ ଦଶର ମଙ୍ଗଳ କରିବେ, ତାହା ସେ ସେମାନଙ୍କୁ ଶିକ୍ଷା ଦେଲେ । ଏଇଥିପାଇଁ ମଧ ସେ ସବୁବେଳେ ପିଲାମାନଙ୍କ ସାଙ୍ଗରେ ମିଳିମିଶି ରହିଲେ । ତାଙ୍କ ନାଁ ପରିଜା ସାହେବ ବୋଲି ଚାରିଆଡ଼େ ଜଣାଶୁଣା ହୋଇଗଲେ ।

ଯେଉଁ ପଣ୍ଡିତ ତାଙ୍କୁ ଆଣି ଚତୁର୍ଥ ଶ୍ରେଣୀରେ ନାମ ଲେଖାଇ ଥାଆନ୍ତି ତାଙ୍କୁ ସେ ଭାରି ଭକ୍ତି କରନ୍ତି । ତାଙ୍କ କଥା ମାନନ୍ତି । ତାଙ୍କ ପରାମର୍ଶରେ ଦରିଦ୍ର ପିଲାଙ୍କୁ ସାହାର୍ଯ୍ୟ କରନ୍ତି । ତାଙ୍କୁ ଦେଖିବାକୁ ଯାଆନ୍ତି । କଟକ ଡକେଇ ନେଇ ତାଙ୍କୁ ନିଜ ଘରେ ରଖି

ଖୁଆଇ ପିଆଇ ନୂଆ ଧୋତି କୁରୁତା ପିନ୍ଧାଇ, ନାନା ଉପହାର ଦେଇ, ମଟର ଟିକେଟ କାଟି ପୁଣି ଗାଁକୁ ପଠେଇ ଦିଅନ୍ତି । ଗୋଟିଏ ମାଟି ହାଣ୍ଡିରେ ଲଡୁ ମିଠେଇ ହାଣ୍ଡିଏ ସାଙ୍ଗରେ ଦିଅନ୍ତି ।

ମାଇନର ଇସ୍କୁଲର ସାମନା ଫାଟକ ଆଗରେ ରାସ୍ତା । ସେଇଟା ହାଟକୁ ଯାଇଛି । ବାଟ ଆଗକୁ ଶହେ ମିଟର ହେବ । ମଙ୍ଗଳବାର ଶୁକ୍ରବାର ଦିଦିନ ହାଟ ବସେ । ଇସ୍କୁଲ ଛୁଟି ହୋଇଗଲେ ପଣ୍ଡିତେ ନୂଆ ଲୁଗା କୁରୁତା ପନ୍ଧି ଚାଦର କାନ୍ଧରେ ପକାଇ ଫାଟକ ପାଖରେ ଠିଆ ହୁଅନ୍ତି । ବହୁଦିନ ସେ ଇସ୍କୁଲରେ ରହିଲେଣି । ଆଖପାଖରେ ଯେତେ ପାଠୁଆ ଲୋକ ତାଙ୍କର ଛାତ୍ର । ଠିଆହୋଇ ସେମାନେ ତାଙ୍କୁ ଜୁହାର ହୁଅନ୍ତି । ନୂଆ ଧୋତି ଚାଦର କୁରୁତାକୁ ଅନେଇଲେ ପଣ୍ଡିତେ କହିବେ କଣ ଦେଖୁଛ ? କଟକ ଯାଇଥିଲି । ପାଣ୍ଡୁ ବଙ୍ଗଳାରେ ରହିଲି ତିନିଦିନ । ଛାଡୁ ନ ଥିଲା । ହେଲେ ଇସ୍କୁଲ ଅଛି, ଚାଲି ଆସିଲି । ବଙ୍ଗଳା ତ ଇନ୍ଦ୍ରପୁରୀ । ବିଜୁଳି ଆଲୁଅ ପଙ୍ଖା, କଳପାଣି କେଡ଼େ କେଡ଼େ ଘର । କେତେ କେତେ ସାଇବସୁବା ତା ଘରକୁ ଆସିବେ । କଲେଜର ନିଜର ବିଜୁଳି ଥାଏ । ମଟର ଗାଡ଼ିରେ ଘରୁ ଯା ଆସ । ମତେ ଲଡୁ ହାଣ୍ଡିଏ ଦେଲା । ମୋର ଖାଇବାକୁ କିଏ ଅଛି ? ଟିକେ ରହ ଆଣୁଛି । ପଣ୍ଡିତେ ଗୋଟିଏ ଲଡୁ ଭାଙ୍ଗି ଅଧେ ଦେବେ । ଏମିତି ମାସେ ଯାଏ ଚାଲୁଥିବ । ସେତେବେଳେ ଖାଲି ଦେଶୀ ଘିଅର କାରବାର । ଗନ୍ଧେଇ ଯାଏ ନାହିଁ ସିନା ଫିମ୍ପି ମାରେ । ମାତ୍ର ପଣ୍ଡିତଙ୍କର ବାଣ୍ଟିବା ବନ୍ଦ ହେବ ନାହିଁ । ନିଜ ଛାତ୍ରର ଆଦର ଅଭ୍ୟର୍ଥନା ମନେ ପକାଇ ଲୋକମାନଙ୍କୁ ଛଣେଇ ଦେଇ ପଣ୍ଡିତେ ନିଜକୁ ଗର୍ବିତ ମନେ କରନ୍ତି ।

୧୯୩୫ ମସିହା । ସାବିତ୍ରୀ ଅମାବାସ୍ୟା ଦିନ ସ୍କୁଲ ଛୁଟି । ସେ ଦିନ ସେ ପଣ୍ଡିତଙ୍କୁ ଦେଖିବାକୁ ଆସିବାର ଥାଏ । ପଣ୍ଡିତେ ଆଗରୁ ସମସ୍ତଙ୍କୁ କହିଥାଆନ୍ତି, ମୋ ପାଣ୍ଡୁ ବିଲାତ ଫେରନ୍ତା ସାହେବ । ସେ ଆସିବ । ତମେ ସବୁ ଆସି ଦେଖିବ । ପିଲାମାନେ ତ ଆସିଲେ । ପୁଣି ଆଖପାଖ ଗାଁର ବହୁତ ଲୋକ ମଧ୍ୟ ତାଙ୍କୁ ଦେଖିବାକୁ ଆସିଲେ । ସେ ମଟରରୁ ଓହ୍ଲାଇ ନିଜ ପଣ୍ଡିତଙ୍କ ଗୋଡ଼ତଳେ ମୁଣ୍ଡିଆ ମାରିଲେ । ସାହେବୀ ପୋଷାକ ଛାଡ଼ି ସେ ଦିନ ଧୋତି ପଞ୍ଜାବି ପିନ୍ଧି କାନ୍ଧରେ ଚାଦର ପକାଇ ଥାଆନ୍ତି । ଛାତି ପକେଟ୍‌ରେ ଘଣ୍ଟା ଚେନ୍, ଆଖିରେ ସୁନା ଚଷମା । ପଣ୍ଡିତ ନନ୍ଦ କିଶୋର ସେନଗୁପ୍ତଙ୍କର ସ୍ତ୍ରୀ ଅନେକ ଦିନରୁ ମରି ଯାଇଥାଆନ୍ତି । ସେ ଜମିଦାରଙ୍କ ଘରେ ରହୁଥାଆନ୍ତି । ପତିତପାବନ ମନ୍ଦିରର ପ୍ରସାଦ ପାଉଥାଆନ୍ତି । ତାଙ୍କର ଗୋଟିଏ ବୋଲି ଝିଅ ଥିଲା । ସେ ମଧ୍ୟ ସେତେବେଳକୁ ମରି ଯାଇଥାଏ । ପଣ୍ଡିତେ ନିଜ ପ୍ରିୟ ଛାତ୍ରଙ୍କୁ ତଳୁ ଉଠେଇ ନେଲେ । ଭୋ ଭୋ ହୋଇ କାନ୍ଦି ଉଠିଲେ । ପାଗଳ ପରି ପାଟି କରି କହିଲେ, "କିଏ କହୁଛି ମୋତେ

ଆଣ୍ଠୁକୁଡ଼ା ବୋଲି ? ଏ ପାଣୁ ମୋର ପୁଅ । ଏମିତି ଯେତେ ପିଲା ଏଇ ସ୍କୁଲରୁ ମୋର ବେତ ଖାଇ ମଣିଷ ହୋଇଛନ୍ତି କି ଦି' ଅକ୍ଷର ପଢ଼ିଛନ୍ତି ସେଇମାନେ ସମସ୍ତେ ମୋର ପୁଅ । ମତେ ସେଇମାନେ ପିଣ୍ଡ ଦେଉଥିବେ ମୋର ପଛକେ କେହି ନଥାଉ ।" ସବୁ ଲୋକ ତାଟକା ହୋଇ ଦେଖୁଥାଆନ୍ତି ।



# ବକସିସ୍

ସବୁ ଦେଶରେ ବକସିସ୍ ଦେବା ପ୍ରଥା ଆଦିମ କାଳରୁ ଚଳି ଆସୁଅଛି । ତଫାତ୍ ଏତିକି କି ଆକାରରେ କି ଉପାୟରେ ସେ ବକସିସ୍ ଦିଆ ଯିବ ତା ଜାଣିବାର କଥା । ବକସିସ୍ ଦେଇ ଜାଣିଲେ ନ ହେବା କଥା ହୋଇପାରିବ । ହୋଇ ଯାଇଥିବା କଥା ବଦଳିଯିବ । କ୍ଷୁଦ୍ର ଗୋଟିଏ ଉଦାହରଣ :- ଋଷ ଦେଶର ବିପ୍ଳବ ପୂର୍ବର କଥା । ଋଷ ଦେଶରେ ଜାର ଶାସନ ଜାରିଥାଏ । ଜଣେ ଯୁବକ କୂଟନୀତିଜ୍ଞ ଭ୍ଲାଡ଼ିଭଷ୍କ ଯାଉଥାଆନ୍ତି । ତାଙ୍କର କାମ ଥାଏ ଋଷ କର୍ତ୍ତୃପକ୍ଷଙ୍କ ସହିତ କଥାବାର୍ତ୍ତା କରି କେତେକ ଖଣିଜ - ପଦାର୍ଥନେଇ କିପରି କିଛି କନସେସନ (ରିହାଇତି) ପାଇବେ । ଏଇଥିପାଇଁ ଋଷକୁ ସେ ଗଲେ । ଋଷ କର୍ତ୍ତୃପକ୍ଷଙ୍କ ସହିତ କଥାବାର୍ତ୍ତା କଲେ । କାହିଁ ସେଥିରେ କିଛି ଫଳ ହେଲା ନାହିଁ । ନିରାଶ ହୋଇ ସେ ଫେରି ଆସିଲେ । ଘରକୁ ଯିବାକୁ ପେଡ଼ି ପୁଟୁଳା ବାନ୍ଧି ତିଆରି ହୋଇ ରହିଲେ । ଜଣେ ବନ୍ଧୁଙ୍କ ସହିତ ସାକ୍ଷାତ ହେଲା ।

ସେ ପଚାରିଲେ "କଣ ବକସିସ୍ ଦେଲ" ?

ଉତର ମିଳିଲା "ଆପଣ ଜାଣନ୍ତି ନାହିଁ କି ଧରଣର ଲୋକ ସେମାନେ । ସେମାନେ ମାନ ସମ୍ଭ୍ରମରେ ଜାରଙ୍କ ପରି ଖ୍ୟାତି ସମ୍ପନ୍ନ। ବନ୍ଧୁ ଜଣକ ଉତର ଦେଲେ" ଯାହା ହେଲେ ବି ବିନା ବକସିସ୍‌ରେ କାମ ହୋଇ ପାରିବ ନାହିଁ । ତାଙ୍କୁ ବକସିସ୍ ଦିଆଯାଇ ପାରିବ । ସେ ତାହା ଚାହାନ୍ତି । ତମେ ଭ୍ଲାଡ଼ିଭଷ୍କ ଫେରିଯାଅ । ପୁଣି ଚେଷ୍ଟା କର । ନ ହେଲେ ତମଠାରୁ ବେଶୀ ନୁଆଣିଆଁ ଥିବା କେହି ଲୋକ ଏ ସୁବିଧା ମାରିନେବେ । ତମେ ତ ଜଣେ କୂଟନୀତିଜ୍ଞ । କି ଉପାୟରେ କେଉଁ କାମଟା ସହଜରେ ଓ ସୂକ୍ଷ୍ମରେ ହୋଇ ପାରିବ ସେ କଥା ତମକୁ ତ କିଏ ଶିଖାଇବ ନାହିଁ । କୂଟନୀତିଜ୍ଞ ଜଣକ ଫେରିଗଲେ ଭ୍ଲାଡ଼ିଭଷ୍କ ପୁଣି ଚେଷ୍ଟା କରିବାକୁ ।

କିଛି ଦିନ ପରେ ଯେତେବେଳେ ସେ କୃତକାର୍ଯ୍ୟ ହୋଇ ଫେରିଲେ ସେ ପ୍ରଥମେ ତାଙ୍କର ବନ୍ଧୁଙ୍କୁ କୃତଜ୍ଞତା ଜଣାଇଲେ । କହିଲେ ପୁଣିଥରେ ମୁଁ ସର୍ବଶକ୍ତିମାନ ଜାରଙ୍କର ସେହି ପ୍ରତିନିଧିଙ୍କ ସହିତ ଦେଖାକଲି । କହିଲି ଆଗଥର ଯେଉଁ ଅଞ୍ଚଳ ପାଇଁ ଆମେ ବିଶେଷ ସୁବିଧା ଚାହୁଁଛୁ ତାର ସୀମା ଦେଖାଇ ପାରି ନ ଥିଲି । ତେଣୁ ହଜୁରଙ୍କୁ ଆମର ସରକାର କେଉଁ ଅଞ୍ଚଳରେ କି ପ୍ରକାର ସୁବିଧା ଚାହୁଁଛନ୍ତି ତାହା ବୁଝାଇବାରେ ମୋର ଅକ୍ଷମତା ହଜୁର ମାଫ କରିବେ । ସେ ଅଞ୍ଚଳର ଗୋଟିଏ କ୍ଷୁଦ୍ର ନକ୍ସା ଅଙ୍କନ କରି ଯଦି ମୁଁ ସମସ୍ତ ବିଷୟ ଦେଖାଇ ଦିଏ ତାହାହେଲେ ହଜୁରଙ୍କୁ ସବୁ ବିଷୟ ପରିଷ୍କାର ଭାବରେ ବୁଝାଇ ଦେବାକୁ ମୁଁ ସକ୍ଷମ ହେବି । ମୋର ହଜାର ପଦ କଥା ଅପେକ୍ଷା ଏହି କ୍ଷୁଦ୍ର ନକ୍ସା ଅଙ୍କନ ସମସ୍ତ ବିଷୟ ବୁଝିବାରେ ଅଧିକ ସହାୟକ ହେବ । ଋଷ ପ୍ରତିନିଧି ରାଜି ହେଲେ । ମୁଁ ନିଜର ପକେଟ୍‌ରେ ଥିବା ବ୍ୟାଗରୁ କେତେ ହଜାର ଟଙ୍କାର (ରୁବଲର) ଗୋଟିଏ ନୋଟ୍ ବାହାର କଲି । ତା ଉପରେ ନକ୍ସା ଆଙ୍କି ସବୁ ବିଷୟ ବୁଝାଇଲି । ଫେରିବାବେଳେ କହିଲି ହଜୁର ଏ କ୍ଷୁଦ୍ର କାଗଜରେ ଅଙ୍କା ଯାଇଥିବା ନକ୍ସାଟି ରଖନ୍ତୁ । ଆବଶ୍ୟକ ବେଳେ ଏ ନକ୍ସା ପ୍ରତି ଟିକେ ଦୃଷ୍ଟିପାତ କରୁଥିବେ । ତାହାହେଲେ ଆମର କାର୍ଯ୍ୟର ଗୁରୁତ୍ୱ ବୁଝି ତାହା ସହଜରେ ହୋଇ ପାରୁଥିବ । ବୋଲିବା ବାହୁଲ୍ୟ ଅଳ୍ପ କେତେ ଘଣ୍ଟା ପରେ ମତେ ହୁକୁମ ମିଳିଗଲା ମହାମାନ୍ୟ ସରକାର ତମର ପ୍ରାର୍ଥନା ମଞ୍ଜୁର କରିଛନ୍ତି । ପ୍ରାୟ ପଚାଶ ବରଷ ତଳେ ଏକ ପତ୍ରିକାରେ ଏହା ପଢ଼ିଥିଲି । ଏସବୁ ଅତି ସୂକ୍ଷ୍ମ ମାର୍ଗ, କାର୍ଯ୍ୟସିଦ୍ଧି ଉଦ୍ୟମରତ କର୍ତ୍ତାମାନେ ଏହା ମନେ ରଖିଥାଆନ୍ତି । ହଜାର ଉଦ୍ୟମ ଦୁର୍ନିତି ନିବାରଣ ପାଇଁ ଏମିତିଆ ବ୍ୟର୍ଥ ହେଉଛି ।



# ଗାନ୍ଧୀଜୀଙ୍କ ବିଲାତ ଗସ୍ତ ୧୯୩୧

ଗୋଲଟେବୁଲ ବୈଠକରେ ଯୋଗ ଦେବାପାଇଁ କଂଗ୍ରେସର ଏକମାତ୍ର ପ୍ରତିନିଧି ଭାବେ ଅଗଷ୍ଟ ୨୯ ତାରିଖରେ ଜାହାଜଚଢ଼ି ଗାନ୍ଧୀଜୀ ବିଲାତ ଗଲେ । ସାଙ୍ଗରେ ବ୍ୟକ୍ତିଗତ ସଚିବ ମହାଦେବ ଦେଶାଇ ପ୍ୟାରେଲାଲ ଓ ମୀରା ବେନ ମଧ୍ୟ ଯାଇଥିଲେ । ବୈଠକ ସଫଳ ହେଲା ନାହିଁ ମାତ୍ର ଏହି ଗସ୍ତ ତାଙ୍କର ଲକ୍ଷ୍ୟ ଓ ଜୀବନ ଦର୍ଶନକୁ ଇଉରୋପରେ ପ୍ରଚାର ଓ ପ୍ରସାର କରିବାରେ ସହାୟକ ହୋଇଥିଲା ।

'ରାଜପତ୍ତାନା' ଜାହାଜରେ ସେ ପ୍ରତିଦିନ ସକାଳ ଚାରିଟାରେ ଉଠି ପ୍ରାର୍ଥନା କରୁଥିଲେ । ଏଥିରେ ଅଳ୍ପ ସଂଖ୍ୟକ ଲୋକ ଯୋଗଦେଉଥିଲେ ମାତ୍ର ସଂଧ୍ୟା ପ୍ରାର୍ଥନାରେ ଜାହାଜର ସବୁ ଭାରତୀୟ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ, ବୌଦ୍ଧ, ଶିଖ ଓ ପାରସୀମାନେ ଯୋଗ ଦେଉଥିଲେ। କେତେଜଣ ଇଉରୋପିଆନ ମଧ୍ୟ ଆସୁଥିଲେ । ସବୁ ପ୍ରାର୍ଥନାର ଗୁରୁତ୍ୱ ସେ ବୁଝାଉଥିଲେ। ପ୍ରାର୍ଥନା ପରେ ଦିବେଳା ଗାନ୍ଧିଜି ଛେଳିଦୁଧ, ଅଙ୍ଗୁର ଆଦି ଫଳରେ ତାଙ୍କର ଭୋଜନ ସାରୁଥିଲେ । ସେଥିରୁ ଛୋଟ ପିଲାଏ ଭାଗ ପାଉଥିଲେ । ତାଙ୍କର ବାଟରେ ଅସୁବିଧା ନ ହେବା ପାଇଁ ତାଙ୍କର ଭକ୍ତମାନେ ବହୁତ ଜିନିଷ ଜାହାଜରେ ଲଦି ଥିଲେ । ଗାନ୍ଧିଜୀ କହିଲେ ସେମାନେ ଭାବୁଛନ୍ତି ସେ ଯେମିତି ପାଞ୍ଚ ବରଷ ପାଇଁ ଯାଉଛନ୍ତି ଜାହାଜର ପ୍ରଥମ ରହଣିରେ ସେ ୭ଟି ବଡ଼ ସୁଟକେଶ ଓ ଗୋଟିଏ ଟ୍ରଙ୍କ ଉତାରି ଦେଲେ । ତାଙ୍କୁ ଅନେକ ଶାଲ ମିଳିଥାଏ । ସେଥିରେ ଗୋଟାଏ ଦୋକାନ ଖୋଲା ଯାଇ ପାରିଥାନ୍ତା ବୋଲି ସେ କହିଲେ । ସିମଳା ଶୀତରେ ଯଦି ଖଦଡ଼ ଧୋତି କରୁତା ଓ ହଳେ ଚଟିରେ ଚଳି ହେଉଛି ଲଣ୍ଡନରେ ମଧ୍ୟ ସେଇଆ ହେବ । ଗୋଟିଏ ଖୁବ ମୂଲ୍ୟବାନ ଶାଲ ଦେଖି ଗାନ୍ଧିଜୀ କହିଲେ କଣ ଦରିଦ୍ରର ପ୍ରତିନିଧି ଭାବେ ସେ ଏହା ବ୍ୟବହାର କରିବେ । ଏହା ଏଡ଼େ ନରମ ଥିଲା ଯେ ଗୋଟିଏ ମୁଦିରେ ତାକୁ ଗଳେଇ ଦିଆଯାଇପାରିବ । ତାକୁ ନିଲାମ କରାଗଲା । ସାତ ହଜାର ଟଙ୍କାରେ ହରିଜନ ପାଣ୍ଠିପାଇଁ । ଜାହାଜରେ ନିୟମିତ ସୂତାକଟା, ପତ୍ର ପତ୍ରିକା ପାଇ ଓ ପତ୍ରର ଉତ୍ତର ଲେଖିବା ଗାନ୍ଧିଜିଙ୍କର

କାର୍ଯ୍ୟ ଥିଲା । ସେପ୍ଟେମ୍ବର ୧୨ ତାରିଖ ଶନିବାର ଲଣ୍ଡନରେ ପହଞ୍ଚି ସେ ସେଠାକାର ଦରିଦ୍ର ବସ୍ତି ଇଷ୍ଟଏଣ୍ଡର କିଙ୍ଗସ୍‌ଲି ହଲ ନାମକ କୋଠାରେ ଯେଉଁ ଅଂଶରେ ତାଙ୍କର ଅତିଥି ସତ୍କାରକ ମୁରିଏଲ ଲେଷ୍ଟର ରହୁଥାନ୍ତି ସେଠାକୁ ଗଲେ ।

ବରଷା ହେଉଥିଲା ମାତ୍ର ସେ ଚାଲି କରି ରହିବା ଜାଗାକୁ ଗଲେ । ବାଟରେ ସବୁ ଶ୍ରେଣୀର ଲୋକ ତାଙ୍କୁ ଦେଖୁଥାଆନ୍ତି ଓ ଅଭିନନ୍ଦନ ଜଣାଉଥାନ୍ତି । ବହୁ ଧର୍ମ ପ୍ରଚାରକ, ସାହିତ୍ୟ ଓ କଳାପ୍ରେମୀ, ରାଜନୀତିଜ୍ଞ, ମହିଳା, ଓ ଶ୍ରମିକ ଅନୁଷ୍ଠାନର କର୍ମକର୍ତ୍ତା ମିଶି ପ୍ରାୟ ହଜାରେ ଲୋକ । ତାଙ୍କୁ ସମ୍ବର୍ଦ୍ଧନା ଜଣାଇଲେ । ରବିବାର ଦିନ ଆମେରିକାବାସୀଙ୍କ ଉଦ୍ଦେଶ୍ୟରେ ସେ ଏକ ବକ୍ତବ୍ୟ ଦେଲେ । ସୋମବାର ସବୁ ଖବରକାଗଜ ତାଙ୍କ ଫଟୋ ଓ ସମ୍ବର୍ଦ୍ଧନା ଛପାଇଲେ । ତାଙ୍କୁ ଶୁଭାଗମନ ଜଣାଇ ଓ ସଫଳତା କାମନା କରି ଅନେକ ଚିଠି ଆସିଲା । ଜଣେ ଲେଖିଲେ ତାଙ୍କ ଭାଷଣରେ ମୁଗ୍ଧ ହୋଇ ସେ ୫୦ ପାଉଣ୍ଡ ଗ୍ରହଣ କରିବାକୁ ପଠାଇଛନ୍ତି । ତାଙ୍କ ଆଦର୍ଶ ଓ ଉଦ୍ଦେଶ୍ୟ ପ୍ରତି ସମର୍ଥନ ଜଣାଇ ଲାଙ୍କାସାୟାର ଲୁଗାକଳ ଅଞ୍ଚଳରୁ ଜଣେ ଲେଖିଲେ ଆପଣଙ୍କର ବଏକଟ ଯୋଗୁ ଆମେ ବେକାର ଓ କଷ୍ଟଭୋଗୀ ମାତ୍ର ଆମର ଆପଣଙ୍କ ଲକ୍ଷ୍ୟ ଓ ଉଦ୍ଦେଶ୍ୟ ପ୍ରତି ସହାନୁଭୂତି ରହିଛି । ଜଣେ ନିଶା ବିରୋଧୀ ଲେଖିଲେ ସୁରା-ରାକ୍ଷସୀ ସମାଜକୁ ଗ୍ରାସ କରୁଥିବା ବେଳେ ଆପଣ ଆମର ନେତା ଓ ଶ୍ରେଷ୍ଠ ଖ୍ରିଷ୍ଟିଆନ ।

ବୈଠକ ଚାଲୁଥାଏ । ଦୈନିକ ସୂତାକଟା ଅବ୍ୟାହତ ଥାଏ । ସେ ମୀରାବେନଙ୍କୁ ତାଙ୍କର ଦୈନିକ ଖାଦ୍ୟ ଖରଚ ଦେଢ଼ ଶିଲିଂରୁ ଅଧିକ ନ ହେବାକୁ କହିଥାଆନ୍ତି । ଶିଲିଂର ମୂଲ୍ୟ ପ୍ରାୟ ୭୫ ପଇସା ଥାଏ । ଭୋଜନ ସମୟରେ ପ୍ରତି ଖାଦ୍ୟର ମୂଲ୍ୟ ସେ ପଚାରି ବୁଝୁଥିଲେ । ଦିନେ ଦିନେ ଫେରିବା ବେଳକୁ ଅଧରାତି ଗଡ଼ିଯାଏ । ଦୂରରେ ନ ରହି ରାଜପ୍ରାସାଦ ଓ ହୋଟେଲର ନିକଟରେ ରହିବାକୁ ଅନେକ ପରାମର୍ଶ ଦେଲେ । ଦରିଦ୍ର ଓ ଶ୍ରମିକମାନଙ୍କ ଗହଣରେ ରହିବାକୁ ସେ ପସନ୍ଦ କରି କହିଲେ ପ୍ରକୃତରେ ଏହାହିଁ ଗୋଲଟେବୁଲ୍ ବୈଠକ । ମୁଁ ଶ୍ରମିକମାନଙ୍କର ହୃଦୟ ଜୟ କଲେ ସେମାନେ ଉପରସ୍ତରକୁ ପ୍ରଭାବିତ କରାଇବେ । ସାଢ଼େ ପାଞ୍ଚଟାରେ ପ୍ରତ୍ୟହ ସେ ସକାଳ ବୁଲାରେ ଯାଆନ୍ତି । ସୁରକ୍ଷା ପାଇ ଦୁଇଜଣ ଗୋଇନ୍ଦା ପୁଲିଶ ଯାଉଥାଆନ୍ତି । ଶ୍ରମିକ ବସ୍ତି ଦେଇ ସେ ଯିବାବେଳେ ଅନେକ ତାଙ୍କୁ ଅଭିବାଦନ ଜଣାନ୍ତି । ଏହି ଅଧା ଲଙ୍ଗଳା ଭାରତୀୟ ଫକୀରଙ୍କୁ ଯେପରି ଦେଖି ପାରିବେ ସେଥିପାଇଁ ସେମାନଙ୍କୁ ଉଠେଇ ଦେବାକୁ ସାନ ପିଲାଏ ବାପ ମାଆଙ୍କୁ ଅଳି କରିଥାନ୍ତି । ଶ୍ରମିକମାନଙ୍କ ଘରକୁ ଯାଇ ଗାନ୍ଧିଜି ସେମାନଙ୍କର କାମଦାମ ଚଳଣୀ, ଘର ଭଡ଼ା, ଶୌଚ ବ୍ୟବସ୍ଥା ଓ ବେକାର ଭତ୍ତା ଆଦି ବିଭିନ୍ନ ବିଷୟ ବୁଝୁଥାଆନ୍ତି । ବାତଗ୍ରସ୍ତ ଜଣେ ତାଙ୍କୁ ଦର୍ଶନ ନିମିତ୍ତ ଉତ୍ସୁକତା ଓ ଶାରୀରିକ ଅକ୍ଷମତା ଜଣାଇ ଲେଖିଥିବାରୁ ଦିନେ ଗାନ୍ଧିଜି ସକାଳେ ଚୁଲି ପାଖରେ ବସି ତାଙ୍କ ସାଙ୍ଗରେ

ଗପସପ କରିବାକୁ ତାଙ୍କ ଘରେ ପହଞ୍ଚିଲେ । ଜଣେ ଅନ୍ଧ ତାଙ୍କୁ ଶୁଭାଗମନ ଜଣାଇ ଦେଖିବାକୁ ଇଚ୍ଛା କଲାରୁ ଗାନ୍ଧିଜି ତା ପାଖରେ ପହଞ୍ଚିଲେ । ଲାଙ୍କାସାୟାର ସହରରେ ତାଙ୍କର ବୟକଟ ଫଳରେ ବେକାରଙ୍କ ଦୁର୍ଦ୍ଦଶା ସେ ଦେଖି ଦୁଃଖ ପ୍ରକାଶ କଲେ । କହିଲେ ଏ ସବୁ ସତ୍ତ୍ୱେ ଏଠରେ ଅନାହାର ବା ଅର୍ଦ୍ଧାହାର ନାହିଁ । ଏଇଠି ୩୦ ଲକ୍ଷ ବେକାର ଅଛନ୍ତି । ମାସିକ ୭୦ ଶିଲିଂ ପ୍ରତ୍ୟେକ ଭତ୍ତା ପାଉଛନ୍ତି । ମୋ ଦେଶରେ ୩୦ କୋଟି ଲୋକ ବର୍ଷର ଅଧେ ବେକାର ରହୁଛନ୍ତି । ଆମର ମାସିକ ହାରାହାରି ଆୟ ସାତ ଶିଲିଂ । ଆମ ତୁଳନାରେ ତମେମାନେ ସୁଖରେ ଅଛ । ସେପ୍ଟେମ୍ବର ଷୋଳ ତାରିଖରେ ଶ୍ରମିକ ସାଂସଦମାନଙ୍କୁ ଗାନ୍ଧିଜି କହିଥିଲେ ତମର ଭୁଲ୍ ଧାରଣା ଯେ ଭାରତୀୟମାନେ ତମକୁ ଚାହାନ୍ତି । ତମର ପ୍ରଧାନମନ୍ତ୍ରୀ ତମ ଦେଶର ନାଗରିକର ହାରାହାରି ଆୟର ୫୦ ଗୁଣାରୁ ଅଧିକ ଦରମା ପାଆନ୍ତି ନାହିଁ । ମାତ୍ର ଆମ ଦେଶରେ ସାଧାରଣ ନାଗରିକର ଆୟର ୫ ହଜାର ଗୁଣା ଦରମା ଭାଇସରୟ (ବଡ଼ଲାଟ) ପାଆନ୍ତି । ତେଣୁ ତମର ବେକାରି ସମସ୍ୟା ବେଳେ ନୈତିକତା ଦୃଷ୍ଟିରୁ ଆମଠାରୁ ସମର୍ଥନ ଆଶା କରିହେବ କି ? ଭାରତର ଉତ୍କଟ ଦାରିଦ୍ର୍ୟର ଚିତ୍ର ସେଠାରେ ସମସ୍ତଙ୍କର ହୃଦବୋଧ ହେଲା ।

ଅକ୍ଟୋବର ଦୁଇ ତାରିଖ ତାଙ୍କର ୬୨ତମ ଜନ୍ମଦିନ । ସେ ଅଟାଳିକାର-ଅନ୍ତେବାସୀମାନେ ପ୍ରତ୍ୟେକ ଅଧ ଶିଲିଂ ଚାନ୍ଦା ଦେଇ ଉତ୍ସବପାଳନ ଓ ଭୋଜି କଲେ । ଛୋଟ ଝିଅଟିଏ ତାଙ୍କ ଗୁଣାବଳୀ ବର୍ଣ୍ଣନା କରି ଗାନ୍ଧୀଜିଙ୍କୁ ଆସିସିର ସେଣ୍ଟ ଫ୍ରାନସିସ୍‌ଙ୍କର ଜୀବନ୍ତ ଅବତାର ବୋଲି କହିଲା ।

ବୈଠକ ବାହାରେ ଗାନ୍ଧିଜି ସାକ୍ଷାତ ଦେଲେ ଅଣରାଜନୈତିକ ବିଷୟ ଚର୍ଚ୍ଚା କରୁଥିଲେ । କଲମ୍ବିଆ ଗ୍ରାମଫୋନ କମ୍ପାନୀ ତାଙ୍କର ଭାଷଣ ରେକର୍ଡ଼ କରିବାକୁ ଚାହିଁଲେ । ରାଜନୀତି ଚର୍ଚ୍ଚା ମନା କରି ଗାନ୍ଧିଜି ତାଙ୍କର ଧର୍ମ ବିଷୟରେ ୟଂ ଇଣ୍ଡିଆରେ ପ୍ରକାଶିତ ଗୋଟିଏ ଲେଖା ପଢ଼ି ରେକଡ଼ିଂ କରାଇଲେ । ତାଙ୍କୁ ସାକ୍ଷାତ କରିଥିବା ବହୁ ବିଶିଷ୍ଟ ଜନନାୟକ ଚିନ୍ତକ ଓ ଧର୍ମ ଯାଜକ-ଗୋଷ୍ଠୀ ମଧ୍ୟରେ ଥିଲେ ନାଟ୍ୟକାର ଜର୍ଜ ବାର୍ଣ୍ଣାର୍ଡ଼ଶ, ପୂର୍ବତନ ପ୍ରଧାନମନ୍ତ୍ରୀ ଲୟଡ଼ ଜର୍ଜ ଓ ବଡ଼ଲାଟ ଇରଉଇନ । ଅଭିନେତା ଚାର୍ଲି ଚାପଲିନଙ୍କ ନାଁ ଗାନ୍ଧିଜି ପ୍ରଥମେ ଶୁଣିଲେ । ସାକ୍ଷାତ କରିବାକୁ ମନା କରିଦେବା ବେଳକୁ ଜାଣିଲେ ସେ ଦରିଦ୍ର ପରିବାରରେ ଜନ୍ମ ଓ ଇଷ୍ଟଏଣ୍ଡ ଶ୍ରମିକ ବସ୍ତିରେ ଥାଆନ୍ତି । ତେଣୁ ତାଙ୍କୁ ସାକ୍ଷାତ ଦେଲେ । ଅକ୍ସଫୋର୍ଡ଼ର ଅଧ୍ୟାପକ ଥମ୍ପସନ କହିଲେ ସକ୍ରେଟିସଙ୍କ ପରେ ପୃଥିବୀରେ ଏପରି ସଂଯମଶୀଳ ଓ ସ୍ଥିତପ୍ରଜ୍ଞ ବ୍ୟକ୍ତି ଦେଖା ନ ଥିଲେ । ଦିନେ ବାର୍ଣ୍ଣାଡ଼ଶ ତାଙ୍କ ବସାରେ ପହଞ୍ଚିଲେ । ନିଜକୁ କ୍ଷୁଦ୍ର ମହାତ୍ମା ବୋଲି ପରିଚୟ ଦେଇ ଓ ତାଙ୍କ ବିଷୟରେ କିଛି ଜାଣନ୍ତି ବୋଲି କହି ସେ ଗାନ୍ଧିଜିଙ୍କୁ ହାତ ବଢ଼ାଇଲେ । ସୋଫାରେ ନ ବସି ସେ ଯେପରି ତଳେ ବସନ୍ତି ସେମିତି ବସିବାକୁ ଗାନ୍ଧିଜିଙ୍କୁ ଅନୁରୋଧ କଲାରୁ

ଗାନ୍ଧିଜି ତଳେ ପଡ଼ିଥିବା ଆସନରେ ବସିଲେ । ସେ ଓ ତାଙ୍କ ସ୍ତ୍ରୀଙ୍କୁ ମଟରକାରରେ ତାଙ୍କ ଘରେ ଛାଡ଼ି ଦେଇ ଆସିବାକି ଗାନ୍ଧିଜି ବ୍ୟବସ୍ଥା କଲେ । ଜଣେ ପତ୍ରକାର ତାଙ୍କୁ ପ୍ରଶ୍ନ କଲେ ଗାନ୍ଧିଜି ତାଙ୍କୁ କିପରି ଲାଗିଲେ । ସେ କହିଲେ ହିମାଳୟ ତମକୁ କେମିତି ପ୍ରଭାବିତ କରେ ବୋଲି ମତେ ପଚାରିଲେ ମୋର ଯାହା ଉତ୍ତର ହେବ ଏଇଠି ଉତ୍ତର ସେଇଆ । ବକିଂହାମ ପ୍ରାସାଦରେ ଭାରତୀୟ ପ୍ରତିନିଧିଦଳଙ୍କୁ ଦେଉଥିବା ସମ୍ବର୍ଦ୍ଧନାରେ ତାଙ୍କର ସମ୍ରାଟ ପଞ୍ଚମ ଜର୍ଜଙ୍କ ସାଙ୍ଗରେ ଭେଟ ହୁଏ । ତାଙ୍କର ଖଦି ପୋଷାକ ଧୋତି, କୁରୁତା ଓ ହଳେ ଚଟି କାନ୍ଧରେ ଖଣ୍ଡେ ଶାଲ, ତାର ଚିରା ଜାଗାରେ ଖଦି କପଡ଼ା ସିଲାଇ ହୋଇଥାଏ । ସେ ସମ୍ରାଟଙ୍କ ସାଙ୍ଗରେ ହସଖୁସିରେ କଥାବାର୍ତ୍ତା କଲେ । ସମ୍ରାଟ କହିଲେ ତମେ ଜଣେ ସାଧୁପୁରୁଷ । ୧୯୧୮ ସାଲରେ ଦକ୍ଷିଣ ଆଫ୍ରିକାରେ ତମକୁ ଦେଖିବା ଦିନୁ ମୁଁ ଜାଣେ ମାତ୍ର ଏବେ ତମେ ବିଗିଡ଼ି ଯାଇଛ । ତମେ ମୋ ପୁଅକୁ ଭାରତ ଯାଇଥିବା ବେଳେ କାହିଁକି ବଏକଟ କଲ ? ମହାତ୍ମା ଉତ୍ତର ଦେଲେ ତମର ପୁଅବୋଲି ନୁହେଁ ସାମ୍ରାଜ୍ୟବାଦର ପ୍ରତୀକଭାବରେ ସେ ଏପରି ବ୍ୟବହାର ପାଇଲେ । ରାଜା କହିଲେ ତମେ ବିଦ୍ରୋହ କଲେ ତାହା ଦୃଢ଼ହସ୍ତରେ ଦମନ କରାଯିବ । ଭଦ୍ରତା ଓ ଦୃଢ଼ତାର ସହିତ ଗାନ୍ଧିଜି ଶୁଣାଇଲେ ତମ ସହିତ ଏ ସଂପର୍କରେ ଏଇଠି ଆଲୋଚନା ସୁନ୍ଦର ହେବ ନାହିଁ । ଜଣେ ପତ୍ରକାର ଗାନ୍ଧିଜିଙ୍କର ସ୍ୱଳ୍ପ ପରିଧାନ ଉପରେ ଟିପ୍ପଣି ଦେବାରୁ ସେ ଉତ୍ତର ଦେଲେ ତମ ରାଜା ଯାହା ପିନ୍ଧିଛନ୍ତି ତାହା ଦୁଇଜଣଙ୍କ ପାଇଁ ଯଥେଷ୍ଟ ।

ଫୁରସତ ମିଳିଲା । ଗାନ୍ଧିଜି ଆଣ୍ଡ୍ରୁଜ ସାହେବଙ୍କ ସହିତ ଅକ୍ସଫୋର୍ଡ଼ ବୁଲି ଆସିଲେ । ପ୍ରଖ୍ୟାତ ଇଟନ ବିଦ୍ୟାଳୟର ଛାତ୍ରମାନଙ୍କୁ ସମ୍ବୋଧନ କରି ସେ କହିଲେ ତମମାନଙ୍କ ମଧ୍ୟରେ ଇଂଲଣ୍ଡର ଭବିଷ୍ୟତ ପ୍ରଧାନମନ୍ତ୍ରୀ ପ୍ରଶାସକ ଓ ସେନାପତି ଅଛନ୍ତି । ଭାରତ ବିଷୟରେ ତୁମ୍ଭମାନଙ୍କର ଅଜ୍ଞତା ଦୂରକର । ଇଂଲଣ୍ଡର ନିରାମିଷାଶୀ ଗୋଷ୍ଠୀ ତରଫରୁ ତାଙ୍କୁ ଅଭିନନ୍ଦନ ଦିଆଗଲା । ସେ ସେଠାରେ ଶାକାହାରର ଉପାଦେୟତା ବୁଝାଇ କହିଲେ ମଣିଷ ଶାକାହାରୀ ହୋଇ ଜନ୍ମ ନେଇ ପରେ ମାଂସାହାରୀ ହୁଏ । ତାଙ୍କ ଭାଷଣ ବହୁ ଲୋକଙ୍କୁ ପ୍ରଭାବିତ କଲା । ଡିସେମ୍ବର ୫ ତାରିଖରେ ଗାନ୍ଧିଜି ଇଉରୋପ ଅଭିମୁଖେ ଯାତ୍ରା କଲେ । ଟ୍ରେନ ଛାଡ଼ିବା ବେଳେ ତୃତୀୟ ଶ୍ରେଣୀ ଡ଼ବାର ଝରକା ଭିତରୁ ତାଙ୍କ ପାଇଁ ପ୍ଲାଟଫର୍ମରେ ବିଦାୟ ସଙ୍ଗୀତ ବୋଲ ଯାଉଥିବା ସମୟରେ ଗୋଟିଏ ନର୍ସିଂ ସ୍କୁଲର ପିଲାମାନେ ତାଙ୍କୁ ଦେଇଥିବା କଣ୍ଢେଇ, ରଙ୍ଗୀନ ମହମବତୀ ଓ ଦୁଧ ଖଡ଼ିରେ ଅଙ୍କା ଚିତ୍ର ତାଙ୍କ ସାଙ୍ଗରେ ଯାଉଛି କି ନା ପଚାରିଲେ । ସେ ବୁଝିକରି କହିଲେ ଏହି ଦେଶରୁ ସେଇ କେତୋଟି ଜିନିଷ ସେ ନେଇ ଯାଉଛନ୍ତି । ଇଂଲଣ୍ଡରେ ମୋଟ ଚଉରାଶି ଦିନ କଟାଇ ଗାନ୍ଧିଜି ସେହି ଦେଶର ଅଗଣିତ ଜନତାର ହୃଦୟଜୟ କରିବାକୁ ସମର୍ଥ ହୋଇଥିଲେ । ଏହି ଗସ୍ତର ପ୍ରସଙ୍ଗତା ଏବେ ମଧ୍ୟ ଅଛି ।

*(ତଥ୍ୟ ଡି.ଜି.ତେନ୍ଦୁଲକରଙ୍କ 'ମହାତ୍ମା' ୩ୟ ଖଣ୍ଡରୁ ସଂଗୃହୀତ)*



# ଗାନ୍ଧି-ରୋମାଁରୋଲା ଭେଟ ୧୯୩୧

ଲଣ୍ଡନର ଗୋଲଟେବୁଲ ବୈଠକରେ ଯୋଗଦେବାକୁ ଗାନ୍ଧିଜି କଂଗ୍ରେସର ଏକମାତ୍ର ପ୍ରତିନିଧି ରୂପେ ନିଜ ସହକାରୀମାନଙ୍କ ସହିତ ବିଲାତ ଯାଉଥିଲେ । ବିଲାତରେ ସେ ୮୪ ଦିନ ରହିଥିଲେ । ଗୋଲଟେବୁଲ ବୈଠକ ବିଫଳ ହେଲା । ନିଜ ଲକ୍ଷ୍ୟ ଭାରତର ପୂର୍ଣ୍ଣ ସ୍ୱାଧୀନତା । ସେ ଏଥିରେ ଅଟଳ ଥିଲେ ମାତ୍ର ଏହି ରହଣି କାଳରେ ସମ୍ବାଦପତ୍ରରେ ବିରୂପ ପ୍ରତିକ୍ରିୟା ସତ୍ତ୍ୱେ ସେ ଇଂଲଣ୍ଡର ଲୋକମାନଙ୍କୁ ନିଜର ଆଦର୍ଶ ଲକ୍ଷ୍ୟ ଓ କର୍ମପନ୍ଥା ବୁଝାଇବାରେ ସକ୍ଷମ ହୋଇ ସେମାନଙ୍କର ହୃଦୟଜୟ କରି ପାରିଥିଲେ । ଡିସେମ୍ବର ୫ ତାରିଖରେ ସେ ଲଣ୍ଡନ ଛାଡ଼ି ଇଉରୋପବାଟେ ଭାରତ ଫେରିଲେ ।

ଗାନ୍ଧିଜିଙ୍କ ଜୀବନୀ ୧୯୨୩ ମସିହାରେ ଲେଖିଥାଆନ୍ତି ପ୍ରସିଦ୍ଧ ଲେଖକ ଓ ୧୯୧୫ ମସିହାରେ ସାହିତ୍ୟରେ ବିଶ୍ୱବିଖ୍ୟାତ ନେବେଲ ପୁରସ୍କାର ପ୍ରାପ୍ତ ରୋମାଁରୋଲା (୧୮୬୬-୧୯୪୪) । ଫ୍ରାନ୍ସର ଗୋଟିଏ ବିଶ୍ୱବିଦ୍ୟାଳୟରେ ସେ ସଙ୍ଗୀତର ଇତିହାସ ଅଧ୍ୟାପକ ଥାଇ ସଙ୍ଗୀତଜ୍ଞ ବିଟହୋଭେନଙ୍କ ଜୀବନୀ ଉପରେ ୧୦ ଭାଗ ବିଶିଷ୍ଟ ବିରାଟ ଗ୍ରନ୍ଥ ଜାଁ କ୍ରିଷ୍ଟୋଫର ଲେଖିଥାଆନ୍ତି । ପ୍ରଥମ ବିଶ୍ୱଯୁଦ୍ଧ (୧୯୧୪-୧୯୧୮) ସମୟରେ ସେ ଏହି ପୁସ୍ତକରେ ଯୁଦ୍ଧରେ ବାଧ୍ୟତାମୂଳକ ସୈନ୍ୟବୃତ୍ତିର ପ୍ରତିରୋଧ କରି ଅତି ଅପ୍ରିୟ ହୋଇଥାଆନ୍ତି । ଗାନ୍ଧିଜିଙ୍କ ଜୀବନୀ ଲେଖିବା ଦିନୁଁ ଓ ଗାନ୍ଧିଜିଙ୍କର ଶାନ୍ତି ଓ ଅହିଂସା କାର୍ଯ୍ୟକ୍ରମ ଜାଣିବା ପରେ ସେ ତାଙ୍କୁ ଦେଖିବାକୁ ବ୍ୟଗ୍ର ଥିଲେ । ସେ ମଧ୍ୟ ରାମକୃଷ୍ଣ ପରମହଂସ (ବିବେକାନନ୍ଦ)ଙ୍କ ଜୀବନୀ ଲେଖିଥିଲେ । ତାଙ୍କ ଶରୀର ଅସୁସ୍ଥ ଥାଏ । ବିଲାତ ଯିବା ବାଟରେ ସେପ୍ଟେମ୍ବର ଏଗାର ତାରିଖରେ ଗାନ୍ଧିଜିଙ୍କ ଜାହାଜ ମାରସେଲିସ ବନ୍ଦରରେ ପହଞ୍ଚିବା ବେଳକୁ ସେଠାରେ ରୋମାଁରୋଲାଙ୍କର ଭଉଣୀ ତାଙ୍କୁ ସାଦର ଅଭ୍ୟର୍ଥନା ଦେବାପାଇଁ ଉପସ୍ଥିତ ଥିଲେ । ଗାନ୍ଧିଜିଙ୍କୁ ଗୋଟିଏ ବାର୍ତ୍ତା ଦେଇ ସେ ଲେଖିଥାଆନ୍ତି ତମେ ଯୁଦ୍ଧ କ୍ଷେତ୍ରକୁ ଯାଉଛ । ସେନାପତିଭାବେ ତମେ ସୁନାମ ଅର୍ଜନ

କରିଛ । ଲଣ୍ଡନରେ ଥିବାବେଳେ ଲୋକମାନଙ୍କର ବଳ ତମ ପଛରେ ଥିବା ଯୋଗୁ ତମେ ନିଜକୁ ବଳବାନ ମନେ କରିବ । ସ୍ୱଚ୍ଛ ବିବେକର ସ୍ୱର ଉତ୍ତୋଳନ କରୁଥିବା ଯୋଗୁ ଭାରତ ବାହାରେ ଇଉରୋପର ଭଲ ଲୋକମାନେ ମଧ୍ୟ ତମ ପଛରେ" । ଫ୍ରାନ୍ସର ଫେସନିଆ ଲୋକ ଆଶ୍ଚର୍ଯ୍ୟ ହୋଇଯାଉ ଥାଆନ୍ତି ଏମିତି ଅଧା ଲଙ୍ଗଳା ଶାଳ କାନ୍ଧରେ ପକା ବେଶରେ ସେ କଣ ଲଣ୍ଡନ ଯିବେ ବୋଲି ସେମାନେ ଭାବୁଥାଆନ୍ତି। "ଭାରତର ଆଧ୍ୟାତ୍ମିକ ନେତାଙ୍କ" ସମ୍ମାନରେ ମାରସେଲିସର ଛାତ୍ରଛାତ୍ରୀମାନେ ତାଙ୍କୁ ଅଭିନନ୍ଦିତ କରିବାକୁ ଏକ ସଭା କଲେ । ଗାନ୍ଧିଜି କହିଲେ ତମର ପ୍ରଦର୍ଶନୀ ଦେଖିବାକୁ ଛାତ୍ରଭାବରେ ମୁଁ ୧୮୯୦ ମସିହାରେ ପାରିସ ଆସିଥିଲି । ଏହା ଭିତରେ ରୋମାଁରୋଲା ଆମ ମଧ୍ୟରେ ଉତ୍ତମ ସଂପର୍କ ସ୍ଥାପନ କରି ପାରିଛନ୍ତି । ତମ ଦେଶର ଚିନ୍ତା ନାୟକ ରୁସୋ ଓ ଭିକ୍ଟର ହିଉଗୋଙ୍କ ଚିନ୍ତାଧାରା ମତେ ବିଶେଷ ପ୍ରଭାବିତ କରିଛି । ଫେରିବା ବେଳେ ସେ ସୁଇଜରଲାଣ୍ଡରେ ପାଞ୍ଚଦିନ ରହିବାକୁ ଗସ୍ତକ୍ରମ କରିଥାଆନ୍ତି। ସେଇଠି ସେ ଅସୁସ୍ଥ ରୋମାଁରୋଲାଙ୍କୁ ଭେଟିବାର ଥାଏ । ଡିସେମ୍ବର ପାଞ୍ଚତାରିଖରେ ଦୁଇ ଜଣଙ୍କର ଭେଟ ହୁଏ । ଗାନ୍ଧିଜି ୬୨ ବର୍ଷର । ରୋମାଁରୋଲା ତାଙ୍କଠାରୁ ତିନି ବର୍ଷ ବଡ଼ । ପୁରୁଣା ବନ୍ଧୁ ଭଳି ସେମାନେ ମିଶି କଥା ହେଲେ । ରୋମାଁରୋଲାଙ୍କୁ ଥଣ୍ଡା ଧରୁଥିବାରୁ ଗାନ୍ଧିଜି ତାଙ୍କୁ ଘରର ଝରକା ମାନ ଖୋଲା ରଖି ମୁକ୍ତ ବାୟୁ ଓ ସୂର୍ଯ୍ୟଲୋକ ସେବନ କରିବାକୁ ଓ ପ୍ରାକୃତିକ ଚିକିତ୍ସା ଉପରେ ଭରସା ରଖିବାକୁ ପରାମର୍ଶ ଦେଲେ । ତା ପରିଦିନ ସେମାନେ ତାଙ୍କ ଘର ଉପର ମହଲାରେ ତାଙ୍କର ଶୋଇବା ଘରକୁ ଯାଇ ସେଇଠି ଗପସପ କଲେ । ଘରଟା ଯାକ ଖାଲି ବହିପତ୍ରରେ ପୂର୍ଣ୍ଣ। ଖାଲି ଥିବା ଜାଗା ବାଟେ ସାମାନ୍ୟ ସୂର୍ଯ୍ୟ କିରଣ ଆସୁଥାଏ । ସେହି ଘରେ ବିଟ୍‌ହୋଭେନ, ଗେଟେ, ଗର୍କି, ଲେନିନ, ଟଲଷ୍ଟୟଙ୍କ ସହିତ ରବୀନ୍ଦ୍ରନାଥ ଓ ଗାନ୍ଧିଜିଙ୍କ ଆବକ୍ଷମୂର୍ତ୍ତୀ ଶୋଭା ପାଉଥାଏ । ଶ୍ରମିକମାନଙ୍କର ଶୋଷଣ ରୋମାଁରୋଲାଙ୍କର ଅନ୍ତରକୁ କ୍ଷୁବ୍ଧ କରିଥାଏ । ନିଜ ଅନ୍ତରାତ୍ମାର ଯନ୍ତ୍ରଣା ସେ ଗାନ୍ଧିଜିଙ୍କୁ ଜଣାଇଲେ । ଶ୍ରମିକମାନଙ୍କର ସ୍ୱାର୍ଥ ଓ ଅଧିକାର ଏକତ୍ର ଜଡ଼ିତ । ସେମାନେ ଶୋଷଣମୁକ୍ତ ନ ହେଲେ ସବୁ ଉଜୁଡ଼ିଯିବ । ଗାନ୍ଧିଜି ଲେନିନଙ୍କୁ ସାକ୍ଷାତ କରି ନ ଥାନ୍ତି । ତାଙ୍କୁ ରୋମାରୋଲା ସେଥିପାଇଁ ନିଜ ଅନୁଶୋଚନା ଜଣାଇ କହିଲେ ସେ ଠିକ ତମରି ପରି ସତ୍ୟ ପଥରୁ କେବେ ପଶ୍ଚାଦପଦ ହୋଇ ନାହାନ୍ତି । ସୋଭିଏଟ ଇଉନିଅନକୁ ରକ୍ଷା କରା ଯିବା ଉଚିତ୍ । ମୁଁ ଭାବୁଛି ମୋ ବୟସ ଆଉ କୋଡ଼ିଏ ବର୍ଷ କମ୍ ହୋଇଥାଆନ୍ତା କି ? ତାହାହେଲେ ମୁଁ ବିଭେଦକାରୀ ଶକ୍ତିମାନଙ୍କର ମୁକାବିଲା କରନ୍ତି । ସେ ଦିନ ସୋମବାର । ଗାନ୍ଧିଜିଙ୍କର ମୌନ ଦିବସ । ଦେଢ଼ ଘଣ୍ଟା ଧରି ରୋମାଁରୋଲା କହି ଚାଲିଲେ । ଗାନ୍ଧିଜି ଶୁଣିଲେ । ପେନସିଲ୍‌ରେ ଲେଖି ପ୍ରଶ୍ନ ପଚାରିଲେ । ତା ପରଦିନ ଠାରୁ ପ୍ରତିଦିନ ଆଲୋଚନା ଚାଲିଲା । ଗାନ୍ଧିଜି ଇଟାଲିରେ ମୁସୋଲିନଙ୍କୁ ସାକ୍ଷାତ କରିବାକୁ ଠିକ୍ କରିଥାଆନ୍ତି । ସେ

ଫାସିଷ୍ଟବାଦର ପ୍ରତୀକ । ସାକ୍ଷାତ ପରେ ସେମାନେ ଗାନ୍ଧିଜି ସେମାନଙ୍କର ମତବାଦର ସମର୍ଥନ ବୋଲି କଦର୍ଥ କରିପାରନ୍ତି । ଗାନ୍ଧିଜି ଏହା ଅସ୍ୱୀକାର କଲେ । ରୋମାଁରୋଲାଙ୍କ ପରାମର୍ଶ ଅନୁସାରେ ତାଙ୍କର ଜଣେ ନିରପେକ୍ଷ ଅଣରାଜନୈତିକ ବନ୍ଧୁଙ୍କ ସହିତ ରହିବାକୁ ଗାନ୍ଧିଜି ରାଜି ହେଲେ । ସେମାନଙ୍କ ମଧ୍ୟରେ ଆଲୋଚନାର ମୁଖ୍ୟ ବିଷୟ ଥିଲା ଶାନ୍ତି ଓ ସତ୍ୟ । ଗାନ୍ଧିଜି କହିଲେ ସେ ପିଲାଦିନେ ଈଶ୍ୱରଙ୍କର ସହସ୍ର ନାମ ଶିଖିଥିଲେ । ତାହା ମଧ୍ୟରେ ସତ୍ୟ ଏକ । ଈଶ୍ୱର ହିଁ ସତ୍ୟ । ବର୍ତ୍ତମାନ ସେ ଜାଣିଲେଣି ସତ୍ୟ ହିଁ ଈଶ୍ୱର । ଏ ବିଷୟରେ ଦୀର୍ଘ ଆଲୋଚନା ହେଲା । ଯୁଦ୍ଧରେ ଅସହଯୋଗ କଥା ପଡ଼ିଲା । ପ୍ରସିଦ୍ଧ ବୈଜ୍ଞାନିକ ଆଇନଷ୍ଟାଇନ ଆମେରିକା ଚାଲିଯାଇଥିବାରୁ ଗାନ୍ଧିଜିଙ୍କୁ ସାକ୍ଷାତ କରି ପାରି ନ ଥିଲେ । ଗାନ୍ଧିଜିଙ୍କୁ ପଚରାଗଲା ଆଇନଷ୍ଟାଇନ କହୁଛନ୍ତି ତମେ ପଛେ ଜେଲକୁ ଯାଅ ମାତ୍ର ବାଧ୍ୟତାମୂଳକ ସୈନିକ ସେବା କରନାହିଁ । ହସିହସି ଗାନ୍ଧିଜି ଥଟାରେ କହିଲେ ଯଦି ବଡ଼ ଲୋକଙ୍କ ବିଷୟରେ ଏମିତି କୁହାଯାଇପାରିବ ତେବେ ମୁଁ କହିବି ସେ ମୋ କଥା ଦୋହରାଇଛନ୍ତି । ଖାଲି ସୈନିକ ସେବା ବାଧ୍ୟତାମୂଳକ ହେବାର ପ୍ରତିରୋଧ ଯଥେଷ୍ଟ ନୁହେଁ । ଏହା ଏକ ରୋଗର ଲକ୍ଷଣ । ମୂଳ ରୋଗ ଯାହା ଫଳରେ ବାଧ୍ୟତାମୂଳକ ସୈନିକସେବାର ଆବଶ୍ୟକତା ପଡୁଛି ତାହା ଦୂର କରିବା ଉଚିତ୍ । ଦେଶ ଦେଶ ମଧ୍ୟରେ ଯୁଦ୍ଧ ଲାଗିବା ମୂଳରୋଗ ଓ ଏହାର କାରଣ ନିବାରଣ ବଡ଼ କଥା । ଅସହଯୋଗ ବାଧ୍ୟତାମୂଳକ ସୈନ୍ୟସେବା ପ୍ରତ୍ୟାଖାନଠାରୁ ବଡ଼ କଥା । ସବୁ ଶାସନ ବ୍ୟବସ୍ଥାରେ ଭଲ ମନ୍ଦ ଉଭୟ ଅଛି । ବିରାଟ ସାପ ପରି ଏହା ମୁଣ୍ଡରେ ମଣି ଅଛି ମାତ୍ର ଏହି ଫଣାରେ ବିଷ ଭରିଅଛି । ଇଂରେଜ ଶାସନ ସେଇ ବିଷ ଉଦ୍ଗାରଣ କରିଛି । ତେଣୁ ମୁଁ ସେମାନଙ୍କର ସବୁ ଅନୁଷ୍ଠାନ, ସ୍କୁଲ କଲେଜ- କୋର୍ଟ କଚେରି, ଚାକିରି, ଉପାଧି ଆଜି ବର୍ଜନ କରିବା ନିଷ୍ପତ୍ତି ନେଲି ।

ସତ୍ୟ ହିଁ ଈଶ୍ୱର ଆଲୋଚନାରୁ ଶ୍ରମଶକ୍ତି ପର୍ଯ୍ୟନ୍ତ ଆଲୋଚନା ହେଲା । ରୋମାଁରୋଲା କହିଲେ ଶ୍ରମଶକ୍ତି ଏକମାତ୍ର ଶକ୍ତି । ଯଦି ପୃଥିବୀରେ ଶ୍ରମିକମାନେ ସଙ୍ଗଠିତ ହୋଇ ନିଜର ସଂଖ୍ୟାଲଘୁତା ସତ୍ତ୍ୱେ ଏକଚାଟିଆ ଅଧିକାର ପ୍ରତିଷ୍ଠା କରନ୍ତି ତେବେ ଶ୍ରମିକମାନେ ସ୍ୱାଧୀନ ଓ ମୁକ୍ତ ରହିବେ । ଗାନ୍ଧିଜି କହିଲେ ଏକଛତ୍ରବାଦର ମୁଁ ସଂପୂର୍ଣ୍ଣ ବିରୋଧୀ । ରୋମାଁରୋଲା ତେଣୁ ଅନ୍ୟ ପ୍ରସଙ୍ଗ ଉଠାଇଲେ । ରୋମାଁରୋଲାଙ୍କର ଭଉଣୀ ସେମାନଙ୍କ ମଧ୍ୟରେ ଦୋଭାଷୀ କାମ କରୁଥିଲେ । ସେ କହିଲେ ଆମେ ଅନେକଦିନୁ ଏହି ଶୁଭ ମିଳନର ଅପେକ୍ଷାରେ ଥିଲୁ । ବେଳେବେଳେ ମନେ ହେଉଥିଲା ଆମର ଜୀବନ ଦୀପ ଲିଭିଯିବ ମାତ୍ର ସାକ୍ଷାତ ହେବ ନାହିଁ । ରୋମାଁରୋଲା ତାଙ୍କ ଡାଏରୀରେ ଲେଖିଥିଲେ" 'ଗାନ୍ଧିଜି ବୁଦ୍ଧିଜୀବୀମାନଙ୍କର ସ୍ୱାସ୍ଥ୍ୟନିବାସରେ ସ୍ୱଚ୍ଛତା ଦେଖି ଖୁସି ହେଲେ ।

ସେ ଗୋଟିଏ ଚାଷୀର ସ୍ତ୍ରୀକୁ ତନ୍ତ ବୁଣିବା ଦେଖି ତା ସାଙ୍ଗେ ଗପ କଲେ । ଫେରିବା ବେଳେ ପାଞ୍ଚଟା ସମୟରେ ମୋ ପାଖକୁ ଗାନ୍ଧିଜି ଆସିଲେ । ମୋତେ ହାଲିଆ ଲାଗୁଥିଲା । ମୋର ଧାରଣା ହୋଇଛି ମୋର ମାର୍ଗ ତାଙ୍କଠାରୁ ପୃଥକ । ଆମ ମଧ୍ୟରେ ଆଲୋଚନା ପାଇଁ ପରିସର ସୀମିତ । ନିଜର ପୃଥକ ମାର୍ଗ ନିଜେ ଜାଣୁଛୁ ମାତ୍ର ଗାନ୍ଧିଜିଙ୍କ ମାର୍ଗ ନିଷ୍ଠିତରେ ତାଙ୍କ ଦେଶ ପାଇଁ ସର୍ବୋତ୍ତମ । ମୁଁ ଏହା ଭିନ୍ନ ହେଉ ବୋଲି ମଧ୍ୟ କହୁନାହିଁ । ମୋର ତାଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତି ଅଛି । ଆମେ ଜଣେ ଆଉ ଜଣକୁ ବା କଣ କହିବୁ ? ପ୍ରଥମ ଦିନ ଆମ ସାକ୍ଷାତରେ ଯାହା ହୋଇଥିଲା ସେଇଆ । ମୋ ହାତ ତାଙ୍କ ହାତ ସହିତ ହସି ହସି ମିଳାଇଲି । ଆଖିରେ ଆଖି ମିଳିଗଲା । ପାଟି ଖୋଲା କରି ସେ ପାକୁଆ ହସ ହସିଲେ ।" ଶେଷ ଦିନ ଗାନ୍ଧିଜିଙ୍କର ଅନୁରୋଧ କ୍ରମେ ରୋମାଁରୋଲା ପିଆନୋରେ ବିଟ ହୋଭେନଙ୍କର ସଙ୍ଗୀତ ତାଙ୍କୁ ଶୁଣାଇଲେ । ଛାତିର ଶ୍ଳେଷ୍ମା ରୋଗରୁ ରୋମାରୋଲା ସଦ୍ୟ ମୁକ୍ତ ହୋଇଥାଆନ୍ତି । ସେ ଜିଦ ଧରିଲେ ଗାନ୍ଧିଜିଙ୍କୁ ନେଇ ରେଳଷ୍ଟେସନରେ ଛାଡ଼ି ଆସିବାକୁ । ସେଇଆ ହେଲା । ବହୁ ପୁରାତନ ବନ୍ଧୁ ପରି ସେମାନେ ବିଦାୟ ନେଲେ । ଗାନ୍ଧିଜି ରୋମ୍ ଯାତ୍ରା କଲେ ।

*(ଡି.ଜି. ତେଣ୍ଡୁଲକରଙ୍କ, ମହାତ୍ମା ପୁସ୍ତକରୁ ସଂଗୃହୀତ)*



# ଭୂସଂସ୍କାରର ଭଗୀରଥ

ଓଡ଼ିଶା ପରି ଏକ କୃଷି ପ୍ରଧାନ ରାଜ୍ୟରେ ଯୁଗୋପଯୋଗୀ ଭୂସଂସ୍କାରର ଆବଶ୍ୟକତା ସମସ୍ତେ ଉପଲବ୍ଧି କରି ଆସିଅଛନ୍ତି । ଭୂସଂସ୍କାର ଓ ଚକବନ୍ଦୀ କାର୍ଯ୍ୟକ୍ରମ ସ୍ୱାଧିନତା ପରେ ବିଶେଷ ଅଗ୍ରଗତି କରିଅଛି । ଓଡ଼ିଶା ପ୍ରଦେଶ ୧୯୩୬ ମସିହା ଅପ୍ରେଲ ପହିଲାରେ ଗଠିତ ହେଲା ଓ ୧୯୩୭ ମସିହା ଫେବୃଆରି ମାସରେ ନିର୍ବାଚନରେ କଂଗ୍ରେସ ୫୬ ଗୋଟି ନିର୍ବାଚନ ସ୍ଥାନରୁ ୩୭ ଗୋଟି ଦଖଲ କରିବାକୁ ସକ୍ଷମ ହୋଇଥିଲା । କଂଗ୍ରେସର ନିର୍ବାଚନ ଇସ୍ତାହାରରେ ରାଜ୍ୟରେ ପ୍ରଜାମାନଙ୍କୁ ଜମିରେ ଗଛମାଛ ଉପରେ ପୂର୍ଣ୍ଣ ଅଧିକାର, ବିନା କଟକଣାରେ ଜମି ହସ୍ତାନ୍ତର ଓ ଭେଟି, ବେଠି ପ୍ରଥା ଉଠାଇଦେବାର ପ୍ରତିଶ୍ରୁତି ଦିଆଯାଇଥିଲା । ବର୍ତ୍ତମାନ ପ୍ରାୟ ୬୫ ବରଷ ପରେ ଏ ନିଷ୍ଠୁରତା ଚିନ୍ତା କରିବା କଷ୍ଟକର । ପ୍ରଜା ନିଜର ଜମି ବିକିଲେ ତାକୁ ବାୟା କୁହାଯାଏ । ସେ ଖାଲି କ୍ରେତାକୁ (ମୁସ୍ତରିକୁ) କବଲା କରି ରେଜିଷ୍ଟ୍ରି କଲେ ଯଥେଷ୍ଟ ନ ଥିଲା । ଜମିଦାର ତାକୁ ହସ୍ତାନ୍ତର ପାଇ ଅନୁମତି ଦେଇ ବାୟା ନାମ ବଦଳରେ ମୁସ୍ତରିର ନାମ ନିଜ ସିରସ୍ତାରେ ଦରଜ କରିବେ । ଏଥିପାଇଁ ଜମିଦାର ପାଉଣା ନେଉଥିଲେ । ତାକୁ ଦାଖଲଖାରଜ ଫିଜ କୁହାଯାଉଥିଲା । ଏହାର ପରିମାଣ ସ୍ଥଳ ବିଶେଷରେ ଭିନ୍ନ ଥିଲା । ବଡ଼ ଜମିଦାର ଅଳ୍ପ ପାଉଣା ନେଲେ କୁଚି ଜମିଦାରମାନେ ନିଜ ଇଚ୍ଛା ଅନୁସାରେ ଦାବି କରୁଥିଲେ । ସେମାନେ ଏହାକୁ ନିଜର ଆୟର ପନ୍ଥା ବୋଲି ବିଚାର କରୁଥିଲେ । ସେତେବେଳେ କଟକ, ପୁରୀ ଓ ବାଲେଶ୍ୱର ଜିଲାରେ କେବଳ ଏହି ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନ ପ୍ରଚଳିତ ଥିଲା । ସେଠରେ ମୋଟ ଏଗାର ହଜାର ତିନିଶହ ଅଠେଇଶ ମାହାଲ ଭିତରେ ମୋଟ ପଚାଶ ହଜାର ଜମିଦାର ଥିବା ବିଧାନ ସଭା ପ୍ରଶ୍ନୋତ୍ତରରୁ ଜଣାଯାଏ । ପ୍ରଜା ଜମିରେ ଗଛ ଥିଲେ ଓ ବନ୍ଦୋବସ୍ତରେ ତାହା ଦର୍ଜ ହୋଇଥିଲେ ପ୍ରଜା ଫଳ ଭୋଗ କରିବ । ମାତ୍ର ଗଛ ମରିଗଲେ ତାକୁ କାଟି ବିକାଭଙ୍ଗା କରିବା ବା ଜାଳେଣି କରିବା ଅନୁମତି ସାପେକ୍ଷ ଥିଲା । ପୋଖରିରେ ପ୍ରଜା ହୁଏତ ନିଜେ ମାଛ ଛାଡ଼ିଥିବ ମାତ୍ର ତାର ପିଲାମାନେ ଦଣ୍ଡିଖ୍ୱରି କି କେରାଣ୍ଡି

ଦିଇଟା, ବି ପାଇବେ ନାହିଁ । ପ୍ରଜା ହୁଏତ ନିଜେ ଗଛ ଲଗାଇ ଦେଖାରଖା କରି ଗଛରେ ଫଳାଇଥିବ । ବନ୍ଦୋବସ୍ତରେ ଦର୍ଜ ନ ଥିଲେ ପ୍ରଜା ଦିନେ ଦେଖିବ ଜମିଦାରଙ୍କର ଗୁମାସ୍ତା, ବରକନ୍ଦାଜ ଆସି ସବୁ ଫଳ ପାରିନେଲେ । ତା ଛୁଆପିଲା ଆକାଶକୁ ଅନେଇଥିବେ । ସେମିତି ଜମିଦାରିଙ୍କର ବାସଘର ଖମାର କି କଚେରି ଘର ଛପର ହେବ, ଜମିରେ ବତର ଚାଲିଯାଉଛି ଚଞ୍ଚଳ ହଳ ହେବ, ଜମିଦାରିଙ୍କ ଘରେ ବାହାବ୍ରତ, ପର୍ବ, ଜନ୍ମ ଉତ୍ସବ ହେଉଛି । ମଜୁରିଆ ଲୋଡ଼ା । ସବୁ କାମ ପାଇଁ ବେଠିଆ ଦରକାର । ନିଜର କାମ ଧନ୍ଦା ଛାଡ଼ି ରଇତ ଆସି ବେଠି ତୁଲେଇବ । ମଜୁରି ତ କିଛି ପାଇବ ନାହିଁ ହୁଏତ ଖୋରାକିଟା ବି ନ ପାଇପାରେ । ଖଜଣା ଅସୁଲ ଦେଲେ ପ୍ରଜାକୁ ପାଉତି ଦେବା କଥା । ସେଇଟା ତାର ରକ୍ଷାକବଚ । ତାକୁ ଗୁମାସ୍ତା ଲେଖିବେ । ଖଜଣା ଓ ପଥକର ଅସୁଲ ଆଇନ ସମ୍ମତ ମାତ୍ର ଜମିଦାର ତାହା ଅସୁଲ କରିବାକୁ ଗୁମାସ୍ତା ରଖିଛନ୍ତି ତାକୁ ଦରମା ଦେବେ । ସେ ଖରଚ କୁଆଡୁ ଆସିବ । ସେଥିପାଇଁ ପ୍ରଜାଠାରୁ ଖରଡ଼ାପାଣି ଅସୁଲ ହେବ, ସୁନିଆଁ, ଦୋଳ, ଦଶହରା, ପାର୍ବଣ ସମୟରେ ପ୍ରଜା ଆସି ଜମିଦାରଙ୍କୁ ଭେଟି ଲାଗି କରିବ । ଛତିଶ ପାଟକର ପ୍ରଜା ନିଜ ଶକ୍ତି, କୁଳବୃତ୍ତି ଓ ସାମର୍ଥ୍ୟ ଅନୁସାରେ ଭେଟି ଦେବେ । ଗଉଡ଼ ଦୁଧ ଦହି ଘିଅ ଦେଲେ ବଢ଼େଇ ଖଟ, ପଲଙ୍କ, ଚଉକି କି ସିନ୍ଦୁକ ଦେବ । କମାର ହତିଆର ଛୁରୀ କି ପନିକି ଦେବ । ସାଧାରଣ ପ୍ରଜା କିଛି ନ ହେଲେ ନିଜ ବାଡ଼ି ବଗିଚାରେ କମାଇ ଥିବା କଖାରୁ, ବନ୍ତଳ କଦଳୀ, ଦେଶୀ ଆଳୁ ବା ବାଇଗଣ ଆଦି ପରିବା ଭାରକରି ଆଣି ଦେବ । ତାହା ମଧ୍ୟ ଜମିଦାରଙ୍କର ଆଖି ଦୃଶିଆ ନ ହେଲେ ଫୋପଡ଼ା ହେବ । ସାନି ମାଲ ଦେବାକୁ ପଡ଼ିବ । ନ ହେଲେ ଶାରୀରିକ ନିର୍ଯ୍ୟାତନା ।

ଏହି ପ୍ରକାର ଶୋଷଣ ଉଠାଇ ଦେବାକୁ ପ୍ରତିଶ୍ରୁତିବଦ୍ଧ ବିଶ୍ୱନାଥ ଦାସଙ୍କ ନେତୃତ୍ୱରେ ପ୍ରଥମ ଓଡ଼ିଶା କଂଗ୍ରେସ ମନ୍ତ୍ରୀମଣ୍ଡଳ ୧୯୩୭ ମସିହା ଜୁଲାଇ ମାସରେ ଦାୟିତ୍ୱ ଗ୍ରହଣ କଲେ । ବିଧାନ ସଭାରେ ଷାଠିଏଟି ସ୍ଥାନରେ ୫୬ ଟି ପାଇ ନିର୍ବାଚନ ହୁଏ । ବାକି ଚାରୋଟି ମନୋନୀତଙ୍କ ପାଇଁ । ଜମିଦାରୀମାନଙ୍କ ସ୍ୱାର୍ଥରକ୍ଷା ପାଇଁ ଦୁଇଗୋଟି ସ୍ଥାନ ମଧ୍ୟ ସଂରକ୍ଷିତ ଥାଏ । ନିର୍ବାଚନରେ କେବଳ ଥିଲାବାଲା ଭୋଟ ଦେଉଥିଲେ ତେଣୁ ଭୋଟର ସଂଖ୍ୟା କମ ଥିଲା । ନିର୍ବାଚନାରେ ଜିତି ଆସିଥିବା ପ୍ରାର୍ଥୀମାନଙ୍କ ମଧ୍ୟରେ ଦଳ ନିର୍ବିଶେଷରେ ଜମିଦାର ମଧ୍ୟ ଥିଲେ । ଉତ୍ତର ଓଡ଼ିଶାରୁ ମଧୁପୁର ରାଜା, ପାରିକୁଦ ରାଜା, ଆଳିରାଜାଙ୍କର ମେନେଜର, କଟକର ଜମିଦାର ଖାଁ ସାହେବ ଅହମଦ ବକ୍ସ ଦକ୍ଷିଣ ଓଡ଼ିଶାରୁ ଖଲିକୋଟ, ବଡ଼ଖେମୁଣ୍ଡି, ସାନଖେମୁଣ୍ଡି ରାଜା, ପାରଳାର ମହାରାଜା ନିର୍ବାଚିତ ହୋଇଥାଆନ୍ତି । ଜମିଦାର ମାନଙ୍କର ଦୁଇ ପ୍ରତିନିଧି ଓଡ଼ିଶାର ସମ୍ମାନସ୍ପଦ ବିଜ୍ଞ ଓ ଅଭିଜ୍ଞ

ଉଦାରପନ୍ଥୀ ବିଧାୟକ ବ୍ରଜସୁନ୍ଦର ଦାସ ଓ ପାରିକୁଦର ରାଜା ଥିଲେ ।

ଓଡ଼ିଶାର ପ୍ରଥମ ରାଜସ୍ୱ ମନ୍ତ୍ରୀ ହେଲେ ନିତ୍ୟାନନ୍ଦ କାନୁନ୍‌ଗୋ । ଭାରତ ବର୍ଷରେ ସେ ତତ୍‌କାଳୀନ ବୟଃକନିଷ୍ଠ (୩୭) ମନ୍ତ୍ରୀ । ମଧୁବାବୁ, ଗୋପବାବୁ, ନବବାବୁ ଓ ହରେକୃଷ୍ଣ ମହତାବଙ୍କ ପରି ସେ ମଧ୍ୟ ଏକ ସଂଭ୍ରାନ୍ତ ଜମିଦାର ପରିବାରର । ବାପା ଦୋର୍ଦ୍ଦଣ୍ଡ ପ୍ରତାପ ଡେପୁଟି କଲେକ୍ଟର ବାଳମୁକୁନ୍ଦ କାନୁନ୍‌ଗୋ । ଏକମାତ୍ର ପୁତ୍ର । ଅତି ଅଲିଅଳରେ ବଢ଼ିଥିଲେ । ତଥାପି ସେ ଥିଲେ କୃଷକମାନଙ୍କର ଶୋଷଣ ବିଷୟରେ ସଚେତନ । ଛାତ୍ରାବସ୍ଥାରୁ ସେମାନଙ୍କର ଆର୍ଥୀକ ଉନ୍ନତି ଓ ପ୍ରଗତି ପାଇଁ ଆଗ୍ରହୀ । ଆଇନ ଯୋଗ୍ୟତା ହାସଲ କରି ସେ ସକ୍ରିୟ ରାଜନୀତିରେ ପଶି ଲବଣ ସତ୍ୟାଗ୍ରହରେ ଭାଗ ନେବା ହେତୁ ପାଟଣା ହାଇକୋର୍ଟର ଗୋରା ବିଚାରପତି ତାଙ୍କର ଲାଇସେନ୍ସ ଖାରଜ କଲେ । ପୂର୍ବ କଟକ ନିର୍ବାଚନ ମଣ୍ଡଳିରୁ ସେ ବହୁ ଭୋଟରେ ନିର୍ବାଚିତ ହୋଇ ରାଜସ୍ୱ ସହିତ ଉନ୍ନୟନ ଓ ବାରିକ ମିସ୍ତ୍ରୀ ବିଭାଗର ମନ୍ତ୍ରୀ ହେଲେ । ୧୯୩୭ ମସିହା ସେପ୍ଟେମ୍ବର ୨୫ ତାରିଖ ଦିନ ସେ ଓଡ଼ିଶା ବିଧାନ ସଭାରେ ୧୯୧୩ ମସିହାର ଓଡ଼ିଶା ପ୍ରଜାସ୍ୱତ୍ୱ ଆଇନର ସଂଶୋଧନ ନିମିତ୍ତ ଏକ ଛୋଟ କାଟର ବିଲକୁ ଏକ ସିଲେକ୍ଟ କମିଟିକୁ ପଠାଇବାକୁ ପ୍ରସ୍ତାବ ଦେଲେ । ବିଲର ମର୍ମ ବୁଝାଇ ଦେଇ ସେ କହିଲେ ସଂଶୋଧନ ବଳରେ ପ୍ରଜା ତିନିଗୋଟି ମୁଖ୍ୟ ଅଧିକାର ପାଇବ । ସ୍ଥିତିବାନ ପ୍ରଜାର ବିନା କଟକଣାରେ ଜମି ହସ୍ତାନ୍ତର ଅର୍ଥାତ୍ ଦାଖଲ ଖାରଜ ପ୍ରଥାର ଲୋପ, ନିଜ ଜମି ଉପରେ ଥିବା ଗଛ ମାଛ ଉପରେ ଅବାରିତ ଅଧିକାର ଓ ଧାର୍ଯ୍ୟ ଖଜଣା ପଥକର ବ୍ୟତିତ ଅନ୍ୟ କୌଣସି ବେଆଇନ ପାଉଣାର ବିଲୋପ । ଏହାର ଅସୁଲି ଖାଲି ବେଆଇନ ହେଲା ନାହିଁ । ଏହା ଏକ ଦଣ୍ଡନୀୟ ଅପରାଧ ହେଲା । ଡରରେ ପ୍ରଜା ନିଜେ ଆପତ୍ତି ନ କଲେ ରାଜସ୍ୱ ଅଧିକାରୀ ନିଜ ସ୍ୱଜ୍ଞାନରେ ଏ ଦିଗରେ କାର୍ଯ୍ୟାନୁଷ୍ଠାନ କରିବା କ୍ଷମତା ପାଇଲେ । ଜମିଦାର ଗୋଷ୍ଠୀ ପକ୍ଷରୁ ବ୍ରଜ ସୁନ୍ଦର ଦାସ ଅନର୍ଗଳ ଭାଷଣରେ ଏହାର ବିରୋଧ କରି ଏହା ଫଳରେ ପ୍ରଜା ହାତରୁ ଜମି ଅଣଚାଷୀ, ବେପାରି ଓ ମହାଜନ ପାଖକୁ ଚାଲିଯିବ, ଗଛ ଲୋପ ପାଇଯିବ ବୋଲି ଆଶଙ୍କା ପ୍ରକାଶ କଲେ । ତାଙ୍କୁ ଦୃଢ଼ ସମର୍ଥନ ଦେଲେ ଆଳି ମେନେଜର, ଜମିଦାର ଖାଁ ସାହେବ, ମଧୁପୁର ରାଜା ଓ ଖୋର୍ଦ୍ଧାର ବିଧାୟକ ।

ଅପରପକ୍ଷେ ରାଜସ୍ୱମନ୍ତ୍ରୀଙ୍କୁ ଦୃଢ଼ ସମର୍ଥନ ଦେଲେ ଦଳର ଆଇନଜ୍ଞ ସ୍ୱାମୀ ବିଚିତ୍ରାନନ୍ଦ ଦାସ ପ୍ରଭୃତି । ବିରୋଧ ଦଳ ଦାବି କଲେ ଏହା ଶ୍ରେଣୀ ସଂଘର୍ଷ ଆଣିବ । ଓଡ଼ିଶାର ସର୍ବ ବରିଷ୍ଠ ରାଜ କର୍ମଚାରୀ ରାଜସ୍ୱ କମିସନର ଗୋରା ଆଇସିଏସ ଜେ. ଆର ଡ୍ରେନ୍ ମଧ୍ୟ ଏହି ବିଲକୁ ବିରୋଧ କରି ଏହା ବିପ୍ଳବ ସୃଷ୍ଟି କରିବ ବୋଲି ସରକାରଙ୍କୁ ସତର୍କ କରିଦେଇ ଥାଆନ୍ତି ଓ ତାହା ବିରୋଧୀମାନଙ୍କର ମୁଖ୍ୟ ଆୟୁଧ ଥିଲା । ଏସବୁ ବାଧା ସତ୍ତ୍ୱେ ଲୋକମତ

ନିମିତ୍ତ ଏହା ପ୍ରଚାର କରିବା ପ୍ରସ୍ତାବ କାଟ ଖାଇ ବିଲଟି ସିଲେକ୍ଟ କମିଟିକୁ ପଠାଗଲା । ସେ କମିଟିରେ ବିଧାନ ସଭା ସଭ୍ୟମାନଙ୍କ ମଧ୍ୟରୁ ପ୍ରାୟ ଏକ ତୃତୀୟାଂଶ (୧୭ ଜଣ) ରହିଲେ । ଯୁବକ ରାଜସ୍ୱ ମନ୍ତ୍ରୀ ସବୁ ମତବାଦର ବିଶେଷ କରି ମଧୁପୁର, ପାରିକୁଦ, ଆଳି ଆଦି ଜମିଦାରମାନଙ୍କୁ ଏହି କମିଟିରେ ରଖି ନିଜର ଉଦାରତା, ଉଦାର ଚିନ୍ତା, ଭିନ୍ନମତ ପ୍ରତି ସମ୍ମାନ ଦର୍ଶାଇ ନିଜର ରାଜନୈତିକ ପରିପକ୍ୱତା ପ୍ରତିଷ୍ଠା କରିପାରିଲେ । ଆଇନଗତ ତର୍ଜମା ନିମିତ୍ତ ରାଜ୍ୟ ଆଡ଼ଭୋକେଟ ଜେନେରାଲଙ୍କୁ ବିଧାନ ସଭାକୁ ଡକାଗଲା । ସେ ପରେ ଓଡ଼ିଶା ହାଇକୋର୍ଟର ପ୍ରଥମ ବିଚାରପତି ବୀରକିଶୋର ରାୟ । ମାର୍ଚ୍ଚମାସ ଏକ ତାରିଖ ଦିନ ସଭ୍ୟମାନଙ୍କୁ ସମ୍ବୋଧନ କଲେ । ଅବଶେଷରେ ୧୯୩୮ ମସିହା ସେ ମାସ ତିନି ତାରିଖରେ ଆଲୋଚନା ଶେଷରେ ବହୁ ଭୋଟରେ ଏହି ଯୁଗାନ୍ତକାରୀ ବିଲ ଗୃହୀତ ହେଲା । ୧୯୩୫ ମସିହା ଭାରତ ଶାସନ ଆଇନରେ ମନ୍ତ୍ରୀ ପରିଷଦର ସୀମିତ କ୍ଷମତା, ରାଜ୍ୟରେ ରାଜସ୍ୱ କମିଶନର, ଅମଲାତନ୍ତ୍ର, ବରିଷ୍ଠ ଜମିଦାର ଗୋଷ୍ଠୀ, ନ୍ୟସ୍ତସ୍ୱାର୍ଥ ବଡ଼ ରୟତମାନଙ୍କର ଦୃଢ଼ ବିରୋଧ ଓ ଚକ୍ରାନ୍ତ ସତ୍ତ୍ୱେ ରାଜସ୍ୱମନ୍ତ୍ରୀଙ୍କର ବିଲ୍ ପାସ କରାଇବାର ଦକ୍ଷତା ଓଡ଼ିଶାର ସବୁ ମହଲରେ ଆଲୋଚନାର ବିଷୟ ହେଲା । ଅବଶ୍ୟ ପରବର୍ତ୍ତୀ କାଳରେ ସେ କେନ୍ଦ୍ରମନ୍ତ୍ରୀ ଓ ରାଜ୍ୟପାଳ ଭାବରେ ସମ୍ମାନିତ ହୋଇଥିଲେ ।

ଓଡ଼ିଶାର ଭୂସଂସ୍କାରର ଭଗୀରଥ ଏହି ଦେଶପ୍ରେମୀ ନିତ୍ୟାନନ୍ଦ କାନୁନଗୋ ଓଡ଼ିଶାର ଚିର ନିଷ୍ପେଷିତ ଓ ଅବହେଳିତ ଓଡ଼ିଆ ଚାଷୀକୁଳର ସଦା ସ୍ମରଣଯୋଗ୍ୟ ।



# ଓଡ଼ିଶାର ରାଜଧାନୀ ପୁରୀ !

"ଓଡ଼ିଶା ବାହାରେ ଏହି ନବଗଠିତ ପ୍ରଦେଶ ଜଗନ୍ନାଥଧାମ ବା ପୁରୁଷୋତ୍ତମ ପୁରୀ ନାମରେ ପରିଚିତ । ପ୍ରଦେଶର ରାଜଧାନୀ ନିର୍ଣ୍ଣୟ ସମୟରେ ଏହି ପୁରୀର ଦାବି ସର୍ବପ୍ରଥମେ ବିଚାର୍ଯ୍ୟ"

ତା ୨୪-୯-୩୭ରେ ଓଡ଼ିଶା ବ୍ୟବସ୍ଥାପକସଭାରେ ବାବୁ ଜଗବନ୍ଧୁ ସିଂହ ।

ଓଡ଼ିଶାର ଲବ୍ଧପ୍ରତିଷ୍ଠ ସାହିତ୍ୟିକ, ଐତିହାସିକ ସମାଜସେବୀ ସହଯୋଗ ବ୍ୟବସ୍ଥାପକ ଏହି ଜଗବନ୍ଧୁ ସିଂହ ବର୍ତ୍ତମାନ ବିସ୍ମୃତ ପ୍ରାୟ । ନିମାପଡ଼ା ଥାନା ଭୋବନିପୁର ଗ୍ରାମରେ ୧୮୭୬ ମସିହାରେ ପିତା ଗୌରଚନ୍ଦ୍ର ବିଧାର ଓ ମାତା ଚନ୍ଦ୍ରମଣି ଦେବୀଙ୍କର ଏକ ସ୍ୱଚ୍ଛଳ ପରିବାରରେ ଜନ୍ମିତ ଏହି ସନ୍ତାନଙ୍କର ୭୨ ବର୍ଷ ଜୀବନକାଳ ଘଟଣାବହୁଳ ଥିଲା । ଗ୍ରାମ ବିଦ୍ୟାଳୟରୁ ଶିକ୍ଷା ସମାପ୍ତି ପରେ ସେ ପୁରୀ ଜିଲା ସ୍କୁଲରୁ ୧୮୯୬ ମସିହାରେ ଏନଟ୍ରାନ୍ସ ପାସ କଲେ । ତାଙ୍କର ଦୁଇ ବରଷ ପରେ ପଣ୍ଡିତ ଗୋପବନ୍ଧୁ ସେଠାରୁ ପାସ କଲେ । ଜଗବନ୍ଧୁ ୧୯୮୮ ମସିହାରେ ରେଭେନ୍ସା କଲେଜରୁ ଏଫ.ଏ. ଓ ୧୯୦୪ ମସିହାରେ ଆଇନ (ପି.ଏଲ) ପାସ କରି ପୁରୀରେ ଓକିଲାତି ଆରମ୍ଭ କଲେ । ୧୯୨୧ ମସିହାରେ ମହାତ୍ମା ଗାନ୍ଧିଙ୍କ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ ସେ ଭୋଗବିଳାସ ପରିତ୍ୟାଗ କରି ଖଦୀ ପ୍ରସାର ସୂତାକଟା ଓ ଅନ୍ୟାନ୍ୟ ଗ୍ରାମଉଦ୍ୟୋଗ କର୍ମରେ ଭାଗୀହେଲେ । ନାଗପୁର କଂଗ୍ରେସ କମିଟିର ଅଧିବେଶନରେ ସେ ଯୋଗ ଦେଇଥିଲେ । ପରେ କଂଗ୍ରେସ କମିଟିର ନିର୍ଦ୍ଦେଶ ଅନୁସାରେ ସେ ପୁରୀରେ ପୁଣି ଓକିଲାତି ଆରମ୍ଭ କଲେ । ଶ୍ରୀ ଜଗନ୍ନାଥ ମନ୍ଦିରରେ ମେନେଜର ଶ୍ରୀ ସଖୀଚାନ୍ଦଙ୍କ ଅନୁରୋଧରେ ମନ୍ଦିରରେ ସେବା ପୂଜା ସହିତ ସଂପୃକ୍ତ ଥାଇ ସେ କିଛିଦିନ ମନ୍ଦିରରେ ସହକାରୀ ପରିଚାଳକ ଦାୟିତ୍ୱ ବହନ କରିଥିଲେ । ପୁରୀ ଜିଲା ବୋର୍ଡ଼ର ସେ ଦୀର୍ଘଦିନ ଉପାଧ୍ୟକ୍ଷ ଥିଲେ । ବିହାର ଓଡ଼ିଶା ବିଧାନସଭାକୁ ସେ ପୁରୀ ସଦର ନିର୍ବାଚନ ମଣ୍ଡଳୀରୁ ଦୁଇବାର ନିର୍ବାଚିତ



ସିଂହତୁଲ୍ୟ ଶକ୍ତିଶାଳୀ ଜଗବନ୍ଧୁ ସିଂହ

- ଉତ୍କଳମିଳନ ୧୯୩୫

ହୋଇଥିଲେ । ଓଡ଼ିଶା ପ୍ରଦେଶ ଗଠନ ପରେ ସେ ମଧ ଓଡ଼ିଶା ବ୍ୟବସ୍ଥାପକ ସଭାର ସଭ୍ୟ ଥିଲେ । ୧୯୦୬ ମସିହାରୁ ସେ ଉତ୍କଳ ସମ୍ମିଳନୀର ସଭ୍ୟ ଥାଇ ପ୍ରତି ଅଧିବେଶନର ଆଲୋଚନାରେ ମୁଖ୍ୟ ଅଂଶ ଗ୍ରହଣ କରୁଥିଲେ । ମଧୁବାବୁଙ୍କ ବିରୋଧ ସତ୍ତ୍ୱେ ପଣ୍ଡିତ ଗୋପବନ୍ଧୁଙ୍କ ପ୍ରଚୋଦନାରେ ସେ ଉତ୍କଳ ସମ୍ମିଳନୀକୁ ଭାଙ୍ଗି ଦେଇଥିଲେ କାରଣ କଂଗ୍ରେସ ଭାଷା ସୂତ୍ରରେ ପ୍ରଦେଶ ଗଠନ ନିମିତ୍ତ ନିଷ୍ପତ୍ତି ନେଇଥିବାରୁ ସମ୍ମିଳନୀର ଆଉ ଆବଶକତା ରହିଲା ନାହିଁ ବୋଲି ସେ ଉପଲବ୍ଧି କରିଥିଲେ । ସେ ୧୯୨୦ ମସିହା ସମ୍ମିଳନୀର ସଭାପତି ଥାଇ ଏହା ସମ୍ଭବପର କରାଇଥିଲେ । ପୂର୍ବରୁ ପୁରୀରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ୧୯୦୮, ୧୯୧୩ ଓ ୧୯୧୯ ମସିହା ଅଧିବେଶନରେ ସେ ଅଭ୍ୟର୍ଥନା ସମିତିର ସଂପାଦକ ଥାଇ ସମ୍ମିଳନୀକୁ ସଫଳ କରାଇ ପାରିଥିଲେ । ତଥାପି ବ୍ରଜ ସୁନ୍ଦର ଦାସ ଆଦି ଅନେକ ଭିନ୍ନମତାବଲମ୍ବୀ ଉତ୍କଳ ସମ୍ମିଳନୀକୁ ବଞ୍ଚାଇ ରଖି ସାଇମନ କମିଶନ ଆଗରେ ଓଡ଼ିଆଙ୍କର ନ୍ୟାଯ୍ୟଦାବୀ ଉପସ୍ଥାପନ କରିବାରେ ସକ୍ଷମ ହୋଇଥିଲା । ବିଭିନ୍ନ ସେବାମୂଳକ ଓ ସାଂସ୍କୃତିକ ଅନୁଷ୍ଠାନ ସହିତ ଜଗବନ୍ଧୁ ସଂପୃକ୍ତ ଥିଲେ। ୧୯୧୯ ମସିହାରେ ପୁରୀ ଜିଲ୍ଲାର ଭୟଙ୍କର ଦୁର୍ଭିକ୍ଷ ସମୟରେ ସେ ଲୋକଙ୍କ ଗୁହାରି ସରକାରଙ୍କ ଦୃଷ୍ଟିକୁ ଆଣିବାରେ ସକ୍ଷମ ହୋଇଥିଲେ । ସରକାର ଅନୁମୋଦିତ ଦୁର୍ଭିକ୍ଷ ଅନୁସନ୍ଧାନ କମିଟିର ଅଧକ୍ଷ ଥାଇ ସେ ସରକାରଙ୍କର ଅବହେଳା ଓ ଅପାରଗତାକୁ ଲୋକଲୋଚନକୁ ଆଣିବାରେ ସକ୍ଷମ ହୋଇଥିଲେ । ପଣ୍ଡିତ ଗୋପବନ୍ଧୁଙ୍କର ସେ ଘନିଷ୍ଠ ସହଯୋଗୀ ଥିଲେ ମାତ୍ର କେତେକ କାରଣରୁ ସେମାନଙ୍କ ମଧରେ ମତାନ୍ତର ସୃଷ୍ଟି ହେଲା ତଥାପି ନିଜର ଉଇଲ କଲାବେଳେ ଗୋପବନ୍ଧୁ ତାଙ୍କୁ ଅନ୍ୟତମ ଏକ୍‌ଜିକ୍ୟୁଟର ଭାବେ ନିଯୁକ୍ତି କରିଥିଲେ । ମାତ୍ର ଜଗବନ୍ଧୁଙ୍କର ଜୀବନରେ ଶ୍ରେଷ୍ଠ କୃତି ଥିଲା ତାଙ୍କର ଓଡଆ ସାହିତ୍ୟକୁ ଅବଦାନ ।

ଉତ୍କଳ ସାହିତ୍ୟ, ମୁକୁର, ସତ୍ୟବାଦୀ, ସମ୍ବାଦ ବାହିକା ଆଦି ପତ୍ରିକାମାନଙ୍କରେ ସେ ନିୟମିତ ପ୍ରବନ୍ଧ ଲେଖି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଥିଲେ। ଇତିହାସ ପ୍ରତ୍ନତତ୍ତ୍ୱ ଧର୍ମ ସଂସ୍କୃତି, ଭାଷା ସାହିତ୍ୟକୁ ନେଇ ତାଙ୍କର ଲେଖନୀ ଥିଲା ଚଳଚଞ୍ଚଳ । ତାଙ୍କର ପ୍ରକାଶିତ ସାରସ୍ୱତ କୃତି ମଧରେ ପ୍ରାଚୀନ ଭାରତ, ଭାରତ ଚରିତାମୃତ ଜ୍ୟୋତିଷାର୍ଣ୍ଣବ (୪ଖଣ୍ଡ) ଗୃହଲକ୍ଷ୍ମୀ (୪ଖଣ୍ଡ), ଶ୍ରୀକୃଷ୍ଣ, ପ୍ରବନ୍ଧସାର, ଗାନ୍ଧି ମାହାତ୍ମ୍ୟ ଗୀତାରହସ୍ୟ, ଗୀତାର ଅନୁବାଦ ବୁକାର ଟି ୱାସିଂଟନ ଜୀବନୀ ପଞ୍ଚାୟତ ଦର୍ପଣ ସ୍ମରଣ ଯୋଗ୍ୟ । କେତେକ ଗୀତିନାଟ୍ୟ ପ୍ରବୀର, ପ୍ରଭାସଯଜ୍ଞ, ଇନ୍ଦୁମତୀ, ବିଲ୍ୱମଙ୍ଗଳ, କର୍ଣ୍ଣାର୍ଜୁନ, ନନ୍ଦୀକେଶରୀ ଆଦି ଅପ୍ରକାଶିତ । ତାଙ୍କର ଅଧ୍ୟାତ୍ମ ରାମାୟଣର ଅନୁବାଦ ଉଚ୍ଚକୋଟୀର ଥିଲା । ସର୍ବୋପରି ପ୍ରାଚୀନ ଉତ୍କଳ ଜଗବନ୍ଧୁଙ୍କର ଅକ୍ଷୟ କୀର୍ତ୍ତୀ । ୧୯୧୦ ମସିହାରୁ ପ୍ରାଚୀନ ଉତ୍କଳର

କଳା, ସଂସ୍କୃତି, ସାହିତ୍ୟ ଆଦି ବିଷୟରେ ସେ ଗବେଷଣାତ୍ମକ ପ୍ରବନ୍ଧମାନ ଉତ୍କଳ ସାହିତ୍ୟ ମୁକୁର ସତ୍ୟବାଦୀ ଆଦି ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ କରିଥିଲେ ଓ ପରେ ଏହା ୧ ୯ ୨ ୯ ମସିହାରେ ଏକତ୍ରିତ ହୋଇ ପ୍ରାଚୀନ ଉତ୍କଳ ନାମରେ ପୁସ୍ତକାକରରେ ପ୍ରକାଶିତ ହେଲା । କଳାପାଇଁ ପ୍ରସିଦ୍ଧ ଉତ୍କଳର ମନ୍ଦିର, ଗୁମ୍ଫା, ଖୋଦିତ ଶିଳାଲିପି, ତାମ୍ର ଶାସନ ଆଦି ସେ ବିଶଦଭାବରେ ଆଲୋଚନା କରିଥିଲେ । ଓଡ଼ିଆ ସାହିତ୍ୟର ପ୍ରାଚୀନ ଗଜପତିମାନଙ୍କର ଇତିହାସ, ଶ୍ରୀ ଜଗନ୍ନାଥ ସେବା ପୂଜା ବିବରଣୀ, ଜ୍ୟୋତିଷଚର୍ଚ୍ଚା ଆଦି ଏଥିରେ ସେ ଆଲୋଚନାକୁ ଆଣିଛନ୍ତି । ଜ୍ୟୋତିଷାର୍ଣ୍ଣବ ଗ୍ରନ୍ଥ ତାଙ୍କର ଶାସ୍ତ୍ରରେ ବ୍ୟୁତ୍ପତ୍ତି ସୂଚାଇଥାଏ । ଗୃହଲକ୍ଷ୍ମୀ ଗ୍ରନ୍ଥ ସମାଜ ସେବା ଓ ଗ୍ରାର୍ହସ୍ଥ୍ୟ ଜୀବନ ଯାପନ ଉପରେ ଏକ ଅପୂର୍ବ ଗ୍ରନ୍ଥ । ଓଡ଼ିଶୀ ସଂଗୀତ ଚର୍ଚ୍ଚାକରି ସେ 'ସଂଗୀତ ରସନିଧି' ପୁସ୍ତକ ରଚନା କରିଥିଲେ । ଭାରତଚରିତାମୃତ ୨ ଖଣ୍ଡରେ ତାଙ୍କ ମୃତ୍ୟୁର ୧୬ ବର୍ଷ ପରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ପ୍ରକାଶିତ ହୋଇଥିଲା । ଓଡ଼ିଆମାନେ ପୁରାଣପ୍ରିୟ ଜାଣି ଜୀବନର ଶେଷଭାଗରେ ସେ ଏହି ଚତୁର୍ଦ୍ଦଶାକ୍ଷରୀ ବୃତ୍ତରେ ରଚନା କରିଥିଲେ । ଭାରତର ଇତିହାସର ସମସ୍ତ ଘଟଣା ସରଳ ପଦ୍ୟରେ ଏଥିରେ ଉପସ୍ଥାପିତ । ପ୍ରଥମ ଖଣ୍ଡର ଜଗନ୍ନାଥଙ୍କ ସ୍ତୁତିରୁ ଆରମ୍ଭ ହୋଇ ୭୫ ତମ ଅଧ୍ୟାୟରେ ଏହା ଜାତିଭେଦତତ୍ତ୍ୱରେ ଶେଷ। ୨ୟ ଖଣ୍ଡରେ କଂଗ୍ରେସ ଚରିତରୁ ଆରମ୍ଭ କରି ଗାନ୍ଧୀଜୀଙ୍କର ମହାପ୍ରୟାଣ ପର୍ଯ୍ୟନ୍ତ ଘଟଣାବଳୀ ୧ ୨ ୮ ଅଧ୍ୟାୟରେ ବର୍ଣ୍ଣିତ । ଏହାର ସରଳ ଛନ୍ଦମୟ ଭାଷା ସାଧାରଣ ଲୋକଙ୍କର ରୁଚିକର ଥିଲା।

ସତ୍ୟବାଦୀ ବନବିଦ୍ୟାଳୟର ପ୍ରଧାନ ପୃଷ୍ଠପୋଷକ ଥାଇ ସେ ଏହାର ପରିଚାଳନା କମିଟିର ସଭ୍ୟ ଥିଲେ । ପୁରୀରେ ଅନେକ ମଠ ମନ୍ଦିରର ପରିଚାଳନା ସହିତ ସେ ସଂପୃକ୍ତ ଥିଲେ । ୧ ୯ ୧ ୯ ମସିହାରେ କଟକରେ ଅନୁଷ୍ଠିତ ଉତ୍କଳ ଛାତ୍ର ସମ୍ମିଳନୀର ସେ ସଭାପତି ଥିଲେ । ସହଯୋଗ ସମବାୟ ଆନ୍ଦୋଳନରେ ସେ ଜଣେ କର୍ଣ୍ଣଧାର ଥାଇ ସମବାୟ ଋଣ ସମିତିର କାର୍ଯ୍ୟକାରିତା ଲୋକମାନଙ୍କୁ ଦୃଷ୍ଟିକୁ ଆଣିଥିଲେ । ତାଙ୍କର ଉଦ୍ୟମଫଳରେ ପରବର୍ତ୍ତୀ କାଳରେ ପୁରୀ ନିମାପଡ଼ା ସମବାୟ ବ୍ୟାଙ୍କ ଗଠିତ ହୋଇଥିଲା । ସ୍ୱର୍ଗତ ରାଜକିଶୋର ଦାସ ଓକିଲ ବ୍ରହ୍ମାନନ୍ଦ ମହାନ୍ତିଙ୍କର ସହଯୋଗରେ ସେ ଜଗନ୍ନାଥ ବଲ୍ଲଭ ମଠର ଟ୍ରଷ୍ଟିଥାଇ ଅନେକ ଉନ୍ନତି କରିପାରିଥିଲେ । ଜଗନ୍ନାଥ ବଲ୍ଲଭ ମଠର ବଗିଚାରେ ଥିବା ବୃକ୍ଷରାଜି ତାଙ୍କର ସୁରୁଚି ଓ କୀର୍ତ୍ତିର ନିଦର୍ଶନ । ତାଙ୍କର ଉଦ୍ୟମରେ ମଠରେ ସାହିତ୍ୟ ସଭା ବକ୍ତୃତା, ସଙ୍ଗୀତ ଚର୍ଚ୍ଚା ବିଶେଷ କରି ଝୁଲଣ ସମୟରେ କରାଯାଇ ଓଡ଼ିଶୀ ସଂଗୀତ ଗାନ ଲୋକପ୍ରିୟ କରାଯାଇ ପାରିଲା।

ଅପ୍ରେଲ ପହିଲା ୧ ୯ ୩୬ ମସିହାରେ ଓଡ଼ିଶା ପ୍ରଦେଶ ନୂଆ ହୋଇ ଗଠିତ

ହୋଇଥାଏ । ଏହାର କଂଗ୍ରେସ ମନ୍ତ୍ରୀମଣ୍ଡଳ କାର୍ଯ୍ୟଭାର ଗ୍ରହଣ କରିଥାଆନ୍ତି । ବିଧାନସଭାର ସଭ୍ୟ ସଂଖ୍ୟା ମାତ୍ର ଷାଠିଏ । କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର, ଗଞ୍ଜାମ ଓ କୋରାପୁଟକୁ ନେଇ ପ୍ରଦେଶ ଗଠିତ । ସଭ୍ୟମାନଙ୍କ ମଧ୍ୟରୁ ଚାରିଜଣ ରାଜ୍ୟପାଳଙ୍କ ଦ୍ୱାରା ମନୋନୀତ । ନିର୍ବାଚନ ସଭ୍ୟମାନଙ୍କ ପାଇଁ ଦୁଇଟି ସ୍ଥାନ ମହିଳା, ଦୁଇଟି ଜମିଦାର, ବାଣିଜ୍ୟ, ଶ୍ରମିକ, ଖ୍ରୀଷ୍ଟିଆନ ଓ ଚାରିଗୋଟି ମୁସଲମାନମାନଙ୍କ ପାଇଁ ସରକ୍ଷିତ । ପୁରୀ ଜିଲ୍ଲାର ନିର୍ବାଚିତ ସଭ୍ୟମାନେ ଜଗବନ୍ଧୁ ସିଂହ, ଲୋକନାଥ ମିଶ୍ର, ମୋହନ ଦାସ ଓ ପ୍ରାଣନାଥ ପଟ୍ଟନାୟକ । ପାରିକୁଦ ରାଜା ଶ୍ରୀ କୃଷ୍ଣଚନ୍ଦ୍ର ମାନସିଂହ ହରିଚନ୍ଦନ ମର୍ଦ୍ଦରାଜ ଭ୍ରମରବର ରାୟ ମଧ୍ୟ ଥିଲେ ଜଣେ ଜମିଦାର ପ୍ରତିନିଧି । ପ୍ରଦେଶର ରାଜଧାନୀର ସ୍ଥାନ ନିରୂପଣ ନିମିତ୍ତ ଭାରତ ସରକାର ଗୋଟିଏ ୩ ଜଣିଆ କମିଟି - ଓଡ଼ିଶା ପ୍ରଦେଶ ରାଜଧାନୀ ସ୍ଥାନ ନିରୂପଣ କମିଟି ୧୯୩୬-ବସାଇଥିଲେ । ଅଧ୍ୟକ୍ଷ ଏଫ.ଟି. ଜୋନ୍‌ସଙ୍କ ନାମ ଅନୁସାରେ ଏହା ଜୋନ୍‌ସ କମିଟି ନାମରେ ପରିଚିତ ଥିଲା । ତା ୧୯-୮-୩୬ରେ ଏହି କମିଟି ଶିମିଳାଠାରେ ସେମାନଙ୍କର ରିପୋର୍ଟ ସ୍ୱାକ୍ଷର କଲେ । ପରେ ଓଡ଼ିଶାର ଜଣେ ସିଭିଲିଆନ କମିଶନର ଜେ.ଆର.ଡ଼େନ୍‌ସ ଏହି ରିପୋର୍ଟ ସମୀକ୍ଷା କରି ନିଜର ମତାମତ ଦେଲେ । ଅନ୍ୟ ତିନିଜଣ ସଭ୍ୟଥିଲେ ଇ.ରସକିଲ ସ୍ମିଥ JAS ଫିଲିପ୍ସ ଓ OE ଜେଫରିସ । ଓଡ଼ିଶାର ବିଭିନ୍ନ ସ୍ଥାନର ଦାବି ଅନୁଧ୍ୟାନ କରି ଜୋନ୍‌ସ କମିଟି ସର୍ବସମ୍ମତିକ୍ରମେ ବିନା ଦ୍ୱିଧାରେ ବ୍ରହ୍ମପୁର ନିକଟ ରଙ୍ଗେଇଲୁଣ୍ଡା ନାମକ ସ୍ଥାନକୁ (ବର୍ତ୍ତମାନ ବିଶ୍ୱବିଦ୍ୟାଳୟରେ ନିକଟବର୍ତ୍ତୀ) ରାଜଧାନୀର ସର୍ବୋପଯୁକ୍ତ ସ୍ଥାନ ବୋଲି ବୋଲି ମତବ୍ୟକ୍ତ କରିଥିଲେ । ପ୍ରଦେଶରେ ବିଶ୍ୱନାଥ ଦାସଙ୍କ ନେତୃତ୍ୱରେ ଦାୟିତ୍ୱମୂଳକ ଲୋକପ୍ରତିନିଧି ଶାସନ ପ୍ରତିଷ୍ଠା ହେବା ପରେ ତା ୨୪-୯-୩୭ରେ କଟକର ପ୍ରତିନିଧି ସ୍ୱାମୀ ବିଚିତ୍ରାନନ୍ଦ ଦାସ ଏହି ରିପୋର୍ଟ ବିବେଚନା କରି କଟକ ସହରକୁ ରାଜଧାନୀର ମାନ୍ୟତା ଦେବାକୁ ବିଧାନସଭାରେ ଏକ ପ୍ରସ୍ତାବ ଆଣିଥିଲେ । ପୂର୍ବରୁ କମିଟି କଟକ ବିଷୟ ବିଚାରି କରି ନାନା କାରଣ ଦର୍ଶାଇ ଏହା ରାଜଧାନୀ ହେବାକୁ ଅନୁପଯୁକ୍ତ ବୋଲି ମତ ଦେଇଥିଲେ । ଏହି ପ୍ରସ୍ତାବର ଆଲୋଚନା ସମୟରେ ଜଗବନ୍ଧୁବାବୁ ପୁରୀର ଦାବୀ ଦୃଢ଼ ଭାବରେ ବଜ୍ର ଗମ୍ଭୀର ସ୍ୱରରେ ଉପସ୍ଥାପନ କରିଥିଲେ । ଅବଶ୍ୟ ପ୍ରସ୍ତାବ କେବଳ ଆଲୋଚନାରେ ସୀମିତ ରହିଲା । ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାସ ସରକାର ଏହା ବିଚାର କରିବାକୁ ପ୍ରତିଶ୍ରୁତି ଦେବାରୁ ସ୍ୱାମୀଜୀ ତାଙ୍କ ପ୍ରସ୍ତାବ ପ୍ରତ୍ୟାହାର କଲେ ।

ପୁରୀର ଓକିଲ ଜଗବନ୍ଧୁ ସିଂହ ସେ ସମୟରେ ଜଣେ ପ୍ରତିଷ୍ଠିତ ବ୍ୟବସ୍ଥାପକ । ଆଗରୁ ସେ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାରେ ଦୁଇଥର ସଭ୍ୟ ଥିଲେ । ସାହିତ୍ୟିକ ଭାବରେ ମଧ୍ୟ ତାଙ୍କର କୃତୀ ଓ ସୁଖ୍ୟାତି ସମଗ୍ର ପ୍ରାକୃତିକ ଓଡ଼ିଶାରେ ବିସ୍ତାର ଲାଭ

କରିଥାଏ । ସେଥିମଧ୍ୟରେ, ଅନବଦ୍ୟ ଗ୍ରନ୍ଥ ପ୍ରାଚୀନ-ଉତ୍କଳ ସର୍ବୋତ୍ତମ । ତତ୍କାଳୀନ ଗବେଷଣାର ସ୍ୱଳ୍ପତା ଓ ପୁସ୍ତକର ଦୁର୍ଲଭତା ତାଙ୍କୁ ଏ ଦିଗରେ ନିରୁତ୍ସାହିତ କରିପାରି ନ ଥିଲା । ମାତ୍ର ବର୍ତ୍ତମାନ ପିଢ଼ିର ଯୁବକମାନଙ୍କୁ ଜଗବନ୍ଧୁଙ୍କର ସାହିତ୍ୟ କୃତିପରି ତାଙ୍କର ବ୍ୟବସ୍ଥାପକ ଜୀବନ ପରିଚିତ ନୁହେଁ । ୧୯୩୫ ମସିହାରେ ଭାରତ ଶାସନ ଆଇନ ବା ତାହାର ପୂର୍ବବର୍ତ୍ତୀ ୧୯୧୯ ମସିହାର ଆଇନ ଅନୁସାରେ ବ୍ୟବସ୍ଥାସଭା ଓ ବ୍ୟବସ୍ଥାପକମାନଙ୍କର କ୍ଷମତା ସୀମିତ ଥିଲା । ମାତ୍ର ସବୁ ପ୍ରତିବନ୍ଧକ ସତ୍ତ୍ୱେ ନିଜର ବାଗ୍ମୀତା ଯୁକ୍ତି ଓ କୌଶଳ ପ୍ରଦର୍ଶନ କରି ସରକାରଙ୍କୁ ଅଡୁଆରେ ପକାଇବା ଓ ଫଳରେ ନିଜର ମତ ଜାହିର କରିବା ପ୍ରକୃତ ଲୋକପ୍ରତିନିଧିଙ୍କର ଦକ୍ଷତାର ପ୍ରମାଣ ଥିଲା । ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାରେ ସେ ଚଉକିଦାର ଟିକସ ଉଠାଇଦେବାକୁ ପ୍ରସ୍ତାବ ଆଣିଥିଲେ । ସେତେବେଳେ ଏହି ଟିକସ ପ୍ରଜାଠାରୁ ତାହାର ଜମିର ଆୟତନ ଅନୁସାରେ ତାହା ନିଜ କ୍ଷେତ ଉପରୁ ଶସ୍ୟ ଆକାରରେ ଆଦାୟ କରାଯାଉଥିଲା । ଚଉକିଦାରମାନେ ସେହି ଅର୍ଥରୁ ଦରମା ପାଉଥିଲେ । ବାବୁ ଜଗବନ୍ଧୁ ଏହାକୁ ଉତ୍ପୀଡ଼କ, ବିରକ୍ତିକର ଓ ଦୁର୍ନୀତିମୂଳକ ବୋଲି ପ୍ରମାଣ କରି ଏହାକୁ ଉଠାଇଦେବାକୁ ସକ୍ଷମ ହୋଇପାରିଥିଲେ । ମାତ୍ର ପରବର୍ତ୍ତୀକାଳରେ ଏହା ପୁଣି ନଗଦ ଟଙ୍କା ଆକାରରେ ବସାଯାଇଥିଲା । ଏହାର ମଧ୍ୟ ସେ ବିରୋଧ କରିଥିଲେ । ଓଡିଶା ବ୍ୟବସ୍ଥାପକସଭାରେ ତା ୨୦-୧-୧୯୩୮ରେ ବର୍ଷକ ପାଇଁ ଚାଷୀର ଆର୍ଥୀକ ଦୁରବସ୍ଥା ଦୃଷ୍ଟେ ଏହାର ଆଦାୟ ସ୍ଥଗିତ କରିବାକୁ ପ୍ରସ୍ତାବ ଆସିବାବେଳେ ସେ ଏହାର ଅନାବଶ୍ୟକତା ଦର୍ଶାଇ ପୂରାପୂରି ଉଠାଇଦେବାକୁ ଦାବି କଲେ ।

ପ୍ରଥମ ବ୍ୟବସ୍ଥାପକସଭାର ଆରମ୍ଭରୁ ସେ କୃଷକ ପ୍ରଜାମାନଙ୍କର ସାମୂହିକ ଉନ୍ନତି ନିମିତ୍ତ ବ୍ରତୀ ଥିଲେ । ସେତେବେଳେ ପୁରୀ ଜିଲ୍ଲା ସବୁବେଳେ ବନ୍ୟା ଦାଉରୁ କ୍ଷତି ସହୁଥାଏ । ବନ୍ୟା ପରେ ପରେ ସାମୟିକ ସାହାର୍ଯ୍ୟ ଟେଷ୍ଟ ରିଲିଫ ନିମିତ୍ତ ପ୍ରସ୍ତାବ ଆସିବାବେଳେ ସେ ସ୍ଥାୟୀ ପ୍ରତିକାର ଦିଗରେ ବ୍ୟବସ୍ଥା କରିବାକୁ ସରକାରଙ୍କୁ ପ୍ରବର୍ତ୍ତାଇଥିଲେ । ୧୯୩୭ ମସିହା ଜୁଲାଇ ମାସରେ ପ୍ରଥମ ଅଧିବେଶନ ବସେ ଓ ସେ ତା ୧୪-୯-୧୯୩୭ରେ ଏକ କାଟ ପ୍ରସ୍ତାବ ମାଧ୍ୟମରେ ନିଜର ବକ୍ତବ୍ୟ ପ୍ରକାଶ କରିଥିଲେ । ଖଜଣା ଆଦାୟ ସ୍ଥଗିତ ନ ରଖି ସେ ବର୍ଷର ଖଜଣା ପୂରାପୂରି ଛାଡ଼ ଦେବାକୁ ତାଙ୍କର ଦାବି ଥିଲା । ୧୯୨୬-୨୭ ମସିହାର ବନ୍ୟା ନିରାକରଣ କମିଟିର ରିପୋର୍ଟରୁ ଉଦ୍ଧାର କରି ସେ କେନାଲ ତିଆରି ଫଳରେ ବନ୍ୟାଜଳ ସମୁଦ୍ରକୁ ନିଷ୍କାସନ ହୋଇ ନ ପାରିବା ଓ ବନ୍ୟାର ପ୍ରକୋପ ବଢ଼ିବା ଓ କେନାଲମାନ ବନ୍ଦ କରିଦେବା ଫଳରେ ଏହାର ସମାଧାନ ସମ୍ଭବ ବୋଲି ସେ ବଳିଷ୍ଠ ଯୁକ୍ତିଉପସ୍ଥାପନ କରିଥିଲେ । ମହାନଦୀ ଓ

ବ୍ରାହ୍ମଣୀ ନଦୀର ଆନିକଟକୁ ଭାଙ୍ଗିଦେବା ଏହି ବନ୍ୟା କମିଟିର ଅନ୍ୟତମ ସୁପାରିଶ ଥିଲା ଓ ସରକାର ତାହା ବିଚାର କରୁଥିବା ପ୍ରକାଶ କରିଥିଲେ । ଅବଶ୍ୟ ବର୍ତ୍ତମାନ ପରିବର୍ତ୍ତିତ ପରିସ୍ଥିତି ଓ ଦ୍ରୁତ ବହୁମୁଖୀ ଜଳସେଚନ ଯୋଜନାର କୃତକାର୍ଯ୍ୟତା ଦେଖି ଏ ପ୍ରକାର ଦାବି ପ୍ରତିକ୍ରିୟାଶୀଳ ଜଣାପଡ଼େ । ମାତ୍ର ସେତେବେଳେ ବିଶେଷଜ୍ଞ କମିଟି ମଧ୍ୟ ଏ ପ୍ରକାର ମତ ପୋଷଣ କରୁଥିଲେ, ପୁଣି କେନାଲ ପାଇଁ ସରକାରଙ୍କଠାରୁ ଆଣିଥିବା ଋଣ ଟଙ୍କାରେ ମୂଳଧନ ଓ ସୁଧ ଦେବାକୁ ପଡୁଥିଲା । ଦରିଦ୍ର ଓଡ଼ିଆ ପ୍ରଜା ପ୍ରତି ଏହି କରଭାର ଅସହ୍ୟ ଥିଲା । ଅଥଚ କେନାଲ ପାଇଁ ବଜେଟରେ ମୋଟ ଚାରିଲକ୍ଷ ନଅହଜାର ନଅଶହ ସତାବନ ଟଙ୍କା ଦାବି ଉପସ୍ଥାପନ କରାଯାଇଥିଲା । ସେତେବେଳେ ପୁରୀ ସହରରେ ଜଳଯୋଗାଣ ବ୍ୟବସ୍ଥା ଥିଲା । ଏହା ସମଗ୍ର ରାଜ୍ୟରେ ଅଦ୍ୱିତୀୟ । ରାସ୍ତାଧାରରେ ପାଣି ପାଇପ ମୂଳରେ ଜଳ ଜମିରହି ସନ୍ତସନ୍ତିଆ ହୋଇ ବର୍ଷା ଦିନେ ମଶା ମାଛି ସୃଷ୍ଟି କରୁଥିଲା, ମେଲେରିଆ ଓ ବାତଜ୍ୱରର ପ୍ରକୋପ ବଢୁଥିଲା । ପ୍ରତିକାର ସ୍ୱରୂପ କରଦାତାମାନଙ୍କୁ ସେମାନଙ୍କର ଘରେ ପାଣି ଯୋଗାଇ ଦେଲେ ପାଣି ନଷ୍ଟ ହେବ ନାହିଁ ଓ ମଶା ମାଛି ହେବେ ନାହିଁ ବୋଲି ସେ ଦାବି କରୁଥିଲେ । ସେତେବେଳେ ସରକାରଙ୍କର ଦେବୋତ୍ତର ଓ ଅନ୍ୟାନ୍ୟ ଧାର୍ମିକ ଅନୁଷ୍ଠାନମାନଙ୍କ ଉପରେ କୌଣସି କର୍ତ୍ତୃତ୍ୱ ନ ଥିଲା - ସରକାର ମଧ୍ୟ ସେମାନଙ୍କୁ କୌଣସି ଅନୁଦାନ ଦେଉ ନ ଥିଲେ । ତତ୍‌କାଳୀନ ବ୍ରିଟିଶ ସରକାର ଏ ପ୍ରକାର ଦାୟିତ୍ୱ ନେଲେ ତାହା ଧର୍ମରେ ହସ୍ତକ୍ଷେପ ଓ ଅନୁଦାନ ଦେଲେ ତାହା ଖ୍ରୀଷ୍ଟିଆନ ସରକାର ହୋଇ ହିନ୍ଦୁ ଧର୍ମର ପୃଷ୍ଠପୋଷକତା ବୋଲି ମନେ କରୁଥିଲେ । ସେମାନଙ୍କ ଦେଶରେ ଏ ପ୍ରକାର ମତ ପ୍ରଚଳିତ ଥିଲା ଓ ସମାଲୋଚନା ଭୟରେ ସରକାର ଏ ଦିଗରେ କିଛି କରୁ ନ ଥିଲେ । ମାତ୍ର ତା ୨୮-୯-୧୯୩୭ରେ ବିଧାନସଭାରେ ସରକାର ଲୋକପ୍ରତିନିଧି ହୋଇଥିବାରୁ ଏପ୍ରକାର ଦାୟିତ୍ୱ ନେବା ଉଚିତ୍ ବୋଲି ପ୍ରକାଶ କରି ବାବୁ ଜଗବନ୍ଧୁ ବିରୋଧୀ ଦଳର ସଭ୍ୟ ମାନଧାତା ଗୋରାଚାନ୍ଦ ପଟ୍ଟନାୟକଙ୍କର ଆଗତ ବିଲକୁ ସମର୍ଥନ ଜଣାଇଥିଲେ । ପୁରୀ ଶ୍ରୀ ଜଗନ୍ନାଥ ମନ୍ଦିରର ସୁପରିଚାଳନା ବ୍ୟାହତ ଓ ଗଜପତି ମହାରାଜାଙ୍କର ପରିଚାଳନାରେ ବିଭ୍ରାଟ ଦେଖାଯାଉଥିବାରୁ ସେ ତା ୮.୩.୧୯୩୮ରେ ପ୍ରାଣନାଥ ପଟ୍ଟନାୟକଙ୍କ ଦ୍ୱାରା ଆଗତ ଶ୍ରୀ ଜଗନ୍ନାଥ ମନ୍ଦିର ପରିଚାଳନା ବିଲ୍‌କୁ ସମର୍ଥନ ଦେଇଥିଲେ । ୧୯୩୯ ନଭେମ୍ବର ମାସରେ କଂଗ୍ରେସ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେବା ଫଳରେ ଏହି ବିଲ୍‌ଗୁଡ଼ିକ କାର୍ଯ୍ୟକାରୀ ହୋଇପାରି ନ ଥିଲା । ପରବର୍ତ୍ତୀକାଳରେ ଦଳତ୍ୟାଗୀମାନଙ୍କ ସାହାଯ୍ୟରେ ପ୍ରଦେଶରେ ମିଳିତ ମନ୍ତ୍ରୀମଣ୍ଡଳ ଗଠିତ ହୋଇଥିଲେ ମଧ୍ୟ ନିଜ ଦଳର ବରିଷ୍ଠ ନେତାମାନେ ଜେଲରେ ଥିବା ଯୋଗୁ ଜଗବନ୍ଧୁ ଆଲୋଚନାରେ ବିଶେଷ ଭାଗ ନେଉ ନ ଥିଲେ । ପାରିକୁଦ ମାଲୁଦରେ ଲୁଣାପାଣିରୁ ରକ୍ଷା ପାଇଁ ଘେରିବନ୍ଧ ଓ ଖାସ ମହାଲମାନଙ୍କରେ ଦାଖଲ ଖାରଜ ଉଠାଇଦେବା

ପାଇଁ ମଧ୍ୟ ସେ ପ୍ରସ୍ତାବ ଆଣିଥିଲେ ।

ଜଣେ ବ୍ୟବସ୍ଥାପକ ଭାବରେ ଓକିଲ ଜଗବନ୍ଧୁ ନିଜକୁ ପ୍ରତିଷ୍ଠିତ କରାଇ ପାରିଥିଲେ ଓ ପୁରୀ ସିଂହ ନାମକୁ ସଫଳ କରିଥିଲେ । ଜଗନ୍ନାଥ ବଲ୍ଲଭ ମଠ ପୁଷ୍କରିଣୀରେ ୧୯୪୮ ମସିହା ମଇ ମାସ ସତର ତାରିଖ ନିଳାଦ୍ରୀ ମହୋଦୟ ଦିବସରେ ସ୍ନାନ ପରେ ସୂର୍ଯ୍ୟକୁ ଜଳଦାନ କରୁଥିବା ସମୟରେ ସେ ଟଳିପଡ଼ିଲେ । ଉତ୍କଳ ଜନନୀ ପ୍ରତିଭାଶାଳୀ ଜଣେ ବରପୁତ୍ରକୁ ହରାଇଲା ।



# ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ

ପାରଳାଖେମୁଣ୍ଡି ସହରରେ ମହାରାଜାଙ୍କର ୭୭ ତମ ଜନ୍ମ ଦିବସ ପୌର ପରିଷଦ ଆନୁକୂଲ୍ୟରେ ପାଳିତ ହୋଇ ସେହି ଉପଲକ୍ଷେ ଦୈନିକ 'ସମାଜ' ଓ ଅନ୍ୟ କେତେକ ସଂବାଦ ପତ୍ରରେ ମହାରାଜାଙ୍କର ଏକ ସଂକ୍ଷିପ୍ତ ଜୀବନୀ 'ନବ ଉତ୍କଳ ନିର୍ମାତା ପାରଳାଖେମୁଣ୍ଡି ମହାରାଜା' ଶୀର୍ଷକ ପ୍ରବନ୍ଧ ରୂପେ ପ୍ରକାଶ ପାଇଥାଏ । ପ୍ରଧାନମନ୍ତ୍ରୀ ଭାବରେ ଇସ୍ତଫା ଦେଇ ଜଣେ ସାଧାରଣ ନାଗରିକ ଭାବରେ ଜୀବନଯାପନ କରୁଥିବା ମହାରାଜଙ୍କର କୌଣସି ଜୀବନୀ ପ୍ରକାଶ ଓ ତାଙ୍କ ଜନ୍ମଦିବସ ପାଳନ ସ୍ୱାଧୀନତା ପ୍ରାପ୍ତି ପରଠାରୁ କାହା ମନକୁ ଆସୁ ନ ଥାଏ । ପ୍ରବନ୍ଧଟି ପାଠକରି ଅନେକ ବିଦେଶୀ ପାରଳା ନିବାସୀ ସେମାନଙ୍କର ଆନନ୍ଦ ପ୍ରକାଶ କଲେ । କଟକ ସହରରେ ଅବସ୍ଥାନ କରୁଥିବା ପ୍ରଖ୍ୟାତ ସାମ୍ବାଦିକ, ସାହିତ୍ୟିକ ଓ ଓଡ଼ିଆ ସାହିତ୍ୟର ଇତିହାସ ଲେଖକ ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, ଏମ୍.ଏ. ପ୍ରବନ୍ଧ ଲେଖକଙ୍କୁ ଜଣାଇଲେ ଯେ ସେ ପାରଳା ଜମିଦାରୀ ଅନ୍ତର୍ଗତ ସହର ନିକଟବର୍ତ୍ତୀ ଦଶରଥପୁର ଶାସନର ବାସିନ୍ଦା । ଅପର ପ୍ରାଇମେରୀ ଠାରୁ ଆରମ୍ଭ କରି ପାରଳାରେ ଆଇ.ଏସ୍.ସି. ଓ ବିଜୟନଗରରେ ବି.ଏ. ପଢ଼ିବା ପର୍ଯ୍ୟନ୍ତ ସେ ରାଜାଙ୍କଠାରୁ ଫ୍ରି ସ୍କଲରସିପ୍ ପାଇଛନ୍ତି । ସେ ଓ ତାଙ୍କର ଭାଇମାନେ ସମସ୍ତେ ରାଜାଙ୍କ ପ୍ରଦତ୍ତ ବୃତ୍ତି ବଳରେ ଉଚ୍ଚଶିକ୍ଷା ଲାଭ କରି ଜୀବିକା ଅର୍ଜନ କରୁଅଛନ୍ତି । ମହାରାଜାଙ୍କର ଦେଶପ୍ରତି ଅବଦାନ ସ୍ମରଣରେ ସେ ଗର୍ବିତ । ସେ ପର୍ଯ୍ୟନ୍ତ ଆମ୍ଭେମାନେ ତାଙ୍କୁ ପାରଳାଖେମୁଣ୍ଡିର ଅଧିବାସୀ ଭାବେ ଜାଣି ନଥିଲୁ । କଟକ ସହରରେ ୧୯୩୦ ମସିହା ଠାରୁ ସେ ସାମ୍ବାଦିକ ଓ ସାହିତ୍ୟିକ ଭାବେ ସୁପରିଚିତ ଥିଲେ । ପ୍ରଥମ କଂଗ୍ରେସ ମନ୍ତ୍ରୀମଣ୍ଡଳ ସମୟରେ ନାରୀ ନେତ୍ରୀ ସରଳାଦେବୀଙ୍କ ସହିତ ମିଶି ହିନ୍ଦୁସ୍ଥାନ ଗ୍ରନ୍ଥମାଳାର ସେ ପ୍ରତିଷ୍ଠାତା ଥାଇ ଅନେକ ଉପାଦେୟ ପୁସ୍ତକ ପ୍ରକାଶ କରିଥାଆନ୍ତି । ବୋଧହୁଏ ସେହିଦିନୁ ପାରଳା ସହିତ ତାଙ୍କର ସମ୍ପର୍କ କ୍ଷୀଣତର ହୋଇଯାଇଥାଏ । ପରବର୍ତ୍ତୀ ୭୮ ତମ ଜନ୍ମଦିବସ ତା ୧୭-୪-୬୯ ରେ ପାଳିତ ହେବାକୁ ନିଷ୍ପତ୍ତି ନିଆଯାଇ ତାଙ୍କୁ

ଜଣାଇଦେବାରୁ ସେ ପ୍ରକାଶିତ ହେବାକୁ ଯାଉଥିବା ଅଭିନନ୍ଦନ ଗ୍ରନ୍ଥ ନିମିତ୍ତ 'ଦେଶପ୍ରାଣ କୃଷ୍ଣଚନ୍ଦ୍ର ଗଜପତି' ପ୍ରବନ୍ଧ ପ୍ରଥମେ ଉକ୍ତ ଉତ୍ସବ କମିଟିର ସମ୍ପାଦକ ପଣ୍ଡିତ ଯୁଗଳକିଶୋର ପାଣିଗ୍ରାହୀଙ୍କୁ ପଠାଇ ଦେଇଥିଲେ । ତାହା ସହିତ ୧୯୩୩ ମସିହା ମେ ଓ ସେପ୍ଟେମ୍ବର ମାସରେ ଉତ୍କଳଗୌରବ ମିଷ୍ଟର ଦାସଙ୍କୁ ମହାରାଜା ଲେଖିଥିବା ଦୁଇଟି ଦୁର୍ଲଭ ପତ୍ର ମଧ୍ୟ ସେ ପ୍ରକାଶନ ନିମିତ୍ତ ପଠାଇ ଦେଇଥିଲେ । ପ୍ରକାଶନରେ ବିଳମ୍ବ ହେବା ଯୋଗୁ ଜଣେ ସାମ୍ବାଦିକ ଭାବରେ ସେ କ'ଣ ସାହାର୍ଯ୍ୟ କରି ପାରନ୍ତି ତାହା ପତ୍ରଯୋଗେ ବୁଝୁଥିଲେ । ପାରଳାଖେମୁଣ୍ଡିରେ ତାଙ୍କ ସହଧ୍ୟାୟୀ ଓ ସହକର୍ମୀମାନେ କ୍ରମେ ନିଃଶେଷ ହୋଇ ଯାଉଥିବାରୁ ତାଙ୍କ ପୂର୍ଣ୍ଣାଙ୍ଗ ଜୀବନୀ ସଂଗ୍ରହ ନ ହୋଇଥିବା ପରିତାପର ବିଷୟ ।

ପଣ୍ଡିତ ସୂର୍ଯ୍ୟନାରାୟଣ ୧୯୦୮ ମସିହା ଜୁଲାଇ ପହିଲା ତାରିଖରେ ଦଶରଥପୁର ଶାସନରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ବାଲୁଙ୍କେଶ୍ୱର ଦାସ । ମାତା କ୍ଷୀତି ଦେବୀ । ଭାଷା ବିଜ୍ଞାନୀ ପଣ୍ଡିତ ଗୋପୀନାଥ ନନ୍ଦ ତାଙ୍କ ପିଉସା । ସୂର୍ଯ୍ୟନାରାୟଣ ପ୍ରଥମେ ଗ୍ରାମ ଚାଟଶାଳୀ ଓ ପରେ ରାଜଗୁରୁ ସାହିରେ ପିଉସାଙ୍କ ତତ୍ତ୍ୱାବଧାନରେ ଅପର ପ୍ରାଇମେରୀ ପାଠପଢ଼ା ସାରିଲେ । ହାଇସ୍କୁଲରୁ ଏସ.ଏସ.ଏଲ.ସି (ସେକେଣ୍ଡାରି ସ୍କୁଲ ଲିଭିଂ ସାର୍ଟିଫିକେଟ-ମାଟ୍ରିକୁଲେଶନର ଅନ୍ୟନାମ) ୧ମ ଶ୍ରେଣୀରେ ପ୍ରଥମ ହୋଇ ପାସ୍ କରି ପରେ ପାରଳା କଲେଜରେ ଆଇ.ସି.ଏସ୍. ପଢ଼ିଲେ । ସେତେବେଳେ ପାରଳା କଲେଜରେ ବି.ଏ. ନ ଥିଲା । ତେଣୁ ରାଜବୃତ୍ତି ପାଇ ସେ ବିଜୟନଗର କଲେଜରେ ୧୯୨୫ ଓ ୧୯୨୬ ଦୁଇବର୍ଷ ବି.ଏ. ପଢ଼ିଲେ । ବିଜୟନଗର କଲେଜ ସ୍ଥାନୀୟ ମହାରାଜାଙ୍କର ପରିଚାଳିତ ଓ ପ୍ରତିଷ୍ଠିତ । ସେଠାରେ ଗଞ୍ଜାମ ଓ କୋରାପୁଟ (ଜୟପୁର) ର ଅନେକ ଛାତ୍ର ପଢୁଥାନ୍ତି । ସେମାନଙ୍କ ମଧ୍ୟରୁ ଅନେକ ରାଜବୃତ୍ତି ଜମିଦାର ମାନଙ୍କ ଠାରୁ ପାଉଥାଆନ୍ତି । ସୂର୍ଯ୍ୟନାରାୟଣ ସେମାନଙ୍କୁ ସଙ୍ଗଠିତ କଲେ । ବିଜୟ ନଗର ଓଡ଼ିଆ ଛାତ୍ର ସଙ୍ଘର ସେ ସମ୍ପାଦକ ଥିଲେ । ସେତେବେଳକୁ ସେ ସମ୍ବାଦପତ୍ର ମାନଙ୍କରେ ଲେଖାଲେଖି ଆରମ୍ଭ କରି ଥାଆନ୍ତି । ବାଲ୍ୟବିବାହ ବିରୋଧ, ଯୁବତୀ ବିବାହ ପ୍ରବର୍ତ୍ତନ ଓ ଅନ୍ୟାନ୍ୟ ସାମାଜିକ କଳଙ୍କ ଓ କୁସଂସ୍କାର ବିଲୋପ ନିମିତ୍ତ ଜନମତ ସୃଷ୍ଟି ଉଦ୍ଦେଶ୍ୟରେ ପ୍ରବନ୍ଧମାନ ଲେଖା ଯାଉଥାଏ । ବି.ଏ. ପାସ କରି ସେ କଟକକୁ ଚାଲି ଆସିଲେ । ସେଠାରେ ନିଜର କର୍ମ କ୍ଷେତ୍ର ବାଛିନେଲେ । ସେତେବେଳେ ଓଡ଼ିଶା ପ୍ରଦେଶ ପୃଥକ ହୋଇ ନ ଥାଏ, ତଥାପି କଟକ ଓଡ଼ିଶାର ରାଜଧାନୀ । ଜ୍ଞାନ ବିଜ୍ଞାନ ଚର୍ଚ୍ଚାର କେନ୍ଦ୍ର । ଓଡ଼ିଶାର ବିଶିଷ୍ଟ କବି ଲେଖକ ସାହିତ୍ୟସେବୀ ଓ ବୁଦ୍ଧିଜୀବୀ ମାନଙ୍କର ମିଳନ କ୍ଷେତ୍ର । ଭାରତ ସେବକ ସଂଘ (ବର୍ତ୍ତମାନ ହିନ୍ଦ ସେବକ ସଂଘ) ର ସଭ୍ୟ ଲକ୍ଷ୍ମୀ ନାରାୟଣ ସାହୁ ଓ ଅନ୍ୟ ମାନଙ୍କର ସଂସ୍ପର୍ଶରେ ଆସି ସେ ପ୍ରାକୃତିକ ବିପତ୍ତିରେ ସାହାର୍ଯ୍ୟ ନିମିତ୍ତ ଗଠିତ

ଓଡ଼ିଶା ବନ୍ୟା ଓ ଦୁର୍ଭିକ୍ଷ ସାହାର୍ଯ୍ୟ କମିଟିର ସଂପାଦକ ହୋଇ ୧୯୩୦ ମସିହାରୁ ୧୯୩୩ ପର୍ଯ୍ୟନ୍ତ କାର୍ଯ୍ୟକଲେ । ସାମ୍ବାଦିକ ଭାବେ ସମାଜ, ଦୈନିକ ଆଶା, ନିଉ ଓଡ଼ିଶା ଓ ଅନ୍ୟାନ୍ୟ ସମ୍ବାଦ ପତ୍ରରେ କାର୍ଯ୍ୟ କରି ସୁନାମ ଅର୍ଜନ କଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପରେ ସେ ସେଠାରୁ ଓଡ଼ିଆ ଭାଷା ଓ ସାହିତ୍ୟରେ ଏମ.ଏ. ପାସ କଲେ ।

ସାମ୍ବାଦିକମାନଙ୍କୁ ସଂଗଠିତ କରି ସେ ଉତ୍କଳ ସାମ୍ବାଦିକ ସଂଘ ପ୍ରତିଷ୍ଠା କରିଥିଲେ ଓ ୧୯୪୭-୪୮ ରେ ଏହାର ପ୍ରଥମ ସଭାପତି ହୋଇଥିଲେ । ସମ୍ବାଦପତ୍ର ଓ ସମ୍ବାଦ ଏଜେନ୍‌ସି ଲେଖା ସହିତ ସାଧାରଣ ସାହିତ୍ୟିକ ପ୍ରବନ୍ଧ ଲେଖାରେ ସେ ବିଶେଷ ଦକ୍ଷତା ଅର୍ଜନ କଲେ ।

ସ୍ୱାଧୀନତା ପ୍ରାପ୍ତି ପରେ ଓଡ଼ିଶା ସରକାର ସ୍ୱାଧୀନତା ସଂଗ୍ରାମର ଇତିହାସ ପ୍ରଣୟନ ନିମିତ୍ତ ଡକ୍ଟର ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ଗଠନ କରିଥିବା କମିଟିର ସେ ସଭ୍ୟ ଥିଲେ । ୧୯୫୪ ମସିହାରେ ଓଡ଼ିଶା ସରକାରୀ ଭାଷା ଆଇନ ପାସ ହେବାପରେ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଅଧ୍ୟକ୍ଷତାରେ ଗଠିତ ଓଡ଼ିଆ ପରିଭାଷା କମିଟିର ସେ ସଦସ୍ୟ ଥିଲେ । ସେହି ମାନଙ୍କ ପରିଶ୍ରମ ଫଳରେ ୧୯୫୫ ମସିହାରେ ପ୍ରଥମ ଓଡ଼ିଶା ପ୍ରଶାସନିକ ଶବ୍ଦକୋଷ ପ୍ରକାଶ ପାଇଥିଲା ଓ ରାଜଭାଷାରୂପେ କୋର୍ଟ କଚେରୀ ଓ ସରକାରୀ ଦପ୍ତରରେ ଓଡ଼ିଆ ଭାଷା ବ୍ୟବହାରର ମାର୍ଗ ସୁଗମ କରାଯାଇ ପାରିଥିଲା । ପଣ୍ଡିତ ସୂର୍ଯ୍ୟ ନାରାୟଣ ଓଡ଼ିଶାର ସଂସ୍କୃତି ଓ ଇତିହାସ ଉପରେ ଅନେକ ଉପାଦେୟ ପ୍ରବନ୍ଧ ଲେଖିଅଛନ୍ତି । ଏହା ବ୍ୟତିତ ଓଡ଼ିଆରେ ସେ ପ୍ରାୟ ଏକ ଶହ ଦଶଖଣ୍ଡ ପୁସ୍ତକ ରଚନା କରିଅଛନ୍ତି । ମୃତ୍ୟୁ ସମୟ ବେଳକୁ ତାଙ୍କର ୨୫ ଖଣ୍ଡରୁ ଉର୍ଦ୍ଧ୍ୱ ଗ୍ରନ୍ଥ ଅପ୍ରକାଶିତ ଥିଲା । ତାଙ୍କ ପୁସ୍ତକ ମାନଙ୍କ ମଧ୍ୟରେ ୪ ଖଣ୍ଡରେ ସମଗ୍ର ଓଡ଼ିଆ ସାହିତ୍ୟର ଇତିହାସ, କଥା ଓ କାହାଣୀ ମାଳା (୭ ଖଣ୍ଡ), ଶ୍ରୀ ଜଗନ୍ନାଥ ମନ୍ଦିର କଥା, ଊନବିଂଶ ଶତାବ୍ଦୀର ଓଡ଼ିଶା, ଓଡ଼ିଶାରେ ବନ୍ୟା ଓ ଦୁର୍ବିପାକ, ଓଡ଼ିଶାରେ ଶିଳ୍ପ ଓ ବାଣିଜ୍ୟ, ଓଡ଼ିଶାରେ ସିପାହୀ ବିଦ୍ରୋହୀର ଝଲକ, ଉତ୍କଳମଣି ଗୋପବନ୍ଧୁ, ଉତ୍କଳଗୌରବ ମଧୁସୂଦନଙ୍କ ଜୀବନୀ, ଦେଶପ୍ରାଣ ମଧୁସୂଦନ ଅତ୍ୟନ୍ତ ଲୋକପ୍ରିୟ । ସାହିତ୍ୟ କ୍ଷେତ୍ରରେ ତାଙ୍କୁ ବହୁ ସମ୍ମାନ ମିଳିଥିଲା ।

କେନ୍ଦ୍ର ଓ ରାଜ୍ୟ ସାହିତ୍ୟ ଏକାଡ଼େମୀ ତାଙ୍କୁ ସମ୍ମାନିତ କରିଥିଲେ । ଏହା ବ୍ୟତୀତ ପ୍ରଜାତନ୍ତ୍ର ପ୍ରଚାର ସମିତି, ଗୌରୀଶଙ୍କର ସ୍ମୃତି ସଂସଦ, ଉତ୍କଳ ପାଠକ ସଂଘ, ପାରଳା ସାରସ୍ୱତ ଉତ୍ସବ, କଳିଙ୍ଗ ସାଂସ୍କୃତିକ ପରିଷଦ ଆଦି ଓଡ଼ିଶାର ଅନେକ ପ୍ରତିଷ୍ଠିତ ଅନୁଷ୍ଠାନ

ତାଙ୍କୁ ବିଭିନ୍ନ ସମୟରେ ସମ୍ବର୍ଦ୍ଧନା ଜଣାଇଥିଲେ । ପ୍ରାୟ ୭୪ ବର୍ଷ ବୟସରେ ୧୯୮୨ ମସିହା ଜୁଲାଇ ୧୧ ତାରିଖରେ କଟକ ପୁରୁଣା କଲେଜ ଲେନ୍‌ରେ ଲଣ୍ଡା ଦେଉଳଠାରେ ପ୍ରାଣତ୍ୟାଗ କଲେ । ଜୀବନର ଅଧିକାଂଶ ସମୟ କଟକ ସହରରେ ନିଷ୍ପାପର ଭାବରେ ଓଡ଼ିଶାର ସାହିତ୍ୟ ଓ ସଂସ୍କୃତି ଚର୍ଚ୍ଚାରେ ସେ କଟାଇ ଥିଲେ । ପଣ୍ଡିତ ସୂର୍ଯ୍ୟନାରାୟଣ ଅବିବାହିତ ଥିଲେ । ମୃତ୍ୟୁ ବେଳକୁ ଓଡ଼ିଶା ସରକାରଙ୍କର ସାହିତ୍ୟିକ ଭତ୍ତା ନିମିତ୍ତ ସେ ମନୋନୀତ ହୋଇଥିଲେ ମଧ୍ୟ ଭତ୍ତା ପାଇ ପାରିନଥିଲେ ।



# ପାରଳା ମହାରାଜ

## କିଛି ଜଣା କିଛି ଅଜଣା କଥା

ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ବୟଃ ପ୍ରାପ୍ତ ହେବା ପରେ କୋର୍ଟ ଅଫ୍ ୱାର୍ଡ଼ସର ଏଜେଣ୍ଟ ଏନ.ମାକ ମାଇକେଲ ସାହେବଙ୍କ ଠାରୁ ତା ୨୬.୪.୧୯୧୩ ରେ ଦାୟିତ୍ୱ ଗ୍ରହଣ କଲେ। ୧୯୧୮ ମସିହାରେ ତାଙ୍କର ବ୍ୟକ୍ତିଗତ ଉପାଧି ରାଜା ଥିବାବେଳେ ଏହାକୁ ୧୯୯୨ ମସିହାରେ ବଂଶାନୁକ୍ରମିକ କରାଗଲା । ୧୯୩୨ ମସିହାରେ ଉତ୍କଳ ପ୍ରଦେଶ ଗଠନର ପ୍ରାକକାଳରେ ସେ ମହାରାଜା ଉପାଧି ସହିତ ବ୍ରିଟିଶ୍ ସରକାରଙ୍କର କେ.ସି.ଆଇ.ଇ. ଉପାଧି ମଧ୍ୟ ଲାଭ କରିଥିଲେ । ପରବର୍ତ୍ତୀ ସ୍ୱାଧୀନୋତ୍ତର ଯୁଗରେ ଉତ୍କଳ ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ତାଙ୍କୁ ସମ୍ମାନ ସୂଚକ ଡକ୍ଟରେଟ ଉପାଧି ପ୍ରଦାନ କରିଥିଲେ । ଡିସେମ୍ବର ୨୭ ଓ ୨୮ ତାରିଖ ୧୯୧୪ ମସିହାରେ ପ୍ରଥମେ ପାରଳା ଉତ୍କଳ ସମ୍ମିଳନୀରେ ନିଜର କର୍ମ କୁଶଳତା ଦେଖାଇ ସେ ସମଗ୍ର ଓଡ଼ିଶାରେ ନିଜକୁ ପରିଚିତ କରାଇ ପାରିଥିଲେ ।

### ତିନିଥର ବିଲାତଯାତ୍ରା

ଓଡ଼ିଆ ପ୍ରଦେଶ ଗଠନ ସମ୍ପର୍କରେ ସେ ତିନିଥର ଶ୍ୱେତଦ୍ୱୀପର ଯାତ୍ରୀ ହୋଇଥିଲେ। ପ୍ରଥମ ଗୋଲଟେବୁଲ ବୈଠକ ଲଣ୍ଡନରେ ୧୯୩୦ ମସିହା ନଭେମ୍ବର ମାସରେ ଆରମ୍ଭ ହୋଇଥିଲା । ମାନ୍ଦ୍ରାଜ ବ୍ୟବସ୍ଥାପକ ସଭାର ସଭ୍ୟ ଥିଲେ ମଧ୍ୟ ସେ ବିହାର ଓଡ଼ିଶା ଆସେମ୍ଲି ଦ୍ୱାରା ଓଡ଼ିଶାର ପ୍ରତିନିଧି ଭାବେ ସ୍ୱୀକୃତ ହୋଇଥିଲେ । ପୁରୀ ଜିଲ୍ଲା ଡେଲାଙ୍ଗ ଜମିଦାରିର ସେ ସ୍ୱତ୍ତାଧିକାରୀ ଥିଲେ । ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ସମଗ୍ର ଓଡ଼ିଆଭାଷୀ ଅଞ୍ଚଳର ଏକୀକରଣ ନିମିତ୍ତ ଏହି ବୈଠକରେ ସ୍ୱର ଉତ୍ତୋଳନ କରିଥିଲେ । ପ୍ରଥମ ଗୋଲଟେବୁଲ୍ ବୈଠକରେ ତତ୍କାଳିନ ଅଧିକାଂଶ ମାନ୍ଦାଦଳୀୟ ସର୍ବଭାରତୀୟ ସ୍ତରର ନେତା ଯୋଗ



ପାରଳା ମହାରାଜା

କୃଷିକମିସନ ସଭ୍ୟ ୧୯୨୭-୨୮

ଦେଇଥାନ୍ତି । ଏମାନଙ୍କ ମଧ୍ୟରେ ଥିଲେ ମହମ୍ମଦ ଅଲ୍ଲି ଜିନ୍ନା, ଭୀମରାଓ ଆମ୍ବେଦକର, ତେଜ ବାହାଦୂର ସାହୁ, ଏମ ଆର ଜୟକାର, ରାମସ୍ୱାମୀ ମୁଦାଲିୟର, ସାର ସି.ପି., ରାମସ୍ୱାମୀ ଆୟାର, ଶ୍ରୀନିବାସ ଶାସ୍ତ୍ରୀ, ଚିମନଲାଲ ଶୀତଳବାଦ ପ୍ରଭୃତି । ଓଡ଼ିଶାରୁ ଥିଲେ ପାରଳା ମହାରାଜ ଓ ସାର୍ ପରଶୁରାମ ପାତ୍ର । ଆସ୍କାର ଓକିଲ ପାତ୍ର ଆଗରୁ ଅବିଭକ୍ତ ମାନ୍ଦ୍ରାଜ ପ୍ରଦେଶରେ ମନ୍ତ୍ରୀ ଥିଲେ । ବୈଠକରେ ପାରଳା ରାଜା ଓଡ଼ିଆମାନଙ୍କର ସମସ୍ୟା ଓ ସେମାନଙ୍କର ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନର ଯୌକ୍ତିକତା ଶୀର୍ଷକ ଏକ ପୁସ୍ତିକା ସବୁ ସଭ୍ୟମାନଙ୍କୁ ବିତରଣ କରିଥିଲେ । ଏହା ପରେ ୧୯୩୧ ମସିହା ମେ ମାସରେ ଉତ୍କଳ ପ୍ରଦେଶ କମିଟି ସେହି କଥା ଦୋହରାଇଥିଲା । ୧୯୩୧ ମସିହାରେ ଓଡ଼ନେଲ କମିଟି ସୀମା ନିର୍ଣ୍ଣାୟକ ବସି ନିଜ ନିଷ୍ପତ୍ତି ଦେବା ପରେ ୧୯୩୩ ମସିହା ମାର୍ଚ୍ଚ ମାସରେ ବ୍ରିଟିଶ୍ ସରକାର ସେମାନଙ୍କର ନିଷ୍ପତ୍ତି ଏକ ଶ୍ୱେତପତ୍ର ଜରିଆରେ ଜଣାଇଲେ । ଏହା ଜୟପୁର ଜମିଦାରୀ ଓ ପାରଳାଖେମୁଣ୍ଡିକୁ ପ୍ରସ୍ତାବିତ ଓଡ଼ିଶା ପ୍ରଦେଶରୁ ବାଦ ଦେଇଥିଲା । ଏହାର ପ୍ରତିବାଦରେ ଓଡ଼ିଆ ପ୍ରତିନିଧି ଦଳ ପାରଳା ରାଜାଙ୍କ ଅଧ୍ୟକ୍ଷତାରେ ବିଲାତ ଯାଇ ଭାରତ ସଚିବ ସାର ସାମୁଏଲ ହୋରଙ୍କୁ ସାକ୍ଷାତ କରିଥିଲେ । ପ୍ରତିନିଧିଦଳରେ ଭୁବନାନନ୍ଦ ଦାସ, ଲିଙ୍ଗରାଜ ପାଣିଗ୍ରାହୀ, ଶ୍ୟାମସୁନ୍ଦର ଗନ୍ତାୟତ ଅନ୍ତର୍ଭୁକ୍ତ ଥିଲେ । ତେଲୁଗୁ ପ୍ରତିନିଧିମାନେ ମଧ୍ୟ ଭାରତ ସଚିବଙ୍କୁ ସାକ୍ଷାତ କଲେ । ବ୍ରିଟିଶ୍ ସରକାର ଜୟପୁରକୁ ପ୍ରସ୍ତାବିତ ଓଡ଼ିଶାରେ ମିଶାଇବାକୁ ରାଜି ହେଲେ ମାତ୍ର ପାରାଳାଖେମୁଣ୍ଡି ମିଶାଇବା ସପକ୍ଷରେ ନଥିଲେ । ଜୟପୁରର ଦେଓ୍ୱାନ ପୁଲାରେଡ଼ି, ଆଇ.ସି.ଏସ୍. ବଦଳି ହୋଇଯିବାପରେ ଓ ନୂତନ ମହାରାଜା ବିକ୍ରମଦେବ ରାଜଗାଦି ପାଇବା ପରେ ସେଠାରେ ପରିସ୍ଥିତି ସଂପୂର୍ଣ୍ଣ ପୃଥକ ହୋଇ ଯାଇଥିଲା । ପ୍ରସ୍ତାବିତ ଖଣ୍ଡିତ ଓଡ଼ିଶା ପ୍ରଦେଶ ଗଠନର ବିରୋଧରେ ଉତ୍କଳ ସମ୍ମିଳନୀ ନିଷ୍ପତ୍ତି ନେଲା । ଫେବୃଆରୀ ୧୯୩୪ ମସିହାରେ ସେମାନେ ପୂର୍ଣ୍ଣାଙ୍ଗ ଓଡ଼ିଶା ପ୍ରଦେଶରେ ପାରଳାଖେମୁଣ୍ଡି ରାଜ୍ୟ ମିଶିବା ଦାବି କଲେ । ପାରଳାରାଜା ୧୯୩୪ରେ ୩ୟ ବାର ବିଲାତ ଯାଇ ଭାରତ ସଚିବଙ୍କୁ ସାକ୍ଷାତ କଲେ । ପ୍ରଦେଶ ଗଠନ ନିମିତ୍ତ ନିଜ ସ୍ୱାର୍ଥ ତ୍ୟାଗ କରି ପାରଳାଖେମୁଣ୍ଡି ସହର ସହିତ ନିଜ ରାଜ୍ୟର ୩୦ ଭାଗ ଅଞ୍ଚଳ ଓଡ଼ିଶାରେ ମିଶୁ ବୋଲି ପ୍ରସ୍ତାବ ଦେଲେ । ତଥାପି ମାନ୍ଦ୍ରାଜ୍ ସରକାରଙ୍କ ତେଲୁଗୁ ପ୍ରୀତି ଓ ଭାଇସରାୟଙ୍କର ବିରୋଧୀ ଯୋଗୁ ଏହା ଗ୍ରହଣ କରାଯାଇନଥିଲା । ଏହି ସମୟରେ ପାର୍ଲାମେଣ୍ଟ ବସାଇଥିବା ଯୁଗ୍ମ ସିଲେକ୍ଟ କମିଟି ଭାରତ ଶାସନ ଆଇନ ଉପରେ ଗଠିତ ହୋଇଥିଲା । ଏହାର ଅଧ୍ୟକ୍ଷ ଥିଲେ ଲର୍ଡ଼ ଲିନଲିଥ୍‌ଗୋ । ପରେ ସେ ଭାରତରେ ବଡ଼ଲାଟ ହେଲେ । କୃଷି କମିଶନ ଅଧକ୍ଷ ଭାବରେ ସେ ମହାରାଜଙ୍କର ସହକର୍ମୀ ଥିଲେ । ସେମାନେ ଜୟପୁର ଉଷ୍ଟେଟ୍ ସହିତ ପାରଳାଖେମୁଣ୍ଡି, ଜଳନ୍ତର ମାଳ ଅଞ୍ଚଳ ଓ ପାରଳା ସହର ସହିତ ପ୍ରସ୍ତାବିତ ଅଂଶ ଓଡ଼ିଶାରେ ମିଶିବା ପ୍ରସ୍ତାବକୁ ସମର୍ଥନ

କଲେ । ଏହା ଫଳରେ ଶ୍ୱେତ ପତ୍ର ଅନୁସାରେ ୨୧୫୧୫ ବର୍ଗ ମାଇଲ ପ୍ରଦେଶର ସୀମା ୩୨.୬୯୫ ବର୍ଗ ମାଇଲ୍‌କୁ ବୃଦ୍ଧି ପାଇଲା ।

୧୯୩୦ ମସିହା ଗୋଲ୍‌ଟେବୁଲ ବୈଠକରେ ବ୍ରିଟିଶ୍ ଡେଲିଗେସନର ଜଣେ ସେକ୍ରେଟେରୀ ଥିଲେ ଉଇଲିୟମ ହଥର୍ଣ୍ଣ ଲୁଇସ । ସେ ଏହା ପୂର୍ବରୁ ସମ୍ବଲପୁରର ଡେ଼ପୁଟି କମିସନର (ଜିଲ୍ଲାପାଳ) ଥାଇ ଓଡ଼ିଶାର ସ୍ୱତନ୍ତ୍ରତା ବିଷୟରେ ଅବଗତ ଥିଲେ । ପରବର୍ତ୍ତୀ କାଳରେ ସେ ଓଡ଼ିଶାର ୨ୟ ଗଭର୍ଣ୍ଣର ହେଲେ ଓ ସେହି ସମୟରେ ପାରଳା ମହାରାଜା ପ୍ରଧାନମନ୍ତ୍ରୀ ହେବାରୁ ଉଭୟଙ୍କ ମଧ୍ୟରେ ସଦ୍‌ଭାବ ଓ ସହଯୋଗ ପ୍ରଦେଶ ପକ୍ଷରେ ହିତକର ହୋଇଥିଲା ।

**ପ୍ରଦେଶର ଉଚ୍ଚତର ଶିକ୍ଷାର ଶୁଭାରମ୍ଭ**

ପ୍ରଦେଶ ଗଠନ ଉପରେ ଲାଟସାହେବଙ୍କ ପରାମର୍ଶଦାତା କମିଟିର ସଭ୍ୟ ଥିବା ଲାଟ ସଭା ସଭ୍ୟ କୃଷ୍ଣଚନ୍ଦ୍ର ଗଜପତି ଦୁଇବାର ଓଡ଼ିଶାର ପ୍ରଧାନମନ୍ତ୍ରୀ (ମୁଖ୍ୟମନ୍ତ୍ରୀ ପରେ କୁହାଗଲା) ହୋଇଥିଲେ । ପ୍ରଥମ ଥରକୁ ତାଙ୍କର ସହଯୋଗୀ ମନ୍ତ୍ରୀ ଥିଲେ ପାରଳାର ଓକିଲ ମାନ୍ଧାତା ଗୋରାଚନ୍ଦ ପଟନାୟକ ଓ ପୁରୀର ଲତିଫୁର ରହମନ । ଏହା ସ୍ୱଳ୍ପସ୍ଥାୟୀ ଥିଲା ।

କଂଗ୍ରେସ ଶାସନଭାର ନେବାକୁ ରାଜି ହେବାରୁ ସେ ଇସ୍ତଫା ଦେଇଥିଲେ । ନଭେମ୍ବର ୧୯୪୧ ରୁ ଜୁନ ୧୯୪୪ ଦ୍ୱିତୀୟ ମନ୍ତ୍ରୀମଣ୍ଡଳରେ କଂଗ୍ରେସରୁ ବାହାରି ଆସିଥିବା ପଣ୍ଡିତ ଗୋଦାବରୀଶ, ଅବଦୁଲ୍ ଶୋଭାନ ଖାଁ (ଭଦ୍ରକର ଓକିଲ) ମନ୍ତ୍ରୀ । ଶ୍ରମିକ ନିର୍ବାଚନ ମଣ୍ଡଳୀର ପ୍ରତିନିଧି ପ୍ୟାରୀଶଙ୍କର ରାୟ ପାର୍ଲାମେଣ୍ଟରୀ ସେକ୍ରେଟରୀ ଥିଲେ ।

ପ୍ରଥମ ମନ୍ତ୍ରୀମଣ୍ଡଳର ସଭ୍ୟମାନଙ୍କର ବେତନ ସେତେବେଳେ ଏକହଜାର ଟଙ୍କା ଥିଲା ମାତ୍ର କଂଗ୍ରେସର ମନ୍ତ୍ରୀମାନେ ପାଞ୍ଚଶହ ଟଙ୍କା ବେତନ ଦେଉଥିବାରୁ ପରବର୍ତ୍ତୀ ମନ୍ତ୍ରୀମଣ୍ଡଳ ସେହି ବେତନ ଗ୍ରହଣ କଲେ । ୧୯୩୭ ମସିହା ଅପ୍ରେଲ ମାସରେ ଓଡ଼ିଶାରେ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ନିମିତ୍ତ କମିଟି ଶିକ୍ଷା ବିଭାଗ ସଚିବ ଏଫ୍.ଆର୍.ଉଡ୍. ଡ଼ିପିଆଇ ହରବର୍ଟ ଡିପି, ରେଭେନ୍‌ସା କଲେଜର ଅଧ୍ୟକ୍ଷ ଶ୍ୟାମାଚରଣ ତ୍ରିପାଠୀ, ଆଇଇଏସ୍, ଅଧ୍ୟାପକ ପ୍ରାଣକୃଷ୍ଣ ପରିଜା, ଆଇ ଇଏସ, ଟ୍ରେନିଂ କଲେଜ ଅଧ୍ୟକ୍ଷ ମହେଶଚନ୍ଦ୍ର ପ୍ରଧାନ, ଖଲିକୋଟ କଲେଜର ଅଧ୍ୟକ୍ଷ ପ୍ରେମାନନ୍ଦ ମହାନ୍ତି ଓ ପାରଳାଖେମୁଣ୍ଡି କଲେଜ ଅଧ୍ୟକ୍ଷ ପାନ୍ନାଦି ଜଗନ୍ନାଥ ସ୍ୱାମୀଙ୍କୁ ନେଇ ଗଠିତ ହୋଇଥିଲା । ପରବର୍ତ୍ତୀ କାଳରେ

ପଣ୍ଡିତ ନୀଳକଣ୍ଠ ଦାସ କେନ୍ଦ୍ର ବ୍ୟବସ୍ଥାପକ ସଭାର ସଭ୍ୟ ଏହାର ଅଧ୍ୟକ୍ଷ ହେଲେ । ମାତ୍ର ୧୯୪୨-୪୩ ମସିହାର ବଜେଟରେ ଅର୍ଥମନ୍ତ୍ରୀ ପଣ୍ଡିତ ଗୋଦାବରୀଶ ନୂତନ ବିଶ୍ୱବିଦ୍ୟାଳୟ ଗଠନ ବିଚାର ନିମିତ୍ତ ସଭ୍ୟମାନଙ୍କୁ ଅନୁରୋଧ କଲେ । ୧୯୪୩-୪୪ ମସିହା ବଜେଟରେ ବିଶ୍ୱବିଦ୍ୟାଳୟ ପାଇଁ ଅର୍ଥ ବ୍ୟବସ୍ଥା କରାଗଲା। ବ୍ୟବସ୍ଥାପକ ସଭାରେ ବିଶ୍ୱବିଦ୍ୟାଳୟ ବିଲ ଉପସ୍ଥାପିତ କରାଯାଇ ମଞ୍ଜୁରୀ ପାଇଲା ଓ ୨୭ ନଭେମ୍ବର ୧୯୪୩ ମସିହାରେ ରେଭେନ୍ସା କଲେଜର ପୁରାତନ ଓ୍ୱାଡ଼େନଙ୍କ ବାସଭବନରେ ଏହାର କାର୍ଯ୍ୟ ଆରମ୍ଭ କରାଗଲା । ତିନିଗୋଟି କଲେଜ ଓ ଗଡ଼ଜାତ ସମେତ ଓଡ଼ିଶାର ୫୦ ଟି ସ୍କୁଲକୁ ଧରି ଏହା ଆରମ୍ଭ ହେଲା । ଏଥିପାଇଁ ବଜେଟରେ ୨୦ ହଜାର ଟଙ୍କାର ଗ୍ରାଣ୍ଟ ଦିଆଗଲା । ୫ ବର୍ଷ ପର୍ଯ୍ୟନ୍ତ ପ୍ରତିବର୍ଷ ଫାଉଣ୍ଡେସନ ଫଣ୍ଡ ପାଇଁ ୨୦ ହଜାର ଟଙ୍କା ଦେବାର ବ୍ୟବସ୍ଥା ମଧ୍ୟ ରଖାଗଲା । ନିର୍ମାଣ କାର୍ଯ୍ୟ ନିମିତ୍ତ ଷାଠିଏ ହଜାର ଟଙ୍କା, ଫର୍ଣ୍ଣିଚର ଖରିଦ ପାଇଁ ସାତ ହଜାର ଓ ଲାଇବ୍ରେରୀ ପାଇଁ ଦଶ ହଜାର ଟଙ୍କା ଦେବାର ବଜେଟ ବ୍ୟବସ୍ଥା ରହିଲା । ରେଭେନ୍ସା କଲେଜରେ ଭୂଗୋଳ ଶିକ୍ଷା ଦେବାର ବ୍ୟବସ୍ଥା କରାଗଲା । ସମ୍ବଲପୁର ଜିଲ୍ଲା ସ୍କୁଲରେ ଅସ୍ଥାୟୀ ଭାବରେ ଜୁନିଅର କଲେଜ ଖୋଲାଯାଇ ଆଇ.ଏ, ଶ୍ରେଣୀର ଶିକ୍ଷା ଦେବା ବ୍ୟବସ୍ଥା ହେଲା । ୩ ହଜାର ଟଙ୍କା ବ୍ୟୟ ବ୍ୟବସ୍ଥା ଥାଇ ପରେ ପରେ ବାଲେଶ୍ୱର ଓ ପୁରୀରେ କଲେଜ ଖୋଲିଲା । ଜୟପୁର ମହାରାଜା ଜୟପୁରରେ ଓ ପାଟଣା ମହାରାଜା ବଲାଙ୍ଗିରରେ ମଧ୍ୟ କଲେଜ ଖୋଲିଲେ । ଖଡ଼ିଆଳ ଓଡ଼ିଶାରେ ନୂଆ ମିଶିଥିଲା । ବଜେଟରେ ଖଡ଼ିଆଳରେ ମାଇନର ସ୍କୁଲ ଓ ନୂଆପଡ଼ାରେ ସବଡ଼ିଭିଜନ୍ ଅଫିସ୍ ଥିବାରୁ ସେଠାରେ ଥିବାରୁ ଅନ୍ୟ ଏକ ମାଇନର ସ୍କୁଲ ଖୋଲିବାର ମଧ୍ୟ ବ୍ୟବସ୍ଥା କରାଗଲା । ଭାରତୀୟ ମେଡ଼ିକାଲ କାଉନସିଲ ଭାରତ ବର୍ଷରୁ ମେଡ଼ିକାଲ ସ୍କୁଲ ଉଠାଇ ଦେବାକୁ ନିଷ୍ପତି ନେଲେ । ଗଭର୍ଣ୍ଣର ଲୁଇସଙ୍କ ସମ୍ବଲପୁରରେ ଅନ୍ୟ ଗୋଟିଏ ମେଡ଼ିକାଲ ସ୍କୁଲ ପ୍ରତିଷ୍ଠା କଥା ହେଲା ନାହିଁ । ମାତ୍ର ମନ୍ତ୍ରୀମଣ୍ଡଳ ଓଡ଼ିଶାର ଏକ ମାତ୍ର କଟକର ମେଡ଼ିକାଲ ସ୍କୁଲକୁ କଲେଜରେ ପରିଣତ କରିବାକୁ ନିଷ୍ପତ୍ତି ନେଲେ । ବଜେଟରେ ଅର୍ଥର ବ୍ୟବସ୍ଥା କରାଗଲା । ୧୯୪୩ ଜୁଲାଇ ମାସଠାରୁ କଲେଜ ପ୍ରତିଷ୍ଠା ପ୍ରକ୍ରିୟା ଆରମ୍ଭ ହେଲା । କୃଷ୍ଣଚନ୍ଦ୍ର ଗଜପତିଙ୍କର ମନ୍ତ୍ରମଣ୍ଡଳ ଓଡ଼ିଶାରେ ଉଚ୍ଚତର ଶିକ୍ଷାର ଶୁଭାରମ୍ଭ କରିବା ଏହିଥିରୁ ଜଣାଯିବ ।

ହାଇକୋର୍ଟ ଗଠନ ସଭ୍ୟମାନଙ୍କର ବିଚାରକୁ ଛାଡ଼ି ଦିଆଯାଇଥିଲା । ୧୯୪୮ ରେ ଗଡ଼ଜାତ ରାଜ୍ୟ ମିଶ୍ରଣ ପରେ ଏହା ସମ୍ଭବ ହେଲା ।

**ଅର୍ଥନୈତିକ ବିକାଶ ଦିଗରେ ଉଦ୍ୟମ**

ଓଡ଼ିଶାର ଅର୍ଥନୈତିକ ବିକାଶ ଓ ରାଜ୍ୟର ଅର୍ଥାଗମ ବ୍ୟବସ୍ଥା ନିୟନ୍ତ୍ରଣ ପାଇଁ

ଗୋଟିଏ କମିଟି ଉନ୍ନୟନ ମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ଗଢ଼ାଗଲା । ଖଲିକୋଟ କଲେଜରେ ଅଧ୍ୟକ୍ଷ ଥିବା ନରସିଂହ ପାଢ଼ି ଏହାର ସଂପାଦକ ଥିଲେ । ଏହାର ଅନ୍ୟ ସଦସ୍ୟମାନେ ଥିଲେ ମାନ୍ଧାତା ଗୋରାଚାନ୍ଦ ପଟ୍ଟନାୟକ, ଜୟପୁରର ଦେୱାନ ସି.ଭି.ରାଓ. ବାର-ଆଟ-ଲ, ଭିକାରୀ ଚରଣ ପଟ୍ଟନାୟକ, କଟକ, ମହମ୍ମଦ ସାଲେ, ସମ୍ବଲପୁର, କୁମାର ବିଦ୍ୟାଧର ସିଂହ ଦେଓ, ଜୟପୁର, ଚଉଧୁରୀ ରାଧାନାଥ ମିଶ୍ର ଓ ବଂଶୀଧର ରଥ (କଟକ) । ଏମାନେ ରାଜସ୍ୱ ଆୟବୃଦ୍ଧି ଓ ଅର୍ଥନୈତିକ ବିକାଶ ଦିଗରେ ନିଜର ସୁଚିନ୍ତିତ ମତାମତ ଜଣାଇଲେ ।

ରାୟ ବାହାଦୁର ଭିକାରୀଚରଣ ପଟ୍ଟନାୟକ ଓଡ଼ିଶାରେ କୁଟୀର ଶିଳ୍ପର ବିକାଶ ଓ ଦ୍ରୁତ ପ୍ରସାର କରାଯିବା ନିମିତ୍ତ ନିଜର ରିପୋର୍ଟ ୧୯୪୫ ମସିହାରେ ଦାଖଲ କଲେ । ପରବର୍ତ୍ତୀ କାଳରେ ଓଡ଼ିଶାର ଶିଳ୍ପ ସଚିବ ଡକ୍ଟର ହରିବନ୍ଧୁ ମହାନ୍ତି, ଅଧ୍ୟାପକଙ୍କୁ ଓଡ଼ିଶାରେ ଶିଳ୍ପ ବିକାଶର ସମ୍ଭାବନା ଅନୁଧ୍ୟାନ ନିମିତ୍ତ ନିଯୁକ୍ତ କରାଗଲା । ତାଙ୍କର ରିପୋର୍ଟ ମଧ୍ୟ ୧୯୪୫ ମସିହାରେ ଦାଖଲ ହେଲା । ଏହା ଉପରେ ପରବର୍ତ୍ତୀ କାଳରେ ଶିଳ୍ପ ପ୍ରତିଷ୍ଠା ସମ୍ଭବ ହେଲା । ତେଣୁ ସାମନ୍ତବାଦୀ ଥାଇ ମଧ୍ୟ ଯୋଜନାବଦ୍ଧ ଅର୍ଥନୀତିରେ ସାଧାରଣ ଜନତାର ଆର୍ଥୀକ ଉନ୍ନତି କୃଷ୍ଣଚନ୍ଦ୍ରଙ୍କ ଚିନ୍ତାଧାରାରେ ଥିଲା ।

(ଚଳିତ ବର୍ଷ) ୨୦୦୪-୦୫ ମସିହା ପ୍ରଥମ ଅତିରିକ୍ତ ବଜେଟରେ ଆୟ ୨୧୨୭ କୋଟି ବ୍ୟୟ ତଦନୁରୂପ ଟଙ୍କା ଦେଖି ପ୍ରବନ୍ଧରେ ଉଲ୍ଲେଖ ଅର୍ଥ ହାସ୍ୟାସ୍ପଦ ଦେଖାଯାଇ ପାରେ । ମାତ୍ର ଏଠାରେ ସ୍ମରଣ ଯୋଗ୍ୟ ଯେ ସେ ସମୟରେ ଓଡ଼ିଶା ବଜେଟରେ ଆୟ ମାତ୍ର ଦୁଇକୋଟି ପାଖାପାଖି ଥିଲା, ଟଙ୍କାର କୟ ଶକ୍ତି ବିଚାରକୁ ନେଲେ ୧୯୨୯ ମସିହାରେ ସମ୍ବଲପୁରରେ ଧାନ- ଓଡ଼ିଶାର ଚାଷୀକୁଳର ଏକମାତ୍ର ସମ୍ବଳ ଓ ଅର୍ଥକାରୀ ଫସଲଟଙ୍କାକୁ ଦେଢ଼ମହଣ (ପ୍ରାୟ ୬୦ କେଜି) ଭାଉରେ ବିକ୍ରି ହେଉଥିଲା ।

**ସାହିତ୍ୟିକଙ୍କୁ ମର୍ଯ୍ୟାଦା**

ସ୍ୱର୍ଗତ ଗୋପାଳ ଚନ୍ଦ୍ର ଛୋଟରାୟ ଜଣେ ନାଟ୍ୟକାର ଓ ରେଡ଼ିଓ ଶିଳ୍ପୀଭାବରେ ଓଡ଼ିଶାରେ ସୁପରିଚିତ । ତାଙ୍କର ଆତ୍ମଜୀବନୀ 'ପଥିକ' ୧୯୯୫ ମସିହାରେ ବିଦ୍ୟାପୁରୀ କଟକ ଦ୍ୱାରା ପ୍ରକାଶିତ । ତାଙ୍କର ଅଭିଜ୍ଞତା ସେ ବର୍ଣ୍ଣନା କରିଛନ୍ତି । ୧୯୪୨-୪୩ ମସିହାରେ ଓଡ଼ିଶାରେ ଯେ କୌଣସି ମୁହୂର୍ତ୍ତରେ ଜାପାନ ଆକ୍ରମଣର ଆଶଙ୍କା ଥାଏ । ଯୁଦ୍ଧ ସାମ୍ମୁଖ୍ୟର ଗୋଟିଏ ସଙ୍ଗୀତ ନାଟକ ଶାଖା ଥାଏ । ସାଧାରଣ ଜନତାକୁ ଜାପାନ ଆକ୍ରମଣର ବିଭୀଷିକା ଜଣାଇବା ଏହାର ଉଦ୍ଦେଶ୍ୟ ଥାଏ । ବିଶିଷ୍ଟ ଜମିଦାର, ଉଦାରପନ୍ଥୀ ନେତା, 'ମୁକୁର' ସଂପାଦକ ଓ ବିଧାୟକ ବ୍ରଜସୁନ୍ଦର ଦାସ ଏହାର ମୁଖ୍ୟ ଥାଆନ୍ତି । ଗୋଟିଏ ଏକାଙ୍କିକା ପ୍ରତିଯୋଗିତା ହେଲା । ମିତ୍ର ପକ୍ଷର ଯୁଦ୍ଧ ଉଦ୍ୟମର ପ୍ରଚାର ପାଇଁ

ପାଲା, ଦାସକାଠିଆ ଓ ଏକାଙ୍କିକା ମାଧ୍ୟମରେ ଲୋକମାନଙ୍କର ମନୋରଞ୍ଜନ କରିବା ଏହାର ଉଦ୍ଦେଶ୍ୟ ଥିଲା । ପାରିତୋଷିକ ପାଇଁ ଗୋପାଳବାବୁ ଏକାଙ୍କିକା ଦାଖଲ କଲେ । ତାଙ୍କ ଲେଖା ଶ୍ରେଷ୍ଠ ନିର୍ବାଚିତ ହେଲା । କୋଡ଼ିଏ ଟଙ୍କା, ଲେଖକଙ୍କ ପାରିତୋଷିକ ମିଳିବାର କଥା । ସେ ସମୟରେ ଏହା କ୍ରୟ ଶକ୍ତି ଯଥେଷ୍ଟ ଥିଲା ମାତ୍ର ଗୋପାଳ ବାବୁଙ୍କ ନାଟକ ଦିନର "ସ୍ପେଶାଲ କେସ" କହି ତାଙ୍କୁ ପଇଁତିରିଶ ଟଙ୍କା ପୁରସ୍କାର ମିଳିଲା । ନାଟକର ନାମ ଥିଲା "ସହଧର୍ମିଣୀ" । ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ଏହା ଗଭର୍ଣ୍ଣର ସାର ହଥର୍ଣ୍ଣ ଲୁଇସଙ୍କୁ ପଢ଼ା ଯିବା ପରେ ମଞ୍ଚସ୍ଥ ହେଲା । ଗଭର୍ଣ୍ଣର ମୂଳରୁ ଶେଷ ଉପସ୍ଥିତ ରହି ଏହା ଦେଖିଲେ । ପରେ 'ଭାରତୀ' ରଙ୍ଗମଞ୍ଚରେ ଏହା ଅଭିନୀତ ହେଲା । ପ୍ରଧାନ ମନ୍ତ୍ରୀ ପାରଳା ମହାରାଜା ଅତିଥି ଥାଇ ନାଟକ ଶେଷରେ ପରଦିନ ନାଟ୍ୟକାର ତାଙ୍କୁ ତୁଳସୀପୁର ବାସ ଭବନରେ ସାକ୍ଷାତ କରିବାକୁ ନିର୍ଦ୍ଦେଶ ଦେଲେ । ଅଭିନୟରେ ପ୍ରିତ ହୋଇ ସେଠାରେ ସେ ନାୟକ ଓ ନାୟିକା ଉଭୟଙ୍କୁ ଗୋଟିଏ ଲେଖା ସ୍ୱର୍ଣ୍ଣ ପଦକ ପ୍ରଦାନ କରିଥିଲେ । ପରଦିନ ପ୍ରଧାନମନ୍ତ୍ରୀ ନିଜ ବାସଭବନରେ ସ୍ମିତବଦନରେ ନାଟ୍ୟକାରଙ୍କୁ ଶହେ ଟଙ୍କାର ଖଣ୍ଡେ ନୋଟ ବଢ଼ାଇଦେଲେ । ମହାରାଜା ତାଙ୍କୁ ସ୍ମରଣ କରାଇଦେଲେ ଯେ କାଲିର ରଙ୍ଗ ମଞ୍ଚରେ ସେମାନେ ଥିଲେ ଅଭିନେତା । ସେଥିପାଇଁ ସେମାନଙ୍କୁ ରଙ୍ଗମଞ୍ଚରେ ପୁରସ୍କୃତ କଲି । ମାତ୍ର ତୁମେ ଜଣେ ଲେଖକ । ତୁମ ସହିତ ପଦେ ଅଧେ କଥାବାର୍ତ୍ତା ହେବାକୁ ମୁଁ ଚାହୁଁଥିଲି । "ଆଜି ଅର୍ଦ୍ଧ ଶତାଧିକ ବର୍ଷ ପରେ ମୁଁ ଏହି କଥାଟି ଉଲ୍ଲେଖ କରୁଛି ଯେ ଯଦି ସେତେବେଳେ ମୁଁ ସମ୍ମାନନୀୟ ବ୍ରଜ ସୁନ୍ଦର ଦାସ ଓ ପାରଳା ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଦେବଙ୍କ ଠାରୁ ଏହିପରି ପ୍ରୋତ୍ସାହନ ପାଇ ନ ଥାନ୍ତି ତେବେ ବୋଧହୁଏ ନାଟକ ଲେଖିବା କଥା କେବେହେଲେ ଚିନ୍ତା କରି ପାରି ନ ଥାନ୍ତି ।" ଏହା 'ପଥିକ'ଙ୍କର ସ୍ୱମନ୍ତବ୍ୟ (ପୃ ୧୨୮) । ତାଙ୍କର ପ୍ରକାଶିତ ପୁସ୍ତକର ସଂଖ୍ୟା, ୫୫ । ସେଥିରୁ ନାଟକ ୩୫ ଓ ଗୀତିନାଟ୍ୟ ୧୭ ଖଣ୍ଡ ।

**ଦେଶସେବାରେ ଅର୍ଥବ୍ୟୟ**

ତାଙ୍କ ଜନ୍ମଦିନ ଉପଲକ୍ଷେ ତା ୨୭.୪.୧୯୭୮ ମସିହା ସମାଜରେ 'ନବଉତ୍କଳ ନିର୍ମାତା ପାରଳାଖେମୁଣ୍ଡି ମହାରାଜା, ନାମରେ ମୋର ଗୋଟିଏ ପ୍ରକାଶିତ ପ୍ରବନ୍ଧ ତାଙ୍କ ଦୃଷ୍ଟି ଆକର୍ଷଣ କଲା । ଜମିଦାରୀ ପାଇବାବେଳେ ସେ କୋଟିଏ ଟଙ୍କା ପାଇଥିଲେ ଓ ନିଜ ସାହେବ ଶିକ୍ଷକଙ୍କ ପ୍ରଚୋଦନାରେ ସେ ଏହା ଓଡ଼ିଆ ଜାତିର ଉନ୍ନତି ନିମିତ୍ତ ଉତ୍ସର୍ଗ କରିଥିବା ମୁଁ ଉଲ୍ଲେଖ କରିଥିଲି । ଏହାର ପ୍ରତିବାଦ କରି ସେ ୨୫ ଲକ୍ଷ ଟଙ୍କା ପାଇଥିବା ବିଷୟ ୩.୭.୬.୮ ତାରିଖରେ ସମାଜରେ ଏକ ପତ୍ରରେ ପ୍ରକାଶ କରିଥିଲେ । ତାଙ୍କର ପୂର୍ଣ୍ଣାଙ୍ଗ ଜୀବନୀ ଲେଖିବା ନିମିତ୍ତ ମୋର ପ୍ରସ୍ତାବ ସେ ପ୍ରତ୍ୟାଖ୍ୟାନ କଲେ । ପରବର୍ତ୍ତୀ

ଜନ୍ମଦିବସରେ ତା ୧୭.୪.୬୯ ରେ ସମାଜରେ ମଧ୍ୟ 'ନବଉତ୍କଳ ଗଠନରେ ପାରଳା ମହାରାଜାଙ୍କ ଅବଦାନ' ଶୀର୍ଷକ ମୋର ଏକ ପ୍ରବନ୍ଧ ପ୍ରକାଶିତ ହେଲା । ଏଥିପାଇଁ ତଥ୍ୟ ସଂଗ୍ରହ ସମୟରେ ଭାଗୀରଥୀ ପାଢ଼ି ପାରଳା ଉତ୍କଳ ହିତୈଷିଣୀ ସମାଜର କର୍ମକର୍ତ୍ତା, ବିଲାତ ଯିବାବେଳେ କଟକରେ ମହାରାଜା ଆଉ ଅଧିକ ଟଙ୍କା କରଜ କରି ନେଇଥିବା ସେ ଅଧ୍ୟାପକ ଯୁଗଳ କିଶୋର ପାଣିଗ୍ରାହୀଙ୍କ ଠାରୁ ଶୁଣିଥିବା ପ୍ରକାଶ କଲେ । ଯୁଗଳ ମାଷ୍ଟ୍ରେ କଲେଜରେ ଅଧ୍ୟାପକ ଥାଇ ମହାରାଜାଙ୍କର ବ୍ୟକ୍ତିଗତ ସଚିବ ଥିଲେ । ଏହାର ସମର୍ଥନ ଅନ୍ୟ କୌଣସି ସୂତ୍ରରୁ ନ ପାଇ ପ୍ରବନ୍ଧରେ ଏହା ଉଲ୍ଲେଖ କଲିନାହିଁ ।

ସ୍ୱର୍ଗତ ପଣ୍ଡିତ କୃଷ୍ଣଚନ୍ଦ୍ର କର ଜଣେ ଲବ୍ଧ ପ୍ରତିଷ୍ଠ ସାହିତ୍ୟିକ । ତାଙ୍କର ଆତ୍ମଜୀବନୀ 'ହଜିଲା ଦିନର ସ୍ମୃତି' ୧୯୯୧ ମସିହାରେ କଟକର ଗ୍ରନ୍ଥ ମନ୍ଦିରଙ୍କ ଦ୍ୱାରା ପ୍ରକାଶିତ । ଏଥିରେ ସେ ଉଲ୍ଲେଖ କରଛନ୍ତି ମହାରାଜାଙ୍କର ଦେଶପ୍ରେମ ଓ ମହାନୁଭବତା । ସେ ଏହାର ଚାକ୍ଷୁଷ ସାକ୍ଷୀ (ପୃ. ୩୦୯ ରୁ ୩୧୪) । ତାଙ୍କ ନିଜ ଭାଷାରେ

"ଅତୁଳ ଜନ୍ମଭୂମି ମମତା ଓ ଉତ୍କଳ ଜନନୀ ସେବାର ଗୋଟିଏ ତୁଳ୍ୟାତି ରହିତ ଦେଶାତ୍ମବୋଧ ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖ କରିବାକୁ ଯାଉଛି ଯାହା ମୋର ପ୍ରତ୍ୟକ୍ଷଦୃଷ୍ଟ ।"

ଲଣ୍ଡନ ଯାତ୍ରା ଏକ ପ୍ରକାର ବହ୍ୱାଡ଼ମ୍ବର ଜୈତ୍ରର ଯାତ୍ରା ରୂପ ଧାରଣ କରିଥିଲା । ଏକ ନବନିର୍ମିତ ରମଣୀୟ ପ୍ରାସାଦରେ ବ୍ରଜସୁନ୍ଦର ବାବୁ ଅବସ୍ଥାନ କରୁଥିଲେ । ଏକ ନାତିବୃହତଦ୍ୱିତଳଭବନ । ତଳ ପ୍ରକୋଷ୍ଠଟି ଉତ୍କଳ ସମ୍ମିଳନୀର ଅଫିସ କକ୍ଷ ଏବଂ ଉପର ପ୍ରକୋଷ୍ଠଟି ସମ୍ମିଳନୀର ସମ୍ମେଳନ କକ୍ଷ । ଏହା ଛଡ଼ା ଯେଉଁ ଆଗନ୍ତୁକମାନେ ସମୟସମୟରେ ଆସନ୍ତି ଏହି ଉପରତାଲା କକ୍ଷଟି ସେମାନଙ୍କର ହୁଏ ରହଣିସ୍ଥଳ । ଦେଶାତ୍ମବୋଧୋଦ୍‌ବୁଦ୍ଧ ଗଜପତି ମହାରାଜା କୃଷ୍ଣଚନ୍ଦ୍ର ନାରାୟଣ ଦେବ ବିଲାତକୁ ଏଥର ବିଜୟ ଅଭିଯାନ କଲାବେଳେ କଟକରେ ଦିନଟିଏ ଅଟକିଥିଲେ । ସେହିଦିନ ତାଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା କରିବା ଉଦ୍ଦେଶ୍ୟରେ କଟକର ବିଶିଷ୍ଟ ବୁଦ୍ଧିଜୀବୀ ଗୋଷ୍ଠୀ ପକ୍ଷରୁ ବ୍ରଜ ସୁନ୍ଦର ବାବୁଙ୍କ ଘାସାଚ୍ଛାଦିତ ମନୋରମ ପ୍ରାଙ୍ଗଣ ପରିସରରେ ଏକ ଗୁରୁଗମ୍ଭୀର ସମାବେଶର ଆୟୋଜନ କରାଯାଇଥିଲା ।

ସଭା ସାଙ୍ଗ ହେବା ପରେ ପାରଳା ମହରାଜାଙ୍କୁ ସମ୍ମିଳନୀ ଭବନର ଉପରତାଲା କକ୍ଷକୁ ପାଛୋଟି ନିଆଯାଇଥିଲା । ସେଠାରେ ସେ ଉତ୍କଳ ସମ୍ମିଳନୀର ସଭାପତି, ସଂପାଦକ ଓ ବିଭିନ୍ନ କର୍ମକର୍ତ୍ତା ପ୍ରଭୃତିଙ୍କ ସହିତ କିଛି ସମୟ ଆଳାପ ଆଲୋଚନା କରିଥିଲେ । ସେତେବେଳେ ସ୍ୱାମୀ ବିଚିତ୍ରାନନ୍ଦ ଦାସ, ବ୍ରଜ ସୁନ୍ଦର ଦାସ, ଲକ୍ଷ୍ମୀଧର ମହାନ୍ତି ଗୋପାଳ ଚନ୍ଦ୍ର ପ୍ରଜରାଜ, ଭିକାରୀଚରଣ ପଟ୍ଟନାୟକ, ଚିନ୍ତାମଣି ଆଚାର୍ଯ୍ୟ, ଲକ୍ଷ୍ମୀ ନାରାୟଣ ସାହୁ,

ସୋମନାଥ ମହାପାତ୍ର ଇତ୍ୟାଦି ବିଶିଷ୍ଟ ବ୍ୟକ୍ତିଙ୍କ ମେଳରେ ମୁଁ ମଧ୍ୟ ଉପସ୍ଥିତ ଥିଲି । ସମ୍ମିଳନୀର ପ୍ରଚାର ସବକମିଟିର ମୁଁ ଜଣେ ସଭ୍ୟ ଥିବାରୁ ପ୍ରହରାଜ ମହୋଦୟ ମତେ ସେଠାକୁ ସାଙ୍ଗରେ ନେଇଯାଇଥିଲେ । ମହାରାଜା ଉପସ୍ଥିତ ବନ୍ଧୁମାନଙ୍କୁ ଲଣ୍ଡନରେ ଆୟାସ ସାଧ୍ୟ ନିଜ କାର୍ଯ୍ୟ ଯୋଜନାର ସଂକ୍ଷିପ୍ତ ସୂଚନା ଦେଉଥିବାବେଳେ ତାଙ୍କଠାରୁ ଡକରା ପାଇଁ ରାଜବାଟୀ ଅଧ୍ୟକ୍ଷକ Palace Supdt. ଶ୍ରୀ ଛାମୁରେ ହାଜର ହେଲେ । ଲଣ୍ଡନ ଯାତ୍ରାରେ ସେ ମହାରାଜାଙ୍କର ତହବିଲ ରକ୍ଷା ତଥା ହିସାବ ରକ୍ଷକ ରୂପେ ରାଜକୀୟ ଦଳରେ ଅନ୍ତର୍ଭୁକ୍ତ ଥିଲେ । ମହାରାଜା ସେହି ତହବିଲଦାରଙ୍କୁ ପଚାରି ବୁଝିଲେ ଯେ ବିଲାତ ଗସ୍ତ ପାଇଁ ସଙ୍ଗରେ ଆସିଥିବା ମୋଟ ସମ୍ବଳର ପରିମାଣ ପାଞ୍ଚଲକ୍ଷ ଟଙ୍କାରୁ କିଞ୍ଚିତ୍ ମାତ୍ର ଅଧିକ । ଜମା ପାଞ୍ଚଲକ୍ଷ । ମହାରାଜାଙ୍କ ବଡ଼ ଆଖିକୁ ଏହା ପାଇଲା ନାହିଁ - କମ୍ ଦିଶିଲା । ମନ ଉଣାରେ ସେ ବ୍ରଜସୁନ୍ଦର ବାବୁଙ୍କୁ କହିଲେ "ବିଦେଶକୁ ଗଲେ ପରିସ୍ଥିତିର ଦାବି ଅନୁସାରେ ଖର୍ଚ୍ଚ କରିବାକୁ ପଡ଼େ । ପରିସ୍ଥିତିର ଚାହିଦାମତେ ପର୍ଯ୍ୟାପ୍ତ ଧନ ପାଖରେ ନ ଥିଲେ ବିଦେଶରେ ହଟହଟା ହେବାକୁ ହୁଏ । ନିଜର ସୀମିତ ସମ୍ବଳକୁ ଚାହିଁ ବାଣ୍ଟିକୁଣ୍ଟି ଖର୍ଚ୍ଚ କଲେ ବାଞ୍ଛିତ ଫଳ ଲାଭର ଆଶା ବ୍ୟାହତ ହୋଇଥାଏ । ମୁଁ ବିରାଟ ଆଶା ଘେନି ଗୋଲଟେବୁଲ ବୈଠକରେ ଯୋଗ ଦେବାକୁ ଯାଉଛି । ଏଥର ଲଣ୍ଡନରେ ଅପରିମିତ ବ୍ୟୟର ପ୍ରୟୋଜନ ଅଛି । ତହବିଲରେ ଥିବା ଏତିକି ମାତ୍ର ଟଙ୍କାରେ ଲକ୍ଷ୍ୟ ହାସଲ ହେଇପାରିବ ବୋଲି ମୋର ବିଶ୍ୱାସ ଆସୁନାହିଁ । ଅନ୍ତତଃ ଆଉ ଲକ୍ଷେଟଙ୍କା ତୁମେ ମୋ ପାଇଁ ଯୋଗାଡ଼ କରିଦିଅ । ସେତକ ପାଖରେ ଥିଲେ ଅର୍ଥାଭାବର ସଂଶୟ ରହିବ ନାହିଁ। ଲମ୍ବ କୁଞ୍ଚି ସବୁଥିକୁ ପାଏ ପରା । ଏଠି ବଡ଼ ମହାଜନ କିଏ ଅଛନ୍ତି ତୁରନ୍ତ ଡକାଅ । ମୁଁ ହାଣ୍ଡନୋଟରେ ସହିକରି ଟଙ୍କା ନେବାକୁ ପ୍ରସ୍ତୁତ ହୋଇ ରହିଛି । ମୋର କଡ଼ା ବ୍ୟବସ୍ଥା ଅନୁଯାୟୀ ରାଜସ୍ୱ ଆଦାୟ ତନାଘନା ଚାଲିଛି । ତେଣୁ ମୁଁ ବିଲାତରୁ ଫେରିବା ମାତ୍ରେ ହିଁ ଏହି ଋଣ ସୁଧ ସହିତ ପରିଶୋଧ ହୋଇଯିବ" ।

ବ୍ରଜସୁନ୍ଦର ବାବୁ ଉତ୍ତରରେ କହିଲେ "ବଡ଼ ମହାଜନ ତ ଅଛନ୍ତି, କିନ୍ତୁ ମଣିମା କାହିଁକି ହାଣ୍ଡନୋଟରେ ସ୍ୱାକ୍ଷର କରିବେ ? ଏହାଦ୍ୱାରା ରାଜସମ୍ମାନରେ ନିଶ୍ଚୟ ଆଞ୍ଚ ଆସିବ । ଏଣୁ ମୁଁ ବର୍ତ୍ତମାନ ମହାଜନ ଠାରୁ ହାଣ୍ଡନୋଟରେ ଏକଲକ୍ଷ ଟଙ୍କା ଆଣି ତହବିଲଦାରଙ୍କ ହସ୍ତରେ ଅର୍ପଣ କରିବି । ମହାମନା ମହାରାଜା ବ୍ରଜସୁନ୍ଦର ବାବୁଙ୍କୁ ବୁଝାଇଦେଲେ "ପାରଳାଖେମୁଣ୍ଡି ଧରାଧୀଶ ଗଜପତି ମହାରାଜା କୃଷ୍ଣଚନ୍ଦ୍ର ନାରାୟଣ ଦେବ ରୂପେ ମୁଁ ଋଣପତ୍ରରେ ଦସ୍ତଖତ କରିବାକୁ ଯାଉନାହିଁ। ଛିନ୍ନମସ୍ତା ଉତ୍କଳମାତାର କୋଟିଏ ସନ୍ତାନ ମଧ୍ୟରୁ ଅବୋଧ ସନ୍ତାନ ରୂପେ ମୁଁ ଏହି ଋଣ କରିବାକୁ ମନ ବଳାଇଛି । ଏହି ମୋର ଏକ ଅବଶ୍ୟ କରଣୀୟ ଜାତୀୟ କର୍ତ୍ତବ୍ୟ ନୁହେଁ କି ? ତୁମେ ଏ ଅନାବଶ୍ୟକ

ପ୍ରସଙ୍ଗ ଉତ୍ଥାପନରୁ ପ୍ରତିନିବୃତ୍ତ ହୋଇ ଅତିଶିଘ୍ର ମହାଜନଙ୍କୁ ଟଙ୍କା ସହ ଆସିବାକୁ ଖବର ଦିଅ ।" ସେ ସମୟରେ କୁସୀଦଜୀବୀ ବଡ଼ ମହାଜନ ହିସାବରେ ସର୍ବଶ୍ରେଷ୍ଠ ଧନୀକ ଥିଲେ ଆକାଶୀ ସୋମଶେଖରମ୍, ଜାତିରେ ତେଲେଗା । ତାଙ୍କରା ପାଇ କ୍ଷଣବିଳମ୍ୱ ନକରି କୁସୀଦ ବ୍ୟବସାୟୀ ଆକାଶୀ ଲକ୍ଷେଟଙ୍କା ଓ ଲିଖିତ ହାଣ୍ଡନୋଟ ସହ ସମ୍ମିଳନୀ ଭବନରେ ଆସି ଉପଗତ ହୋଇଗଲେ । ତହବିଲଦାର ଏକ ଲକ୍ଷ ଟଙ୍କା ଗଣିନେଲେ । ମହାରାଜା ଋଣପତ୍ରରେ କୃଷ୍ଣଚନ୍ଦ୍ର ନାରାୟଣଦେବ ନାମରେ ସ୍ୱାକ୍ଷର ଦେଲେ । ବାତ୍ସଲ୍ୟମୟୀ ଜନ୍ମଭୂମୀ ମା' ଉତ୍କଳ ପ୍ରସାଦରୁ ଖାତକ ହୋଇପାରି ଥିବାରୁ ଅନନୁଭୂତ ଆନନ୍ଦ ଓ ଗର୍ବରେ ସେ ଦିନ ତାଙ୍କର ବକ୍ଷ ବିସ୍ତାରିତ ହୋଇଯାଇଥିଲା ।

୧୯୪୯-୫୦ ମସିହାରେ କଥା' । ସମ୍ବିଧାନ ସଭାକୁ ନିର୍ବାଚନ ହେଉଥାଏ । ଲାଟ ସଭା ସଭ୍ୟମାନେ କେବଳ ଭୋଟ ଦିଅନ୍ତି । ପାରଳା ମହାରାଜା କମ ଭୋଟ ପାଇଲେ । ଲକ୍ଷ୍ମୀ ନାରାୟଣ ସାହୁ ନିର୍ବାଚିତ ହେଲେ । ପରବର୍ତ୍ତୀ କାଳରେ ପ୍ରଥମ ସାବାଳକ ଭୋଟରେ ସାଧାରଣ ନିର୍ବାଚନ । ମହାରାଜା ଭାରତର ଲୋକସଭାକୁ ପ୍ରାର୍ଥୀ ନିର୍ବାଚନ, କଂଗ୍ରେସ ଟିକଟରେ ଲଢ଼ିବାର ଥାଏ । ମନୋନୟନ ପତ୍ର ଦାଖଲ ହେଲା । ପୁଷ୍ଟିରେ ତାଙ୍କର କେତେକ ଚୁକ୍ତି ତାଙ୍କ ବିରୋଧରେ ଦାଖଲ ହେଲା । ମନୋନୟନ ପତ୍ର ଛତ୍ରପୁରରେ ନାକଚ ହେଲା । ତାପରେ ରାଜନୀତିରୁ ବିଦାୟ । ବହୁ ରାଜନୈତିକ ଦଳର ପ୍ରତିଷ୍ଠିତ ନେତାମାନେ ତାଙ୍କୁ ନିଜ ଦଳରେ ନେବାକୁ ମନେଇଲେ ମାତ୍ର ତାଙ୍କର ପଦେ ମାତ୍ର ଉତ୍ତରଥିଲା ।

**ରାଜନୀତିରୁ ବିଦାୟ** "Only a dog returns to vomit"



# ପ୍ରଦେଶ ଗଠନରେ ନେପଥ୍ୟ ନାୟକ

ଭାଷାଭିତ୍ତିକ ଓଡ଼ିଶା ପ୍ରଦେଶ ଗଠନରେ ଗଜପତି ମହାରାଜା କୃଷ୍ଣଚନ୍ଦ୍ର ଦେବଙ୍କ ପରି ଅନେକ ଜନନାୟକଙ୍କର ଦାନ ଅବିସ୍ମରଣୀୟ । ମାତ୍ର ଏହା ବ୍ୟତୀତ ଅନେକ ଦେଶପ୍ରେମୀ ସର୍ବସାଧାରଣଙ୍କର ଅଲକ୍ଷ୍ୟରେ ଏହି ଦିଗରେ ସାହାର୍ଯ୍ୟ କରିଥିଲେ । ଖଳନାୟକ ଭୂମିକାରେ ମଧ୍ୟ କେତେକ ପ୍ରଦେଶ ଗଠନର ବିରୋଧ କରୁଥିଲେ । ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନିଜର କୌଶଳ ପ୍ରୟୋଗ କରି ସେମାନଙ୍କର ଉଦ୍ୟମ ପଣ୍ଡ କରିଥିଲେ । ଏହି ପ୍ରବନ୍ଧରେ ଏହିପରି କେତେଜଣଙ୍କର ଭୂମିକା ଆଲୋଚିତ ହେବ ।

୧. ସମ୍ବଲପୁରର ଦେଶପ୍ରେମୀ ଦାଶରଥୀ ମିଶ୍ର, ସିମଳା ଯାତ୍ରାର ଲେଖକ ଶ୍ରୀପତି ମିଶ୍ରଙ୍କର ସେ ସାନଭାଇ ଥିଲେ । ଜନ୍ମ ୧୮୪୭ ମସିହାରେ । ଏନ୍‌ଟ୍ରାନସ୍ ପାଶ କରି ସେ ମଧ୍ୟପ୍ରଦେଶ ଅନ୍ତର୍ଗତ ତତ୍କାଳୀନ ସମ୍ବଲପୁର ଡେପୁଟି କମିଶନରଙ୍କ ଅଫିସରେ କିରାଣୀ କାମ କରୁଥିଲେ । ବଡ଼ଭାଇ ଶ୍ରୀପତିଙ୍କଠାରୁ ସେ ଦେଶାତ୍ମବୋଧ ଶିକ୍ଷା କରିଥିଲେ । କଚେରୀରେ କାମ କରିବା ସମୟରେ ସେ ହିନ୍ଦୀଭାଷୀଙ୍କର ଦୌରାତ୍ମ୍ୟ ଉପଲବ୍ଧି କରିଥିଲେ । ଅମଲାମାନେ ସ୍ଥାନୀୟ ଓଡ଼ିଆ ଭାଷ ଜାଣିନଥିବାରୁ କୋର୍ଟ କଚେରୀରେ ହିନ୍ଦୀ ଭାଷ ପ୍ରଚଳନ କରି ଏହି ଅସୁବିଧା ଦୂର କରିବାକୁ ସରକାରଙ୍କୁ ପ୍ରସ୍ତାବ ଦେଇ ପ୍ରଭାବିତ କଲେ । ସମ୍ବଲପୁରର ତତ୍କାଳୀନ ଡେପୁଟି କମିଶନର ଏହି ପରିବର୍ତ୍ତନ ପ୍ରତି ଅସାଧାରଣ ଭାବେ ସହାନୁଭୂତିଶୀଳ ଥିଲେ । ପ୍ରଦେଶ ତମାମ ଓଡ଼ିଆ ଭାଷା ଉଠାଇ ଦେବାର ପ୍ରତିବାଦ ତୀବ୍ରହେଲା । 'ସମ୍ବଲପୁର ହିତୈଷିଣୀ' ଓ ଉତ୍କଳ ଦୀପିକା' ମାଧ୍ୟମରେ ଏ ଚକ୍ରାନ୍ତ ସଚେତନ ବୁଦ୍ଧିଜୀବୀ ଓ ଲୋକ ଦୃଷ୍ଟିକୁ ଆସିଲା । ସ୍ୱଭାବ କବି ଗଙ୍ଗାଧର ମେହେର ତା ୩୦.୧୦.୧୯୮୪ ସଂଖ୍ୟା ଉତ୍କଳ ହିତୈଷିଣୀରେ 'ଭାରତୀ ରୋଦନ' ଶୀର୍ଷକ କବିତା ପ୍ରକାଶ କରିଥିଲେ । ସେଥିରେ ସେ ଲେଖିଥିଲେ -

ଉତ୍କଳ ଭାରତୀ ରୋଦନ କରୁଛି କାତରେ ସମ୍ବଲପୁରେ

ବିକଳ ଧ୍ୱନି କର୍ଣ୍ଣରେ ପଡ଼ିଲେ ନୟନ ଲୋତକେ ପୂରେ ।।
ବୋଲଇ ଦୁଃଖିନୀ କେତେ କେତେ କଷ୍ଟ ସହି ମୋ କୋଳରେ ଧରି

କୁମାରଙ୍କୁ ମୋର ପାଳନ କରୁଛି ପ୍ରାଣାଧିକ ସ୍ନେହ କରି ।।

× × × × × × ×

ହିନ୍ଦୀ ସରସ୍ୱତୀ ମୋ ଛାତିରେ ବସି କରିବ ପରା ରାଜତ୍ୱ
ସେ ଆଶା କାନନ ଭସ୍ମରାଶି ହେବ ତା ନବ ଉଦ୍ୟାନେ ଖତ ।।
ଉପମାତ ଆସି ଗର୍ଭଧାରିଣୀର ମସ୍ତକେ ଚରଣ ଦେବ,
ଏ ବେଶ ଦେଖିଲେ କେଉଁ ସନ୍ତାନର ମନରେ ଦୁଃଖ ନ ହେବ ।।

ଆଯୌକ୍ତିକ ଭାବେ ଏହି ହିନ୍ଦି ପ୍ରଚଳନର ବିରୋଧ କରି ଓଡ଼ିଆମାନେ ଦେଉଥିବା ଆପତ୍ତି ଅଭିଯୋଗମାନ କର୍ତ୍ତୃପକ୍ଷଙ୍କର ଦୃଷ୍ଟିକୁ ଆସି ପାରୁନଥିଲା । ଅଣଓଡ଼ିଆ ଅମଲାମାନେ ଏ କାଗଜସବୁ ଚାପି ଦେଉଥିଲେ । ଦାଶରଥୀ ନିଜ ବଡ଼ଭାଇ ଶ୍ରୀପତି ମିଶ୍ର ଓ ସମ୍ବଲପୁରର ପ୍ରଖ୍ୟାତ ଜାତୀୟତାବାଦୀ ନେତା ଚନ୍ଦ୍ରଶେଖର ବେହେରାଙ୍କୁ ଏହି ଷଡ଼ଯନ୍ତ୍ରର ସୂତ୍ରମାନ ଜଣାଇ ଦେଉଥିଲେ ।ଫଳରେ ଅମଲାମାନଙ୍କର ଚକ୍ରାନ୍ତ ବିଫଳ ହେଲା । ସେମାନେ ଦାଶରଥୀଙ୍କୁ ନିଜର ଶତ୍ରୁ ମନେକଲେ । ତାଙ୍କ ବିରୁଦ୍ଧରେ ଅଭିଯୋଗ ଅଣାଗଲା । ତାଙ୍କୁ କୈଫିୟତ ମଗାଗଲା । ନିଜର ମର୍ଯ୍ୟାଦା ରକ୍ଷା ଲାଗି ସେ ନିଜର ଚାକିରିରୁ ଇସ୍ତଫା ଦେଲେ । ପରବର୍ତ୍ତୀ କାଳରେ ସେ ବ୍ୟବସାୟୀ ଭାବରେ ପ୍ରତିଷ୍ଠିତ ହେଲେ ଓ ଜାତୀୟ କଂଗ୍ରେସରେ ଯୋଗଦାନ କରି ଜନସେବା କରିଥିଲେ । ମାତ୍ର ସମ୍ବଲପୁରର ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣ ପ୍ରସଙ୍ଗରେ ସେ ସ୍ମରଣୀୟ । ଓଡ଼ିଶାର ଏକୀକରଣ ଏହିଠାରୁ ହିଁ ଆରମ୍ଭ ହେଲା ।

୨. ସେହିପରି ଆଉ ଜଣେ ଓଡ଼ିଶାର ସୁଯୋଗ୍ୟ ସନ୍ତାନ ନୀଳମଣି ସେନାପତି । ପୁରୀ ଜିଲ୍ଲାରେ ତାଙ୍କର ଜନ୍ମ ୧୮୯୭ ମସିହା ଫେବୃଆରି ୧୯ ତାରିଖରେ । କଲିକତାରୁ ବି.ଏସ୍.ସି ପାସ କରି ସେ ୧୯୨୨ ମସିହାରେ ଆଇ.ସି.ଏସ୍. ହେଲେ । ବିଲାତ ଗଲେ । କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରୁ ବି.ଏ. ପାସ କରି ଭାରତକୁ ଫେରି ଜନସେବାରେ ନିଯୁକ୍ତ ହେଲେ । ବିହାର ଓ ଓଡ଼ିଶା ତାଙ୍କର କର୍ମକ୍ଷେତ୍ର ଥିଲା ।ରୟେଲ୍ ଜୋଗ୍ରାଫିକାଲ ସୋସାଇଟିର ମଧ୍ୟ ସେ ସଭ୍ୟ ଥିଲେ। ଆଦିବାସୀମାନଙ୍କ ମଧ୍ୟରେ ସହୃଦୟତା ସ୍ଥାପନ ନିମିତ୍ତ ସେ ଓରାମ୍ ଭାଷା ଶିକ୍ଷା କରି ସେଥିରେ ଦକ୍ଷତା ହାସଲ କରିଥିଲେ । ବିହାରରେ ସଚିବ ଓ ପରେ ଓଡ଼ିଶାର ମୁଖ୍ୟ ଶାସନ ସଚିବ ଓ ରାଜସ୍ୱପରିଷଦ ଅଧକ୍ଷ ଭାବରେ

କାର୍ଯ୍ୟକରି ସେ ଅବସର ନେଲେ । ସ୍ୱାଧୀନ ଭାରତରେ ଓଡ଼ିଶାରେ କର୍ମନିଯୁକ୍ତ ଥିବା ସମୟରେ ଗଡ଼ଜାତମାନଙ୍କର ମିଶ୍ରଣ ଓ ଜମିଦାରି ପ୍ରଥା ବିଲୋପ କାର୍ଯ୍ୟକ୍ରମରେ ସେ ମୁଖ୍ୟ ପରାମର୍ଶଦାତା ଭୂମିକା ଗ୍ରହଣ କରିଥିଲେ । ମାତ୍ର ସମ୍ବଲପୁର ଜିଲ୍ଲାପାଳଭାବେ ପ୍ରଦେଶ ଗଠନ ଦିଗରେ ତାଙ୍କର ରହିଥିବା ଲୁକ୍କାୟିତ ଅବଦାନ ସ୍ମରଣୀୟ । ଭାଷା ଦୃଷ୍ଟିରୁ ପ୍ରଦେଶର ସୀମା ନିରୂପଣ ନିମିତ୍ତ ଓଡ଼ନେଲ୍ କମିଟି ୧୯୩୧ ମସିହାରେ ଗଠିତ ହୋଇଥିଲା । ସେମାନେ ବିଭିନ୍ନ ଅଞ୍ଚଳ ବୁଲି ଲୋକମତ ଓ ପ୍ରଶାସନିକ ସୁବିଧା ବିଚାରକୁ ନେଇ ସୀମା ନିର୍ଦ୍ଧାରଣ ପାଇଁ ସୁପାରିସ୍ କରିବାର ଥିଲା । ୧୯୩୧ ମସିହା ଜୁଲାଇ ୨୪ ତାରିଖରେ ସମ୍ବଲପୁରରେ ଏକ ସାଧାରଣ ସଭାରେ ସେନାପତି ସାହେବ, ଖଡ଼ିଆଳ, ପଦ୍ମପୁର, ଫୁଲଝର ପରି ଓଡ଼ିଆ ଅଞ୍ଚଳମାନ ଆଣିବାକୁ ଉଦ୍ୟମ କରି ଉଦ୍‌ବୋଧନ ଦେଇଥିଲେ । ରାୟପୁର ଜିଲ୍ଲା ଅନ୍ତର୍ଗତ ଖଡ଼ିଆଳ (ବର୍ତ୍ତମାନ ନୂଆପଡ଼ା ଜିଲ୍ଲା) ଏକ ଓଡ଼ିଆ ଜମିଦାରି । ରାଜା ଓଡ଼ିଆ ଓ ଅଧିକାଂଶ ପ୍ରଜା ଓଡ଼ିଆ ଭାଷାଭାଷୀ । ମାତ୍ର ମଧ୍ୟପ୍ରଦେଶର ପ୍ରଭାବ ସେଠାରେ ଅବ୍ୟାହତ ଥିଲା । ସାର୍ ହରିସିଂହ ଗୌର ଜଣେ ନାମଜାଦା ଓକିଲ, ବ୍ୟବସ୍ଥାପକ, ସରକାରଙ୍କ ଆଇନ ସଭ୍ୟ ଓ ନ୍ୟାୟ ବିଶାରଦ ଥିଲେ । ତାଙ୍କୁ ପାଠପଢ଼ାରରେ ଖଡ଼ିଆଳ ରାଜା ସାହାର୍ଯ୍ୟ କରିଥିବାରୁ ସେ ତାଙ୍କଠାରେ ଋଣୀ ଥିଲେ । ସାଗର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ସାର୍ ହରିସିଂହଙ୍କର ଏକ ପ୍ରଧାନ କୀର୍ତ୍ତି । ସେ ଖଡ଼ିଆଳ ରାଜାଙ୍କୁ ଓଡ଼ିଶାରେ ନ ମିଶିବାକୁ ପ୍ରବର୍ତ୍ତାଇଥିଲେ । ସେତେବେଳେ ରାୟପୁରର ଜିଲ୍ଲାପାଳ ଥିଲେ ସ୍ୱନାମଧନ୍ୟ ଚିନ୍ତାମଣି ଦେଶମୁଖ୍ । ପରେ ସ୍ୱାଧୀନ ଭାରତରେ ସେ କଂଗ୍ରେସରେ ଯୋଗଦାନ କରି ଭାରତର ଅର୍ଥମନ୍ତ୍ରୀ ହୋଇଥିଲେ । ଓଡ଼ନେଲ୍ କମିଟି ରାୟପୁରଠାରେ ସାକ୍ଷ୍ୟ ନେଲା ।

ଓଡ଼ିଶାରେ ରାୟପୁର ଜିଲ୍ଲାର କୌଣସି ଅଂଶ ମିଶିବ ନାହିଁ ବୋଲି ସେମାନେ ନିଷ୍ପତ୍ତି କରି ସମ୍ବଲପୁର ଆସିଲେ । ସେମାନେ ଡ଼େପୁଟି କମିଶନର୍ ନୀଳମଣି ସେନାପତିଙ୍କର ଅତିଥି ହେଲେ । ଏହି କମିଟିର ସଂପାଦକ ଥିଲେ ଭବାନୀ ଚରଣ ମୁଖର୍ଜି, ଆଇ.ସି.ଏସ୍. । ସେ କଟକର କଲେକ୍ଟର ଥିଲେ ଓ ପରିବର୍ତ୍ତୀକାଳରେ ଓଡ଼ିଶାର ମୁଖ୍ୟ ଶାସନ ସଚିବ ହୋଇଥିଲେ । ସେ ସେନାପତିଙ୍କର ଅତିଥି ହେବା ସମୟରେ ରାୟପୁର କମିଶନର୍ ମଧ୍ୟ ତାଙ୍କ ସହିତ ଆସିଥିଲେ । କିପରି ଭାବରେ ଅନ୍ୟାନ୍ୟ ସମସ୍ତ ସଭ୍ୟଙ୍କୁ ପ୍ରଭାବିତ କରି ସେନାପତି ସାହେବ୍ ରାୟପୁରରୁ ଖଡ଼ିଆଳ ମହାଦେବପାଲି, ପଦ୍ମପୁର (ବର୍ତ୍ତମାନ ହୀରାକୁଦ ଜଳଭଣ୍ଡାର ଗର୍ଭରେ) ଆଣିବାକୁ ସକ୍ଷମ ହୋଇଥିଲେ ସେ ବିଷୟରେ ସମ୍ବଲପୁରର ତତ୍କାଳୀନ ମୁଖ୍ୟଅମଲା ମୁରଲୀଧର ବହିଦାର, କୃତିବାସ ପ୍ରଧାନ, ମୃତ୍ୟୁଞ୍ଜୟ ପତି ଆଦିଙ୍କ ଠାରୁ ନାନା ଚାଞ୍ଚଲ୍ୟକର ବିବରଣୀ ଶୁଣାଯାଉଥିଲେ

ମଧ୍ୟ ସ୍ୱୟଂ ସେନାପତି ୧୯୮୦ ମସିହା ଅପ୍ରେଲ୍ ମାସ 'ଉତ୍କଳ ପ୍ରସଙ୍ଗ'ରେ ଗୋଟିଏ ପ୍ରବନ୍ଧରେ ଏହାର କିଞ୍ଚିତ ବର୍ଣ୍ଣନା ଦେଇଛନ୍ତି। ପ୍ରାତଃ ଭୋଜନ ସମୟରେ କଥାବାର୍ତ୍ତା ବେଳେ ଅତିଥିମାନେ ସେମାନଙ୍କର ଓଡ଼ିଶାବିରୋଧୀ ମତାମତ ସ୍ପଷ୍ଟ କରିଦେଲେ । ଆଗରୁ ମଧ୍ୟପ୍ରଦେଶରେ ଜଣେ ଡ଼େପୁଟି କମିଶନର୍ ଥିଲେ ରବୀନ୍ଦ୍ରନାଥ ବାନାର୍ଜୀ । ସେ ୧୯୨୦ ମସିହାର ଆଇ.ଏ.ଏସ୍ । ପୂର୍ବେ ସେ ସମ୍ବଲପୁର ଜିଲ୍ଲା ସ୍କୁଲର ଛାତ୍ର ଥିଲେ । ଅନେକ ଓଡ଼ିଆଭାଷୀ ଅଞ୍ଚଳ ମଧ୍ୟପ୍ରଦେଶରେ ରହିଅଛି । ସେ ଏହା କ୍ଷେତ୍ର ଅନୁସନ୍ଧାନରେ ଜାଣିଥିଲେ । ସରକାରଙ୍କୁ ମଧ୍ୟ ସେ ଏହା ଜଣାଇଦେଇଥିଲେ । ତାଙ୍କର ମତାମତ, କମିଟିକୁ ଜଣାଇ ଦିଆଗଲା । କମିଟି କହୁଥିଲା ଏ ଅଞ୍ଚଳର ଜମିଦାରମାନେ ଓଡ଼ିଶା ସହିତ ମିଶିବାକୁ ଚାହୁଁନାହାନ୍ତି । ସମ୍ବଲପୁର ସହିତ ଏହି ଅଞ୍ଚଳର ଗମନାଗମନର ସୁବିଧା ନାହିଁ ଓ ପ୍ରଜାମାନଙ୍କ ନିମିତ୍ତ ସ୍ୱତ୍ୱଲିପି ହିନ୍ଦୀଭାଷାରେ ଦିଆଯାଇ ପ୍ରଜାମାନଙ୍କ ଦ୍ୱାରା ନିର୍ବିବାଦରେ ଗୃହୀତ ହୋଇଛି । ସମ୍ବଲପୁରର ତତ୍କାଳୀନ ଜନନାୟକମାନେ ହେଲେ :- ରାମ ନାରାୟଣ ମିଶ୍ର, ଶଙ୍କର ପ୍ରସାଦ ମିଶ୍ର, ଗୋକୁଳଚନ୍ଦ୍ର ବାବୁ, ବୋଧରାମ ଦୁବେ, ଅଚ୍ୟୁତାନନ୍ଦ ପୁରୋହିତ, ମହମ୍ମଦ ସାଲେ ପ୍ରଭୃତି । ସେମାନେ ଡ଼େପୁଟି କମିଶନରଙ୍କ ଠାରୁ ଉତ୍ସାହ ପାଇ ସ୍ୱପକ୍ଷରେ ସାକ୍ଷ୍ୟପ୍ରମାଣ ଓ ତଥ୍ୟଭିତ୍ତିକ ଯୁକ୍ତି ସଭ୍ୟମାନଙ୍କ ଆଗରେ ଉପସ୍ଥାପିତ କରିବାକୁ ବାହାରିପଡ଼ିଲେ । ସଭ୍ୟମାନଙ୍କୁ ଦେଖାଇ ଦିଆଗଲା, ସ୍ୱତ୍ୱଲିପିମାନ ପ୍ରଜାମାନଙ୍କୁ ଓଡ଼ିଆଭାଷାରେ ଦିଆଯାଇଅଛି । ମାତ୍ର କେବଳ ସରକାରଙ୍କର ରେକର୍ଡ଼ ରୁମ୍‌ରେ ଅମଲାମାନଙ୍କର ସୁବିଧା ନିମିତ୍ତ ହିନ୍ଦୀଭାଷାରେ ଲିଖିତ ସ୍ୱତ୍ୱଲିପି ରଖାଯାଇଅଛି । ଗମନାଗମନର ଅସୁବିଧା କିପରି ଅମୂଳକ ଏହା ଦେଖାଇବାକୁ ମୋଟର ଗାଡିବେପାରୀ ଓ ପେଟ୍ରୋଲ ପମ୍ପ ମାଲିକ ବିଶିଷ୍ଟ ନାଗରିକ ମହମ୍ମଦ ସାଲେ ନିଜର ଖଡ଼ିଆଳରେ ଥିବା ଏକ ପେଟ୍ରୋଲ୍‌ପମ୍ପ ଦେଖିବାକୁ ନିଜ ଫୋର୍ଡ଼ ମଟରରେ ରାତିରେ ଯାଇ ପୂର୍ବଦିନ ଫେରି ଆସିଥିଲେ । ସେ ନିଜେ ଏହା କମିଟି ଆଗରେ ସାକ୍ଷ୍ୟ ଦେଲେ । ଖଡ଼ିଆଳ ଓ ଅନ୍ୟାନ୍ୟ ରାଜାଙ୍କୁ ମଧ୍ୟପ୍ରଦେଶ ଗଠନକୁ ବିରୋଧ କଲେ ପରେ, ହଇରାଣ ହେବେ ବୋଲି ନୀଳମଣି ସତର୍କ କରାଇ ଦେବାରୁ ସେମାନେ ନିଜ ମତ ପରିବର୍ତ୍ତନ କଲେ । ପଦ୍ମପୁର, ଚନ୍ଦ୍ରପୁର ରାଜା ଭବାନୀ ଶଙ୍କର ସିଂହ ନିଜ ରାଜ୍ୟ ସମ୍ବଲପୁରରେ ମିଶିବାକୁ ବଡ଼ଲାଟଙ୍କୁ ନିବେଦନ ପତ୍ର ଦେଲେ । ଫଳରେ ଖଡ଼ିଆଳ ଓ ପଦ୍ମପୁର (ମହାଦେବପାଲୀ) ଅଞ୍ଚଳ ଓଡ଼ିଶାରେ ମିଶିଲା ।

୩. ଅନ୍ୟ ଦୁଇ ଜଣ ନାୟକ ହେଲେ, ଓ.ପୁଲ୍ଲା ରେଡ଼୍‌ଡି ଓ ସେ ସମୟରେ ଅବିଭକ୍ତ ମାଡ୍ରାସ ପ୍ରେସିଡ଼େନ୍‌ସିର ଜନଗଣନା ସୁପରିଟେଣ୍ଡେଣ୍ଟ୍ ଉଇଲିୟମ ୱାଲଟର୍, ମରେ ୟିଟସ (W.W.M. Yeats) ଯେକି ୧୯୨୦ ମସିହାର ଆଇ.ସି.ଏସ୍. ଥିଲେ ।

ଆମ ଦୃଷ୍ଟିରୁ ଏ ଦୁଇଜଣଙ୍କୁ ଖଳନାୟକ ଆଖ୍ୟା ଦିଆଯାଇପାରେ । ଓ.ପୁଲ୍ଲ ରେଡ୍‌ଡ଼ି ୧୯୦୨ ମସହାରେ ଆନ୍ଧ୍ର ପ୍ରଦେଶର ରୟଲ ସୀମା ଅଞ୍ଚଳରେ ଜନ୍ମଗ୍ରହଣ କରିଥିଲେ । ୧୯୨୫ ମସିହାରେ ସେ ଆହ୍ଲାବାଦ୍‌ରୁ ଆଇ.ସି.ଏସ୍. ପରୀକ୍ଷା ଦେଇ ପ୍ରଥମ ସ୍ଥାନ ଅଧିକାର କରି କୃତକାର୍ଯ୍ୟ ହୋଇଥିଲେ । ତାଙ୍କୁ ଏହି ପଦବୀ ମିଳିବାରେ ମାନ୍ଦ୍ରାଜ୍‌ରେ ଏକଦା ମୁଖ୍ୟମନ୍ତ୍ରୀ ଥିବା ପାନ୍ନାଗାଲର୍ ରାଜା ସାହେବ ଓ ଆନ୍ଧ୍ର ବିଶ୍ୱବିଦ୍ୟାଳୟର କୁଳପତି ପୂର୍ବତନ ମନ୍ତ୍ରୀ ସାର୍ କେ.ଭି.ରେଡ୍ଡି ସାହାଯ୍ୟ କରିଥିଲେ । ତେଣୁ ଆନ୍ଧ୍ରପ୍ରଦେଶ ଗଠନ ନହୋଇଥିଲେ ମଧ୍ୟ ଆନ୍ଧ୍ର ଅଞ୍ଚଳ ପାଇଁ ଦୁର୍ବଳତା ତାଙ୍କର ରହିବା ସ୍ୱଭାବିକ ଥିଲା । ମାନ୍ଦ୍ରାଜ୍ ପ୍ରଦେଶ ଅନ୍ତର୍ଗତ ଜୟପୁର ଜମିଦାରିର ସେ ଦେଓ୍ୱାନ ଭାବରେ ଅବସ୍ଥାପିତ ହୋଇଥିଲେ । ୧୯୪୫ ମସିହାରେ ଓଡ଼ିଶା ସରକାର ମାନ୍ଦାଜ୍ ସହିତ ମିଶି ମାଛକୁଣ୍ଡ ଜଳବିଦ୍ୟୁତ୍ ଯୋଜନା, ଡୁଡୁମା କାର୍ଯ୍ୟକାରୀ କରିବାରେ ସେ ମାନ୍ଦ୍ରାଜ୍ ସରକାରଙ୍କ ତରଫରୁ କଥାବାର୍ତ୍ତା ଚଳାଇଥିଲେ ଓ ସେମାନେ ଜଳବିଦ୍ୟୁତ୍‌ରେ  ୭୦ ଭାଗ କେତେ ବର୍ଷ ପାଇବାର ବ୍ୟବସ୍ଥା କରିଥିଲେ । ଅବଶ୍ୟ ସେ ସମୟରେ ଓଡ଼ିଶାରେ ବିଦ୍ୟୁତ ଚାହିଦା ନଗଣ୍ୟ ଥିଲା । ପରେ ପୁଲ୍ଲା ରେଡ୍ଡି ୧୯୫୩ ମସିହାରେ ଆନ୍ଧ୍ରପ୍ରଦେଶ ଗଠନ ହେବା ପରେ ଏହାର ମୁଖ୍ୟଶାସନ ସଚିବ ହୋଇଥିଲେ । କେନ୍ଦ୍ରରେ ସେ ଦେଶରକ୍ଷା ସଚିବ ଭାବେ କାର୍ଯ୍ୟ କରିଥିଲେ । ଆନ୍ଧ୍ର ପ୍ରଦେଶ କୃଷି ବିଶ୍ୱବିଦ୍ୟାଳୟ ଗଠିତ ହେବା ପରେ ସେ ୧୯୬୪ରୁ ୧୯୭୨ ପର୍ଯ୍ୟନ୍ତ ପ୍ରଥମ କୁଳପତି ଥିଲେ । ୧୯୭୮ ମସିହାରେ ଆନ୍ଧ୍ର ବିଶ୍ୱବିଦ୍ୟାଳୟ ୱାଲଟିୟର୍ ତାଙ୍କୁ ସମ୍ମାନ ସୂଚକ ଡ଼ି.ଲିଟ୍ ଉପାଧି ପ୍ରଦାନ କରିଥିଲା । ତାଙ୍କର କୃତିତ୍ୱ ବର୍ଣ୍ଣନା କରିବାର ଉଦ୍ଦେଶ୍ୟ ହେଲା ଏହିପରି ଜଣେ ଉଦ୍ୟମଶୀଳ ସିଭିଲିଆନ୍‌ଙ୍କର ଚକ୍ରବ୍ୟୁହ ଭେଦକରି ନିଜର ଉଦ୍ଦେଶ୍ୟ ସାଧନ କରାଇବରେ ସକ୍ଷମ ହେବାରେ ଗଜପତି ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ରଦେବଙ୍କର ଦୂରଦର୍ଶୀ ଭୂମିକା ସ୍ମରଣୀୟ ।

ପୁଲା ରେଡ୍‌ଡ଼ିଙ୍କର ଆତ୍ମଜୀବନୀ ଭାରତୀୟ ବିଦ୍ୟାଭବନ ବମ୍ବେ ଦ୍ୱାରା ୧୯୭୮ ୦ରେ ପ୍ରକାଶିତ । ସେଥିରେ ସେ ନିଜ ଅଭିଜ୍ଞତା ବର୍ଣ୍ଣନା କରିଛନ୍ତି ଓ ଓଡ଼ିଶା ସହିତ ତାଙ୍କର ଭାବଗତ ସଂପର୍କ ନଥିବା ମଧ୍ୟ ସ୍ୱୀକାର କରିଛନ୍ତି । ପୁଲ୍ଲା ରେଡ୍‌ଡ଼ି ଜୟପୁର ଜମିଦାରିର ଦେଓ୍ୱାନ୍ ହେବା ସମୟରେ ଏହା ମାନ୍ଦ୍ରାଜ ପ୍ରଦେଶ ଓ ସମଗ୍ର ଭାରତବର୍ଷର ବୃହତ୍ତମ ଜମିଦାରି ଥିଲା । ଏହି ଜମିଦାରିର ମହାରାଜା ରାମଚନ୍ଦ୍ର ଦେବ ଅଳ୍ପ ବୟସରେ ପ୍ରାଣତ୍ୟାଗ କଲେ । ୧୯୩୦ ମସିହାରେ ତାଙ୍କ ସ୍ଥାନରେ ଗାଦି ପାଇଲେ, ତାଙ୍କର କକେଇ ବିକ୍ରମଦେବ ବର୍ମା । ସେ ଉଚ୍ଚକୋଟୀର ଓଡ଼ିଆ ଓ ତେଲୁଗୁ ସାହିତ୍ୟିକ ଥାଇ ପରିଣତ ବୟସରେ ଏ ରାଜଭୋଗର ସୁଯୋଗ ପାଇଥିଲେ । ତେଣୁ ରାଜକାର୍ଯ୍ୟ ସେ ଅତି ହାଲୁକା ଭାବରେ ଗ୍ରହଣ କରିଥିଲେ । ପୁଲ୍ଲା ରେଡ୍‌ଡ଼ିଙ୍କର ଶିକ୍ଷା, ଦକ୍ଷତା ଓ ପ୍ରଶାସନିକ ଅଭିଜ୍ଞତା

ବିଚାର କରି ସେ ତାଙ୍କ ଉପରେ ବିଶେଷ ନିର୍ଭରଶୀଳ ଥିଲେ । ଆନ୍ଧ୍ରପ୍ରଦେଶ ଗଠନ ହୋଇନଥିଲେ ମଧ୍ୟ ପୁଲ୍ଲା ରେଡ଼୍‌ଡ଼ି ଭବିଷ୍ୟତ ଆନ୍ଧ୍ରପ୍ରଦେଶର ସ୍ୱାର୍ଥ ଚିନ୍ତା କରୁଥିଲେ । ଆନ୍ଧ୍ରମାନଙ୍କର ପ୍ରଭାବ ହେତୁ ରାଜା ରାମଚନ୍ଦ୍ର ଦେବ ଜୟପୁରର ଓଡ଼ିଶାରେ ମିଶ୍ରଣକୁ ବିରୋଧ କରୁଥିଲେ । ବଡ଼ଲାଟଙ୍କୁ ବ୍ୟକ୍ତିଗତ ଭାବରେ ଏହି ମର୍ମରେ ଗୋଟିଏ ମେମୋରେଣ୍ଡମ୍ ମଧ୍ୟ ସେ ପ୍ରଦାନ କରିଥିଲେ । ସେଥିରେ ସେ ଦର୍ଶାଇଥିଲେ ଯେ, ରାଜ୍ୟର ଲୋକସଂଖ୍ୟାର ମାତ୍ର ୨/୫ ଅଂଶ ଓଡ଼ିଆ ଓ ତେଲୁଗୁମାନେ ରାଜ୍ୟ ଶାସନରେ ଭାଗୀ ଥାଇ ଦକ୍ଷତାର ସହିତ ଶାସନ ଚଳାଉଅଛନ୍ତି।  ଓଡ଼ିଆଙ୍କର ସେତେବେଳେ ଜନଗଣନାନୁସାରେ ସଂଖ୍ୟା ୧,୬୨,୦୦୦ ଥିଲେ ମଧ୍ୟ ଏହାକୁ ଭୁଲ ତଥ୍ୟ ଆଧାରରେ ମାତ୍ର ୧,୪୦,୦୦୦ ବୋଲି ଦେଖାଇ ଦିଆଯାଇଥିଲା । ବିକ୍ରମଦେବ ରାଜା ହେଲାପରେ ପୁଲ୍ଲା ରେଡ଼୍‌ଡ଼ି ତାଙ୍କୁ ପ୍ରଭାବିତ କରି ନୂତନ ଭାବରେ ୱାଲ୍‌ଟିଅର୍‌ରେ ପ୍ରତିଷ୍ଠିତ ଆନ୍ଧ୍ର ବିଶ୍ୱବିଦ୍ୟାଳୟକୁ ବାର୍ଷିକ ଏକ ଲକ୍ଷ ଟଙ୍କା ପୁନଃପୌନିକ ଅନୁଦାନ ଦିଆଯିବାର ବ୍ୟବସ୍ଥା କଲେ । ପରବର୍ତ୍ତୀ କାଳରେ ଭାରତର ରାଷ୍ଟ୍ରପତି ଭାରତରତ୍ନ ଡଃ ରାଧାକ୍ରିଷ୍ଣନ୍ ଏହି ସମୟରେ କୁଳପତି ଥିଲେ । ରାଜା ବିକ୍ରମଦେବଙ୍କର ଏହି ମହାନ ଦାନ ନିମିତ୍ତ ବିଶ୍ୱବିଦ୍ୟାଳୟ ତାଙ୍କୁ ସମ୍ମାନସୂଚକ ଡ଼ି.ଲିଟ୍ ଉପାଧି ପ୍ରଦାନ କରିଥିଲା । ଆନ୍ଧ୍ର ବିଦ୍ୱାନସଭା ମଧ୍ୟ ତାଙ୍କୁ 'କଳାପ୍ରପର୍ଣ୍ଣ' ଉପାଧିରେ ସମ୍ମାନିତ କରିଥିଲା । ୧୯୩୫ ମସିହାରେ ସାର୍ ରାଧାକ୍ରିଷ୍ଣନ୍ ବିଶ୍ୱବିଦ୍ୟାଳୟ ଛାଡ଼ିବା ପରେ ପୁଲ୍ଲା ରେଡ଼୍‌ଡ଼ି ମଧ୍ୟ କିଛି ଦିନ ଏହି ପଦବୀରେ କାର୍ଯ୍ୟ କରିଥିଲେ । ଜୟପୁରରେ ଜଳବାୟୁ ଅସ୍ୱାସ୍ଥ୍ୟକର ଥିବାରୁ ବର୍ଷାଦିନେ ୨/୩ ମାସ ଦେୱାନ ଓ ରାଜା ଆନ୍ଧ୍ରପ୍ରଦେଶର ୱାଲଟିଅରରେ ରହୁଥିଲେ ଓ ଆନ୍ଧ୍ରସାହିତ୍ୟରେ ତାଙ୍କର ବିଦ୍‌ବତ୍ତା ସ୍ୱୀକୃତ ହୋଇଥିଲା । ଓଡ଼ିଆମାନେ ବିକ୍ରମ ଦେବଙ୍କୁ ସମ୍ବର୍ଦ୍ଧନା ଦେ ଉଦ୍ଦେଶ୍ୟରେ ଦେଶମିଶ୍ରଣ କମିଟି ତରଫରୁ ବ୍ରହ୍ମପୁର ଠାରେ ଗୋଟିଏ ସଭାର ଆୟୋ କଲେ । ବିକ୍ରମଦେବ ସଂପର୍କରେ ପାରଳା ମହାରାଜା କୃଷ୍ଣଚନ୍ଦ୍ରଙ୍କର ମାମୁଁ ଥିଲେ ମହାରାଜ କୃଷ୍ଣଚନ୍ଦ୍ର ତାଙ୍କୁ ଯଥେଷ୍ଟ ସମ୍ମାନ ଓ ଆଦର କରୁଥିଲେ । ପ୍ରସ୍ତାବିତ ସମ୍ବର୍ଦ୍ଧନା ସଭାରେ ପାରଳା ମହାରାଜାଙ୍କୁ ସଭାପତି ହେବାକୁ ଅନୁରୋଧ କରାଯାଇଥିଲା ଓ ତାହା ସେ ଗ୍ରହଣ କରିଥିଲେ । ଏହାପରେ ଦେଶ ମିଶ୍ରଣରେ ଗତି ଭିନ୍ନ ମାର୍ଗ ଅବଲମ୍ବନ କଲା । ପୁଲ୍ଲା ରେଡ଼୍‌ଡ଼ୀ ଲେଖିଛନ୍ତି -

'ଜୟପୁର ଓଡ଼ିଶାକୁ ଯାଉ ଓ ମାନ୍ଦ୍ରାଜ୍ ପ୍ରଦେଶର ଅଙ୍ଗ ହୋଇ ନରହୁ ବୋଲି ଜନମତ ଦୃଢ଼ ହେବାରେ ଲାଗିଲା । ମହାରାଜ (ବିକ୍ରମଦେବ) ନିଜ ସଂପର୍କୀୟ ଭଣଜା ପାରଳାଖେମୁଣ୍ଡି ମହାରାଜାଙ୍କ କଥାରେ ପରିଚାଳିତ ହୋଇ ଏହି ଉଦ୍ୟମରେ ଭାଗୀହେଲେ । ଫଳରେ ୧୯୩୬ ମସିହାରେ ଗଠିତ ନୂତନ ଓଡ଼ିଶା ପ୍ରଦେଶରେ ଜୟପୁର ଜମିଦାରିର

ମିଶ୍ରଣ ହେଲା ।" ଏହା ପରେ ପୁଲ୍ଲା ରେଡ୍‌ଡ଼ି ନିଜ ମୂଳ ପଦବୀ ଆଇ.ସି.ଏସ୍.କୁ ଲେଉଟିଗଲେ ।

୪. ଶେଷରେ ୧୯୩୧ ଜନଗଣନା ସୁପରିଟେଣ୍ଡ ଇଟ୍‌ସ୍‌ଙ୍କ କଥା । ବ୍ରହ୍ମପୁରରେ ଜୟପୁର ମହାରାଜା ବିକ୍ରମଦେବଙ୍କୁ ଅଭ୍ୟର୍ଥନା ଦେବା ଅବସରରେ ଜଣାପଡ଼ିଲା ଯେ, ମାନ୍ଦ୍ରାଜ ପ୍ରଦେଶର ରାଜପୁରୁଷମାନେ ଜାଣିଶୁଣି ଓଡ଼ିଆମାନଙ୍କ ସଂଖ୍ୟା ହ୍ରାସ କରାଇବାରେ ଲାଗିଛନ୍ତି । ସେତେବେଳେ ଗଞ୍ଜାମ ଜିଲ୍ଲା କହିଲେ ବର୍ତ୍ତମାନର ଅବିଭକ୍ତ ଗଞ୍ଜାମ ଜିଲ୍ଲା (ଗଜପତି ଜିଲ୍ଲା ସହିତ) ଫୁଲବାଣୀ ଜିଲ୍ଲା ଓ ଆନ୍ଧ୍ର ପ୍ରଦେଶର ଶ୍ରୀକାକୁଳମ୍ ଜିଲ୍ଲାକୁ ବୁଝାଇଥିଲା । ଦେଖାଗଲା ଯେ ୧୯୦୧ ମସିହାରେ ମୋଟ ଲୋକସଂଖ୍ୟା ୧୬,୮୮,୫୯୪ ମଧ୍ୟରୁ ଓଡ଼ିଆଭାଷୀ ଥିଲେ ୧୨,୭୪,୯୭୫ ତେଲୁଗୁ, ୩,୪୨,୯୧୦ । ୧୯୧୧ ଜନଗଣନା ଏହା ମୋଟ ୧୮,୭୦,୮୨୬ ରୁ ଓଡ଼ିଆ ୯,୫୮,୭୭୧ ତେଲୁଗୁ ୮,୩୯,୪୪୯ । ୧୯୨୧ ଜନଗଣନାରେ ସେମିତି ମୋଟ ୧୮,୩୬,୫୬୨ ମଧ୍ୟରୁ ଓଡ଼ିଆ ହେଲେ ୯,୩୧,୭୯୦, ତେଲୁଗୁ ୮,୪୭,୫୫୦ । ଓଡ଼ିଶା ପ୍ରଦେଶ ଗଠନର କେନ୍ଦ୍ରସ୍ଥଳ କଟକରେ ଜନନାୟକମାନଙ୍କୁ ଏହି ମାରାତ୍ମକ ତଥ୍ୟ ଜଣା ନଥିଲା । ପ୍ରଥମେ ପଣ୍ଡିତ ସତ୍ୟନାରାୟଣ ରାଜଗୁରୁ The Census errors in Ganjam ଶୀର୍ଷକ ଗୋଟିଏ ପୁସ୍ତିକା ପ୍ରକାଶ କରି ଏହାକୁ ସରକାରଙ୍କୁ ପଠାଇଲେ । ପାରଳା ମହାରାଜାଙ୍କ ପ୍ରୋତ୍ସାହନରେ ଜନଗଣନା ତଥ୍ୟ ସାମ୍ପ୍ରତିକ ସମୟରେ ଓଡ଼ିଆମାନଙ୍କ ତରଫରୁ ମଧ୍ୟ ସଂଗ୍ରହ ଚାଲିଲା । ଏହାକୁ ଏକ ସମାନ୍ତରାଳ ଜନଗଣନା ଆଖ୍ୟା ଦେଇ ଇଟିସ୍ ସାହେବ ବିରୋଧ କଲେ । ତତ୍‌କାଳୀନ ଗଞ୍ଜାମର ଜନନାୟକ ଶଶିଭୂଷଣ ରଥ, ଭୁବନେଶ୍ୱର ରଥ, ଦିଗମ୍ବର ରଥ, ଗୋରାଚାନ୍ଦ ପଟ୍ଟନାୟକ, ନିତ୍ୟାନନ୍ଦ ପଟ୍ଟନାୟକ ଆଦି ଏଥିରେ ସଂପୂର୍ଣ୍ଣ ସହଯୋଗ କଲେ । ପରେ ଗଞ୍ଜାମର କଲେକ୍ଟର ହୋଇଥିବା ଡ଼େପୁଟି ଅନନ୍ତରାମ ରଥ ମଧ୍ୟ ପାରଳାର ଦେୱାନ ଭାବେ ନିଯୁକ୍ତି ପାଇଥିବାରୁ ଏଥିରେ ସହାୟକ ହେଲେ । ପାରଳାଖେମୁଣ୍ଡି କର୍ମୀମାନେ ଯଥା :- ଶ୍ୟାମସୁନ୍ଦର ଗନ୍ତାୟତ, ହୀରାଲାଲ୍ ବର୍ଦ୍ଧନ ପ୍ରଭୃତି ପଣ୍ଡିତ ସତ୍ୟନାରାୟଣଙ୍କର ନେତୃତ୍ୱରେ ବିଭିନ୍ନ ଗାଁମାନ ବୁଲି ଗାଁର ମୁଖିଆ ଲୋକମାନଙ୍କୁ ଓଡ଼େନେଲ୍ କମିଟି ଆଗରେ ଜାତି ଓ ଭାଷା ବିଷୟକ ତଥ୍ୟ କିପରି ଉପସ୍ଥାପିତ କରିବେ, ତାହା ତାଲିମ୍ ଦେଲେ । ତେଲୁଗୁ ରାଜଭାଷା ଥିଲା । ତେଲୁଗୁ କର୍ମଚାରୀମାନେ ତେଲୁଗୁରେ ପ୍ରଶ୍ନ ପଚାରୁଥିଲେ, ଉତ୍ତର ସେମିତି ତେଲୁଗୁରେ ଆସୁଥିଲା । ଉଦାହରଣ ସ୍ୱରୂପ ଧୋବାର ତେଲୁଗୁ ପ୍ରତିଶବ୍ଦ ସାକିଲି । ଓଡ଼ିଆ ଧୋବା ନିଜ ଜାତି ତେଲୁଗୁରେ କହିବାରୁ ସେମାନଙ୍କୁ ତେଲୁଗୁ ଭାଷାଭାଷୀ ବୋଲି ଲେଖାଯାଉଥିଲା । ଏମିତି ଅନେକ ଜାତିବର୍ଣ୍ଣର ନାମ ଭାଷା ଦୃଷ୍ଟିରୁ

ତ୍ରୁଟିପର୍ଣ୍ଣଭାବରେ ଦର୍ଶାଯାଇଥିଲା । ଏକ ସମାନ୍ତରାଳ ଜନଗଣନା କରି ସରକାରୀ କାର୍ଯ୍ୟରେ ବାଧା ସୃଷ୍ଟିକରିବା ଅଭିଯୋଗ ମିଳିବାରୁ ସୁପରିଟେଣ୍ଡେଣ୍ଟ ଇଟିସ୍ ଗଞ୍ଜାମ କଲେକ୍ଟର ଆର୍.ସି.ଏସ୍. ବେଲ୍ (R.C.C. Bell) ଙ୍କ ସହିତ ପାରଳାଖେମୁଣ୍ଡିରେ ପହଞ୍ଚିଲେ । ଅନେକ ଓଡ଼ିଆଭାଷୀ ମାତୃଭାଷା ଭୁଲି ଚାକିରିବାକିରି କ୍ଷେତ୍ରରେ ସୁବିଧା ସୁଯୋଗ ଉପଭୋଗ ନିମିତ୍ତ ମାତୃଭାଷା ତେଲୁଗୁ ଲେଖାଉଥାନ୍ତି । ୧୯୦୩ ମସିହାରେ ଉତ୍କଳ ସମ୍ମିଳନୀ ପ୍ରଥମେ ଭାଷା ସୂତ୍ରରେ ଓଡ଼ିଆ ପ୍ରଦେଶ ଗଠନ ଦାବି ଫଳରେ ଆନ୍ଧ୍ରମାନେ ସଚେତନ ହୋଇ ଓଡ଼ିଆଙ୍କର ସଂଖ୍ୟା ଯେ ନିୟମିତ ଭାବେ କମାଇ ଆସୁଅଛନ୍ତି, ଏହା ତାଙ୍କୁ ଜଣାଇ ଦେଲା । ଇଟସ୍‌ଙ୍କୁ ମଧ୍ୟ କିପରି ଓଡ଼ିଆଭାଷୀମାନଙ୍କୁ ତେଲୁଗୁ ବୋଲି ଗଣାଯାଉଛି, ତାହା କ୍ଷେତ୍ରଉପରେ ଦେଖାଇ ଦିଆଗଲା । ଧୋବାମାନଙ୍କ ପରି ଗଞ୍ଜାମ ଓ ବିଶାଖାପାଟଣା ଜିଲ୍ଲାରେ ଓଡ଼ିଆ, କୁମ୍ଭାର, ଲିଆରି, ଓଡ଼ିଆ (ଚଷା) ଜାତିଗୁଡ଼ିକ କୁମ୍ଭାର ନେଇଲୁ, ଓଡ୍‌ଡ଼ି ରୂପେ ଲେଖାଯାଇଥାନ୍ତି । ଇଟିସ୍ ପ୍ରତିକାର କରିବା ଅବସ୍ଥାରେ ଥିଲେ ମାତ୍ର ସେ ଓଡ଼ିଆମାନଙ୍କର ଯୁକ୍ତି ଗ୍ରହଣ ନକରି ତାଙ୍କର ଚୂଡ଼ାନ୍ତ ସେନ୍‌ସେସ୍ ରିପୋର୍ଟରେ ଓଡ଼ିଆ ବିରୋଧୀ ମନ୍ତବ୍ୟ ଲେଖିଗଲେ। ସେତିକି ନୁହେଁ, ଉଡ଼େନେଲ୍ କମିଟି ଆଗରେ ସାକ୍ଷ୍ୟ ଦେଇ ପଣ୍ଡିତ ସତ୍ୟନାରାୟଣ ୧୫ଶ ଶତାବ୍ଦୀର ଆନ୍ଧ୍ରରୁ ପ୍ରାପ୍ତ ଗୋଟିଏ ତାମ୍ର ଅଭିଲେଖ ଶ୍ଳୋକରୁ ଉଦ୍ଧୃତ କଲେ -

"ପଶ୍ଚାତ୍ ପୁରସ୍ତାର୍ଦପ ଯଶ୍ୟ ସ୍ୟାତ୍ରେମହାରାଷ୍ଟ୍ର
କଳିଙ୍ଗ ସଙ୍କୌ
ଅବାଗୁଦକ୍ ପାଣ୍ଡ୍ୟକ କାନ୍ୟକୁବ୍‌ଜୌ ଦେଶା ସ ତତ୍ରାସ୍ତି
ତୈଲଙ୍ଗନାମା"

ଅର୍ଥାତ ଯେଉଁ ଦେଶର ପଶ୍ଚିମରେ ଓ ପୂର୍ବଭାଗରେ ଯଥାକ୍ରମେ ମହାରାଷ୍ଟ୍ର ଓ କଳିଙ୍ଗ ଅବସ୍ଥିତ, ପୁଣି ଯେଉଁ ଦେଶର ଦକ୍ଷିଣ ଓ ଉତ୍ତରରେ ଯଥାକ୍ରମେ ପାଣ୍ଡ୍ୟ ଓ କାନ୍ୟକୁବ୍‌ଜ ନାମକ ଦେଶ ଅବସ୍ଥିତ, ସେହି ମଧ୍ୟବର୍ତ୍ତୀ ରାଷ୍ଟ୍ର, ତୈଲଙ୍ଗ ନାମରେ ପରିଚିତ ବୋଲି ପ୍ରମାଣ କରି କଳିଙ୍ଗ ଆନ୍ଧ୍ର ଦେଶଠାରୁ ପୃଥକ ଥିବା ଦେଖାଇଲେ । ଇଂରେଜମାନେ ଅଧିକାର କଲାରୁ ଓ ତତ୍‌ପୂର୍ବରୁ ଏହି ଅଞ୍ଚଳ ବାହମନି ରାଜ୍ୟର ଅନ୍ତର୍ଗତ ଥିବାରୁ ବାହାରୁ ତେଲୁଗୁମାନେ ଆସି ଏଠାରେ ବାସ ଜମେଇଅଛନ୍ତି ଓ ଓଡ଼ିଆମାନଙ୍କୁ ଅନୁର୍ବର ଜଙ୍ଗଲ ଆଡ଼କୁ ତଡ଼ି ଦେଇଛନ୍ତି, ଏହା ମଧ୍ୟ ସାବ୍ୟସ୍ତ ହେଲା । ଗଞ୍ଜାମର ତେଲୁଗୁମାନଙ୍କ ତରଫରୁ କେ.ଭି.ଆପ୍‌ପାରାଓ, ମ୍ୟୁନିସପାଲଟି ଚେୟାରମ୍ୟାନ, ଅଧାପକ ପାନ୍ନାଦି ଜଗନ୍ନାଥ ସ୍ୱାମୀ ଆଦି ଓଡ଼ିଆ ସପକ୍ଷରେ ସାକ୍ଷ୍ୟ ଦେଲେ । ଓଡ୍‌ନେଲ୍ କମିଟିର ତିନିଜଣ ସଭ୍ୟଙ୍କ ମଧ୍ୟରୁ ମେହେଟା ଓ ଫୁକାନ ଓଡ଼ିଶାର ଯୁକ୍ତି ଗ୍ରହଣ କଲେ । ଯେତେବେଳେ ଓଡ଼େନେଲ୍

ଏ ଅଞ୍ଚଳ ପ୍ରସ୍ତାବିତ ଓଡ଼ିଶା ରାଜ୍ୟରେ ନ ମିଶିବାକୁ ମତ ପ୍ରକାଶ କଲେ, ସେ ଦୁହେଁ ବିରୋଧ ମତ ଦେଲେ । ଦୁଃଖର କଥା ଓଡ଼େନେଲ୍‌ଙ୍କର ମତ ଇଟିସ୍‌ଙ୍କ ଦ୍ୱାରା ବିଶେଷଭାବେ ପ୍ରଭାବିତ ହୋଇଥିଲା । ଯୁକ୍ତିଯୁକ୍ତ ତଥ୍ୟ ଓ ପ୍ରମାଣ ତାଙ୍କୁ ଦର୍ଶାଯାଇଥିବା ସତ୍ତ୍ୱେ ଇଟିସ୍ ଓଡ଼ିଶା ବିରୁଦ୍ଧରେ ସାକ୍ଷ୍ୟ ଦେଲେ ଓ ଦାଖଲ ମାନଚିତ୍ରକୁ ବିକୃତ କରି ଉପସ୍ଥାପିତ କଲେ । ଏହିପରି ଜଣେ ପକ୍ଷପାତଯୁକ୍ତ ଗୋରା ସିଭିଲିଅନ୍ ନଥିଲେ, ଓଡ଼ିଆ ବାହାରେ ଭାଇଜାଗ୍ ଜିଲ୍ଲାରେ ବର୍ତ୍ତମାନ ରହିଯାଇଥିବା ଅଂଶ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଭାବେ ମାନ୍ଦ୍ରାଜ୍ ପ୍ରଦେଶରୁ ଅଣାଯାଇ ପାରିଥାନ୍ତା । ପଣ୍ଡିତ ସତ୍ୟନାରାୟଣ ରାଜଗୁରୁଙ୍କ ଆତ୍ମଜୀବନୀ 'ମୋ ଜୀବନ ସଂଗ୍ରାମ'ରୁ ଇଟସ୍ କରିଥିବା ଚକ୍ରାନ୍ତ ସ୍ପଷ୍ଟ ଜଣାଯାଏ । ଆମ ରାଜ୍ୟର ସୌଭାଗ୍ୟ ଇଟସଙ୍କର କୁଚକ୍ର ପାରଳା ମହାରାଜା ଆଶିଂକ ଭାବରେ ପଣ୍ଡ କରିବାକୁ ପରବର୍ତ୍ତୀକାଳରେ ସକ୍ଷମ ହୋଇଥିଲେ । ପୁଲ୍ଲା ରେଡ଼୍‌ଡ଼ି ଓ ଇଟ୍‌ସି ମହାରାଜା କୃଷ୍ଣଚନ୍ଦ୍ରଙ୍କ ବିରାଟ ବ୍ୟକ୍ତିତ୍ୱ ଆଗରେ ବିଶେଷ କ୍ଷତି କରିବାକୁ ସକ୍ଷମ ହୋଇ ନଥିଲେ ।



# ପାରଳାର ଅନାଲୋଚିତ ପ୍ରତିଭା

ପାରଳାଖେମୁଣ୍ଡି ନଗର ପରିଷଦ ସୀମା ମଧ୍ୟରେ ପୂର୍ବ ପ୍ରବେଶ ଦ୍ୱାର ନିକଟରେ ଏକ ସମୟରେ ଗୋଟିଏ ଫଳକ ଦେଖାଯାଉଥିଲା । ସେଥିରେ ଲେଖାଥିଲା 'ବନ୍ଦୀ ଓଡ଼ିଆ' ର କବିଙ୍କ ପଂକ୍ତି -:

"ପଡ଼ିବ ଅଗ୍ରେ, ଚାରୁ ଶସ୍ୟ ଶାମଳା-
ଧରଣୀ କାବ୍ୟକଳା ପୂର୍ଣ୍ଣ ପାରଳା,
ଉତ୍କଳ ଶାନ୍ତିଦେବୀ ବିହାର ସ୍ଥାନ
ପାରଳା ବନ କୁଞ୍ଜକେଳି ଆରାମ"

ମାନ୍ଦ୍ରାଜ ଏନାମେଲ କମ୍ପାନୀକୁ ଲେଖି ଏ ଫଳକ ଏନାମେଲ କରାଇବାର ଉଦ୍ୟମ ହେଲା ନାହିଁ । ଖରା ବରଷାରେ ଏହା ଭାଙ୍ଗି ଝଡ଼ି ପଡ଼ିଲା । ସେହି ପାରଳାର ପ୍ରସିଦ୍ଧି ପ୍ରାଚୀନବର୍ଣ୍ଣନାରେ 'ଶୈଳ ସ୍ରୋତ ସରେ ସୁରମ୍ୟ', 'ପୁଷ୍ପ ଫଳ ଶସ୍ୟ ଶାଳିନୀ', 'ଅଚପଳ ଯହିଁ ଚପଳ ଚପଳା' 'କମଳା ଲୀଳା ଭୂମି ଶସ୍ୟ ଶ୍ୟାମଳା' ସୁବର୍ଣ୍ଣ-ପ୍ରସୁ ଶୋଭାଖଣି' 'ବୀର ଅବନୀ', 'ବାଣୀ ଧରଣୀ', ସୌଭାଗ୍ୟ ବଶତଃ କିଛି ସମୟ ଏହି ବୀରଅବନୀ ବାଣୀ ଧରଣୀରେ କଟାଇବା ଅବସରରେ କୀର୍ତ୍ତି କିରୀଟ ପାରଳା ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର, ତାଙ୍କର ପିତା ରାଜା ଗୌରଚନ୍ଦ୍ରଙ୍କ ବ୍ୟତୀତ କବି କଳହଂସ ଗୋପାଳକୃଷ୍ଣ, ଭାଷାବିଜ୍ଞାନୀ ପଣ୍ଡିତ ଗୋପୀନାଥ ନନ୍ଦଶର୍ମା, ପ୍ରାବନ୍ଧିକ ଶ୍ୟାମସୁନ୍ଦର, ରାଜକବି ପଦ୍ମନାଭ ନାରାୟଣ, କବିଚନ୍ଦ୍ର ରଘୁନାଥ ପରିଚ୍ଛା, ସର୍ବପ୍ରାଚୀନ କବ ହରକୃଷ୍ଣ ମହାରଣା, କବିଭୂଷଣ ଗୋପୀନାଥ ପାତ୍ର, ଗୀତିକାର ଗୌରହରି ପରିଚ୍ଛା,ସଙ୍ଗୀତ ଶିରୋମଣୀ ହରିବନ୍ଧୁ ବେବର୍ତ୍ତା, କୃଷ୍ଣପ୍ରେମୀ ଦ୍ୱିଜ ପଦ୍ମନାଭ, ଗାୟକ ଶିରୋମଣୀ ଆପନ୍ନା ପାଣିଗ୍ରାହୀ, ଦେଶପ୍ରେମୀ ଆପନ୍ନା ପଣ୍ଡା ଓ ଦେଶଭକ୍ତ ଆପନ୍ନା ପରିଚ୍ଛାଙ୍କର ସଂକ୍ଷିପ୍ତ ଜୀବନୀ ସଂଗ୍ରହ କରିପାରିଥିଲି, ପ୍ରବନ୍ଧାକାରରେ ଏହା ପ୍ରକାଶିତ ହେଲା । ପରେ ପୁସ୍ତକାକାରରେ ୧୯୯୧ ମସିହାରେ 'ପାରଳା ପ୍ରତିଭା' ନାମରେ ପ୍ରକାଶିତ ହୋଇଥିଲା । ପୁସ୍ତକ ପାଠ କରି ବିସ୍ମୃତ ପ୍ରାୟ

ଏହି କବି, ଲେଖକ ଓ ଜନନାୟକମାନଙ୍କର କୃତି ଆଲୋଚନା, ଅପ୍ରକାଶିତ ରଚନା ସଂଗ୍ରହ ଓ ପ୍ରକାଶିତ ପୁସ୍ତକମାନଙ୍କର ସମାଲୋଚନା ଓ ଲୋକପ୍ରିୟତା ଦିଗରେ ସଂଘବଦ୍ଧ ଉଦ୍ୟମ ମୋର ଉଦ୍ଦେଶ୍ୟ ଥିଲା । ପୁସ୍ତକଟିର ଗଜପତି ଜିଲ୍ଲାରେ ପ୍ରସାର ଆଶାନୁରୂପ ହୋଇ ପାରିଲା ନାହିଁ । ଅବଶ୍ୟ ଏହା ପରେ ଶ୍ରଦ୍ଧେୟ ଅଧ୍ୟାପକ ଡକ୍ଟର ହରିହର କାନୁନଗୋଙ୍କ ପରି ଅନେକ ଉତ୍ସାହୀ ସାହିତ୍ୟିକ ଏ ଦିଗରେ କାର୍ଯ୍ୟ କରୁଥିବା ଜଣା ପଡ଼ିଲା ।

ପାରଳା ପ୍ରତିଭାର ୨ୟ ଭାଗରେ ପୁରୁଣା ଯେଉଁ କେତେ ଜଣ ବାଦ ପଡ଼ିଥିଲେ ସେମାନଙ୍କର ଓ ବିଂଶ ଶତାବ୍ଦୀର ନୂତନ ପ୍ରତିଭାର ଆଲୋଚନା ଉଦ୍ଦେଶ୍ୟ ଥିଲା । ମୋର ଆଶା ଓଡ଼ିଶାର ୨ୟ ପୁରାତନ କଲେଜରେ ଓଡ଼ିଆରେ ଉପାଧ୍ୟୁତ୍ତର ଶ୍ରେଣୀ ଖୋଲିବା ଫଳରେ ଏହି ପ୍ରତିଭାଧରମାନଙ୍କର ପୂର୍ଣ୍ଣାଙ୍ଗ ଜୀବନୀ ପାଠକମାନଙ୍କ ଦୃଷ୍ଟିକୁ ଆସିବ ।

ଯେଉଁମାନଙ୍କର ନାମ ସେ ସମୟରେ ସଂଗ୍ରହ କରି ସେମାନଙ୍କର କୃତି ଓ ଜୀବନୀ ଲେଖିବାର ପ୍ରୟାସରେ ଥିଲି ସେମାନଙ୍କ କଥା ଲେଖୁଛି ।

୧୯୩୫ ମସିହାରେ ପ୍ରକାଶିତ 'ଉତ୍କଳ ମିଳନ' କାବ୍ୟରେ କବିଶେଖର ଚିନ୍ତାମଣି ମହାନ୍ତି ଲେଖିଥିଲେ

ବୀରପୁତ୍ର ବୈଜ୍ଞାନିକ ଯୁଗଳ କିଶୋର
ଯୁଝିଛି ସେ ମସୀ ଯୁଦ୍ଧେ ସେନାପତି ରୂପେ,
ପାରଳାର ହିତୈଷିଣୀ ଆଦର୍ଶ ସମାଜ,
କରିଅଛି ମୋ ନିମିତ୍ତେ ବହୁ ଲେଖାଲେଖି
ବିପକ୍ଷର ଯୁକ୍ତି ଅସ୍ତ୍ର ଖଣ୍ଡ ଖଣ୍ଡ କରି,
କାଟି ଅଛି ପ୍ରତି ଅସ୍ତ୍ରେ ଦକ୍ଷରଥୀ ପ୍ରାୟ ।

'ଯୁଗଳ ମାଷ୍ଟ୍ରେ' ନାମରେ ପରିଚିତ ପାରଳା କଲେଜର ପଦାର୍ଥ ବିଜ୍ଞାନ ଅଧ୍ୟାପକ ଏହି ଯୁଗଳ କିଶୋର ପାଣିଗ୍ରାହୀ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କୁ ସ୍ମାରକପତ୍ର ଆଦି ଚିଠାରେ ସାହାର୍ଯ୍ୟ କରୁଥିଲେ ଓ ତାଙ୍କର ଅର୍ଥ - ତହବିଲଦାର ଭାବରେ ତାଙ୍କ ସାଙ୍ଗରେ ଗୋଲଟେବୁଲ ବୈଠକ ସମୟକୁ ବିଲାତ ଯାଇଥିଲେ । (ପଣ୍ଡିତ ଯୁଗଳ କିଶୋର ପାଣିଗ୍ରାହୀ ବିଦ୍ୱାନ ସାମ୍ବାଦିକ ଓ ସ୍ୱାଧିନତା ସଂଗ୍ରାମୀଙ୍କଠାରୁ ଏ ମହାଶୟ ଭିନ୍ନ ଓ ବୟସ୍କ) । ଗଞ୍ଜାମ ଭ୍ରମଣରେ ସେହି କବିଶେଖର ଲେଖିଥିଲେ-

ଆହେ ଗୌରଚନ୍ଦ୍ର ପାତ୍ର ଉତ୍ସାହୀ ଯୁବକ
ପେଟଲାଗି ତୁମ୍ଭର ତ ନାହିଁ ଚିନ୍ତାଦକ

ସ୍ୱାଧିନତା ବିକ୍ରିକଲ କିମ୍ବା ଅକାରଣେ
ପାତ୍ର ହୋଇ ଅପାତ୍ର ଯେ ହୋଇଲ ଆପଣେ ।
ଏବେ ସୁଦ୍ଧା ବେଳ ଅଛି ରହ ନାହିଁ ବସି
ଯଥା ଶକ୍ତି କାର୍ଯ୍ୟ କରି ହୁଅ ହେ ଯଶସ୍ୱୀ ।

(ଖ୍ରୀ ୧୯୦୬)

ଏ ଦୁଇ ଜଣଙ୍କର ସମସାମୟିକ କାହାକୁ ମୁଁ ପାଇପାରିଲି ନାହିଁ । ସେମାନଙ୍କର ବଂଶଧରମାନଙ୍କଠାରୁ ତାଙ୍କର ଜୀବନୀ ଓ କୃତି ସଂଗ୍ରହ କରାଯାଇପାରେ । ଅନ୍ୟମାନଙ୍କ ମଧ୍ୟରେ ସମୟାନୁକ୍ରମେ

**୧. କାମାକ୍ଷା ପ୍ରସାଦ ପଣ୍ଡା (୧୮୭୮-୧୯୩୪)**

ଦେବୀ ସାଧକ ଥାଇ କାମାକ୍ଷୀ ସ୍ତୋତ୍ର ରତ୍ନମାଳା, ଭାଗ୍ୟାଷ୍ଟକ, ଅଭୟାଷ୍ଟକ, ଧନାଷ୍ଟକ, ବ୍ରତ ବିଧାନ, ବିବିଧ ଓଷା ଚରିତ, କାମାକ୍ଷା ପୁରାଣ ରଚନା କରିଥିଲେ । ପୁସ୍ତକମାନ ଗଜପତି ପ୍ରେସରେ ଛପା ବୋଲି କୁହାଯାଉଥିଲେ ମଧ୍ୟ ଗୋଟିଏ ବହି ସୁଦ୍ଧା ମିଳି ନ ଥିଲା ।

**୨. ମଦନମୋହନ ନନ୍ଦ ଶର୍ମା (୧୮୮୧-୧୯୬୦)**

ସୁଭକ୍ତ କର୍ଣ୍ଣାମୃତ, ଶରଦ ରାସୋତ୍ସବ, ରାଧାମାଧବ ଚଂପୁ, ଭିଷଗ ଚୂଡ଼ାମଣି ଆଦି ଏହାଙ୍କର ରଚନା ।

**୩. ନୀଳମଣି ରଥ ଶର୍ମା (୧୮୮୩-୧୯୨୦)**

**୪. ଅପର୍ଣ୍ଣା ଘଣ୍ଟାୟତ (୧୮୮୫-୧୯୬୫)**

ରଚନା- କର୍ଣ୍ଣ ଦାନ ପରୀକ୍ଷା, ଦଣ୍ଡ ଚଢ଼େଇଆ ସୁଆଙ୍ଗ, ଚୋର ସୁଆଙ୍ଗ, ରତ୍ନାକର ଦସ୍ୟୁ, ବୃନ୍ଦାବତୀ ହରଣ ଲୀଳା, ଗୋସିଂହ ବଧ ନାଟକ, ମହିଷାସୁର ବଧ ନାଟକ ।

**୫. ବିନାୟକ ପାଢ଼ୀ (୧୮୮୭-୧୯୬୨)**

ଅବସର ପ୍ରାପ୍ତ ପୁଲିଶ ଇନସ୍‌ପେକ୍ଟର ଓ ସ୍ୱନାମଧନ୍ୟ ଆଇ.ଜି. ରାମକୃଷ୍ଣ ପାଢ଼ୀଙ୍କର ପିତା ଅଭିଧାନକାର । ରାମକୃଷ୍ଣ ଅଭିଧାନ, ଆନନ୍ଦ ଅଭିଧାନ, ଜ୍ୟୋତିର୍ମୟୀ ଅଭିଧାନ (ଇଂରେଜି-ଓଡ଼ିଆ), 'କୁନି ଶବ୍ଦମାଳା', 'ବିଦ୍ୱାନ ରାମକୃଷ୍ଣ' ଏହାଙ୍କର ରଚନା ।

**୬. ସୀମାଦ୍ରୀ ପଟ୍ଟନାୟକ (୧୮୮୫-୧୯୬୨)**

ରଚନା-ପୃଥ୍ୱୀରାଜ, ବୀରଶ୍ରୀ ଅନଙ୍ଗଭୀମଦେବ ନାଟକ, ଚୂଡ଼ଙ୍ଗଦେବ, ଖାରବେଳ ଐର, ବୀରଶ୍ରୀ କପିଳେନ୍ଦ୍ରଦେବ, ଯଯାତିକେଶରୀ, ଉତ୍କଳ ଚନ୍ଦ୍ରୋଦୟ ନାଟକ ।

**୭. ଚକ୍ରପାଣି ବେବର୍ତ୍ତା (୧୮୯୨-୧୮୭୦)**

ରଚନା-ଇପସିତ, ଛାୟା କବିତା ।

**୮. ନାରାୟର ଦାସ ବାବାଜୀ (୧୮୯୪-୧୯୭୯)**

ରଚନା-ଭବତରଣୋପାୟ (କବିତା)

**୯. ଭାଗୀରଥୀ ପଣ୍ଡା -**

ଘର ଅମରାଶାସନ, ତାଳସାର ଶାସ୍ତ୍ର ପ୍ରଣେତା, ମୃଦଙ୍ଗ ବାଦକ । ସହରର ବାସିନ୍ଦା ଆପନ୍ନା ପାଢ଼ୀଙ୍କ ସହିତ ମିଶି ସେ ମୃଦଙ୍ଗ ବାଦ୍ୟ କୀର୍ତ୍ତନ ଗ୍ରାମେ ଗ୍ରାମେ ଲୋକପ୍ରିୟ କରାଇ ପାରିଥଲେ ।

**୧୦. ପଣ୍ଡିତ ଗୋବିନ୍ଦ ଦାସ ବିଦ୍ୱାନ (୧୯୦୧-୧୯୭୪)**

ଇଷ୍ଟର ପାରଳା କଲେଜର ସଂସ୍କୃତ ଓ ଓଡ଼ିଆ ଅଧ୍ୟାପକ ଓ ପରେ ହାଇସ୍କୁଲ ଶିକ୍ଷକ । ଉତ୍କଳ ମହାରଥୀ, ବିଦୁର ତାଙ୍କର ଲୋକପ୍ରିୟ ରଚନା । 'ମୁଁ କିଏ' (ଅନୁବାଦ) ମଧ୍ୟ ତାଙ୍କ ଲେଖା ।

**୧୧. ଗୋପୀନାଥ ରଥ (୧୯୦୭)**

ହାଇସ୍କୁଲ ଶିକ୍ଷକ । ଓଡ଼ିଆ ବ୍ୟାକରଣର ତୁଳନାତ୍ମକ ଅଧ୍ୟୟନ ଓ ବ୍ୟାକରଣ ଦର୍ପଣ ତାଙ୍କର କୃତି ।

**୧୨. ପାର୍ବତୀ ବେବର୍ତ୍ତା (୧୯୦୭-୧୯୬୦)**

ରଚନା-ଲୋତକ ଧାରା

**୧୩. ରାଧାକୃଷ୍ଣ ପାଠୀ (୧୮୯୮-୧୯୫୭)**

ରଚନା-ଶ୍ରୀଭକ୍ତି ସାରୋଦ୍ଧାର

**୧୪. ମୃକୁନ୍ଦ ପାଢ଼ୀ**

ଅବସରପ୍ରାପ୍ତ ଶିକ୍ଷ ନିର୍ଦ୍ଦେଶକ ସଦାନନ୍ଦ ପାଢ଼ୀଙ୍କର ପିତା । ରାଧାକୃଷ୍ଣ ଲୀଳାମୃତ (?) ତାଙ୍କର ରଚନା । ବୈଷ୍ଣବ ଜଗତରେ ଏ ଗ୍ରନ୍ଥର ବହୁତ ଆଦର ଥିଲା ।

**୧୫. ତାଙ୍କର ସୁଯୋଗ୍ୟ ସନ୍ତାନ ଇଂ. ସଦଂନନ୍ଦ ପାଢ଼ୀ (୧୯୦୮-୧୯୫୭)**

ବୃତ୍ତିରେ ଇଞ୍ଜିନିଅର ଥାଇ ଅବସର ସମୟରେ ଜ୍ୟୋତିଷ ଚର୍ଚ୍ଚା କରୁଥିଲେ । 'ଦଣ୍ଡବତ ଦଣ୍ଡବତ ପବିତ୍ର ପାରଳା, ପ୍ରାଚୀନ ଜ୍ୟୋତିର୍ବିଦ୍ୟାରେ ଥିଲୁ ତୁ କୁଶଳା' ଏହି ଉକ୍ତି ତାଙ୍କଠାରେ ସଫଳ ହୋଇଥିଲା । ସାରଳା ସାହିତ୍ୟରେ ଜ୍ୟୋତିଃଶାସ୍ତ୍ର ଲିଖିତ ବେଳଘଡ଼ିର ଉପଯୋଗିତା ଓ ପ୍ରକୃତି ନିର୍ଣ୍ଣୟର ଗବେଷଣା କରି ସ୍ୱଜ୍ଞାନକୁ 'ଶ୍ରୀକୃଷ୍ଣଙ୍କ ଜାତକ' ଓ ଅନ୍ୟାନ୍ୟ ପ୍ରବନ୍ଧରେ ପ୍ରକାଶ କରୁଥିବା ସମୟରେ ସେ ପରଲୋକ ଗମନ କଲେ । ଆଡ଼ଭୋକେଟ ଗୋପୀନାଥ ପାଢ଼ୀ ତାଙ୍କର ଜାମାତା ।

**୧୬. ସୀମାଦ୍ରି ପାତ୍ର (୧୯୦୨-୧୯୮୨) ପାରଳାରେ ବାସସ୍ଥାନ ।**

ରଚନା-ସତ୍ୟବୀର ହରିଷ୍ଚନ୍ଦ୍ର, ଭକ୍ତ ସୁଦାମା, ହରିଦାସ ଠାକୁର, ଭୀଷ୍ମାର୍ଜ୍ଜୁ, କୁଟିଳ-କୁଟିଳା ନାଟକ ।

**୧୭. ସିଂହାଦ୍ରି ପରିଛା-ପ୍ରାବନ୍ଧିକ ଓ ଗବେଷକ**

ଉତ୍କଳ ସାହିତ୍ୟ ୧୩୩୫ (ଖ୍ରୀ ୧୯୨୮) ଉତ୍କଳ ତତ୍ତ୍ୱାନୁସନ୍ଧାନ ସମିତି (ଉତ୍କଳ ରିସର୍ଚ୍ଚ ସୋସାଇଟି) ରେ ଯୌବରାଜ୍ୟାଭିଷେକ, ଆନନ୍ଦ ବର୍ମାଚୋଡ଼ଗଙ୍ଗ ଦେବଙ୍କ ଅଭିଷେକ ଆଦି ପ୍ରକାଶିତ ପ୍ରବନ୍ଧ ତାଙ୍କୁ ସମ୍ମାନିତ କରିଥିଲା । ପରବର୍ତ୍ତୀ କାଳରେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିକୁ ଡକ୍ଟର ସତ୍ୟନାରାୟଣ ରାଜଗୁରୁ (ଜନ୍ମ ୧୯୦୪) ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ (ଜନ୍ମ ୧୯୦୭) ଓ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଦ୍ୱାରା ସମ୍ମାନିତ ବୁଡ଼ାରସିଂହର ନାରୀ କବି ବନଜାକ୍ଷୀ ପଣ୍ଡାଙ୍କ ଦାନ ମଧ ମହତ । ପ୍ରଥମ ଦୁଇ ଜଣଙ୍କ ବିଷୟରେ ଆଲୋଚନା କରାଯାଇଅଛି । ସେହିପରି ସଙ୍ଗୀତ ଜଗତରେ ସ୍ୱର୍ଗତ ଭୁବନେଶ୍ୱର ମିଶ୍ର (କଣ୍ଠ ସଙ୍ଗୀତ) ଅନନ୍ତଚରଣ ପାତ୍ର (ବୀଣା) କବିରାଜ ଭକ୍ତବତ୍ସଳ ପାତ୍ର (ବୀଣା)ଙ୍କର ଦାନ ଓଡ଼ିଶାର ସର୍ବତ୍ର ସୁବିଦିତ ।

ମୋର ଆଶା ଓ ବିଶ୍ୱାସ ନୂତନ ପୀଢ଼ିର ଯୁବ ଗବେଷକ ଓ ଛାତ୍ରମାନେ ଏହି ବିଦ୍ୱାନମାନଙ୍କର କୃତିତ୍ୱର କାହାଣୀ ଲୋକପ୍ରିୟ କରାଇ ପାରିବେ ।

*(ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି କଲେଜ ପାରଳାଖେମୁଣ୍ଡିର ବିଶେଷ ସଂଖ୍ୟା ସ୍ମରଣୀକାରେ ପ୍ରକାଶିତ)*



# 'ସାବତମା' ର କଥାକାର

ରାଜଧାନୀରୁ ନବରଙ୍ଗପୁର ଜିଲ୍ଲାର ଉମରକୋଟ ଛଅଶ କୋଡ଼ିଏ କିଲୋମିଟର । ଏହା ଛୋଟିଆ ଗାଁ ଟିଏ । ଦଣ୍ଡକାରଣ୍ୟ ଯୋଜନାରେ ପୂର୍ବବଙ୍ଗ ଶରଣାର୍ଥୀମାନଙ୍କ ବସତି ଫଳରେ ସହର ଗଢ଼ି ହେଲା । ଦୁଇ ମାଇଲ ଆଗରୁ ଜୟପୁର-ରାୟପୁର ଜାତୀୟ ରାଜପଥ ଧାରରେ ଭାରଣ୍ଡି ଗାଁ । ୧୯୬୯ ମସିହାରୁ ସେଇଠି ଜଣେ ଦାଢ଼ିଆ ଘର କରି କେତୋଟି ଆଦିବାସୀ ପରିବାର ଧରି ରହିଛନ୍ତି । ଗାଁ ଯାକର ସମସ୍ତେ ବେଳ ଅବେଳରେ ଗାଁର ଫସଲ ଖସଡ଼ା, ପୁଲିଶ ଜୁଲମ ପ୍ରତିକାର, ମହୁଲି ମଦରନ୍ଧା, ଆଶ୍ରମ ସ୍କୁଲ ପାଠପଢ଼ା, ଧାଙ୍ଗଡ଼ି ଝିଅଙ୍କୁ ପଢ଼ାଇବା ଆଦି ସବୁ କଥାରେ ତାଙ୍କ ଉପଦେଶ ପରାମର୍ଶ ଲୋଡ଼ନ୍ତି । କାଳକ୍ରମେ ଗାଁଟିର ନାଁ ହେଲା ଦାଢ଼ିଆଗୁଡ଼ା ।

ଏ ଦାଢ଼ିଆ ହେଉଛନ୍ତି ଓଡ଼ିଶାର ସ୍ୱନାମଧନ୍ୟ ଔପନ୍ୟାସିକ ଓ କଥାକାର ସତ୍ୟାନନ୍ଦ ବେହୁରା । ଜନ୍ମ ୧୯୦୬ ମସିହା ନଭେମ୍ବର ଅଠେଇଶ ତାରିଖ ନାଉଗାଁ ଥାନା ବିଲିପଡ଼ା ଗ୍ରାମର ବିଖ୍ୟାତ ବେହୁରା ପରିବାରରେ । ପାଠ ବାରିପଦା ଓ କଟକରେ ହାଇସ୍କୁଲରେ । ରେଭେନ୍ସା କଲେଜରୁ ବି.ଏ. ପାସ୍ । ଛାତ୍ର ଜୀବନରୁ ସାହିତ୍ୟ ଚର୍ଚ୍ଚାରେ ଆଗ୍ରହ । ପ୍ରଥମ ଗଳ୍ପ ଲେଖନ୍ତି ସ୍କୁଲ ପତ୍ରିକାରେ । ତାହା ଆଦର ପାଏ । ବି.ଏ ପଢ଼ିବାବେଳେ ଲେଖନ୍ତି ପ୍ରଥମ ଉପନ୍ୟାସ 'ସାବତମା' - ମଧ୍ୟବିତ୍ତ ପରିବାରରେ ମାଆଛେଉଣ୍ଡ ପିଲାର କରୁଣ କାହାଣୀ ଉପନ୍ୟାସ ଓଡ଼ିଶାରେ ଚହଳ ପକାଇ ଦିଏ । ବହିଟିର ଅନେକ ସଂସ୍କରଣ ସାରସ୍ୱତ ପ୍ରେସରୁ ପ୍ରକାଶ ପାଏ । ପରେ ଏହା ଚଳଚ୍ଚିତ୍ର ମଧ୍ୟ ହୋଇଛି । ଗୋଟିକ ପରେ ଗୋଟିଏ ଉପନ୍ୟାସ, ଗଳ୍ପ ସଂଗ୍ରହ, ଶିଶୁ ସାହିତ୍ୟ ସେ ଲେଖି ଚାଲନ୍ତି ଅଶ୍ରୁକଣା ସ୍ମୃତିର ପୂଜା, ଜ୍ୟୋତ୍ସ୍ନା ଓ ଉତ୍ପଳ, ଦାବି ଓ ଦାନ, କାକଜୋସ୍ନା, ଚତୁର୍ଥ ପୁରୁଷ, ନିର୍ମାଲ୍ୟ ନିବାସ, ସ୍ୱର୍ଣ୍ଣପ୍ରଦୀପ, ସୁବର୍ଣ୍ଣପୁଷ୍ପ, କଥାକୁହ ଆଦି ୪୦ ଖଣ୍ଡରୁ ଅଧିକ । ୩୦ ବରଷ ନ ହେଉଣୁ ମୃତଦାର । ଚାରି ବରଷର ଓ ବରଷକର ଦୁଇ ଝିଅ । ନୂତନ ସଂସାର ନ କରି

ସବୁ ଝଂଝାଳକୁ ଉପେକ୍ଷା କରି ସାରସ୍ୱତ ସାଧନାରେ ଉତ୍ସର୍ଗୀକୃତ ଜୀବନ । ଓଡ଼ିଶା ସାହିତ୍ୟ ଏକାଡ଼େମୀଠାରୁ କଟକ କୋରାପୁଟର ବହୁ ସାରସ୍ୱତ ସଂସ୍ଥା ଦ୍ୱାରା ସମ୍ବର୍ଦ୍ଧିତ ।

ତାଙ୍କର ଅନେକ ଗଳ୍ପ ଟିଭି ଓ ରେଡ଼ିଓରେ ପ୍ରଚାରିତ । ବଡ଼ ସହରର ସବୁ ସୁବିଧା ସୁଯୋଗ ପ୍ରତ୍ୟାଖ୍ୟାନ କରି କମିସନର, କଲେକ୍ଟର ପଦରେ ପ୍ରତିଷ୍ଠିତ ଦୁଇ ଜାମାତାଙ୍କର ଆଦର ଏଡ଼ାଇ ପରିବାରରେ ସଂପର୍କିତ ହାଇକୋର୍ଟ ଜଜ୍ ବାରିଷ୍ଟର, ଓକିଲ, ଡିରେକ୍ଟର ବିଶ୍ୱବିଦ୍ୟାଳୟ ଅଧ୍ୟାପକମାନଙ୍କର ବାର୍ଦ୍ଧକ୍ୟରେ ସାହାଯ୍ୟର ପ୍ରତ୍ୟାଶା ନ ରଖି ରହିଲେ ସେଇ ଦାଢ଼ିଆଗୁଡ଼ାରେ । ଲୋକଙ୍କୁ ପୁରାଣ ଭାଗବତ ଶୁଣାନ୍ତି । ତାଙ୍କ ଛୁଆଙ୍କୁ ପାଠ ପଢ଼ାନ୍ତି । ସ୍ୱାସ୍ଥ୍ୟରକ୍ଷା ନିୟମ ଶିଖାଇ ମଳିଘଷି ଗାଧୋଇ ଦେଇ ସଫା କରନ୍ତି । ରୋଗରେ ଔଷଦ ଦିଅନ୍ତି । ଦରକାର ହେଲେ ଡାକ୍ତରଖାନାକୁ ପଠାଇ ଦିଅନ୍ତି । ପ୍ରତିଦାନରେ ସେମାନେ ନିଜ ଲୋକପ୍ରତିନିଧିଙ୍କ କଥା ନ ଶୁଣି ତାଙ୍କର ପରାମର୍ଶ ଲୋଡ଼ନ୍ତି । ଗତ କେତେବର୍ଷ ହେଲା ପଡ଼ିଯାଇ ଗୋଡ଼ ଜଖମ । ଚାଲବୁଲାକୁ ଅକ୍ଷମ । ତଥାପି ଆରାମ ଚଉକିରେ ପଡ଼ି ବା ଖଟରେ ଶୋଇ ସମସ୍ତଙ୍କୁ ପରାମର୍ଶ କି ଉପଦେଶ ଦେବାରେ କୁଣ୍ଠା ନାହିଁ । ରାମକୃଷ୍ଣ ମିସନର ସ୍ୱାମୀ, କମିସନର କି କଲେକ୍ଟର, ଭାରତ ସରକାରଙ୍କର ତଦନ୍ତଦଳ, ସ୍ୱୟଂସେବୀ ସଂସ୍ଥାମାନେ ଗଲେ ତାଙ୍କଠାରୁ ମତାମତ ଲୋଡ଼ନ୍ତି । ପ୍ରତିବର୍ଷ ତାଙ୍କ ଜନ୍ମଦିନରେ ବହୁ ଗୁଣଗ୍ରାହୀ ଏକାଠି ହୁଅନ୍ତି । ପୀଡ଼ିତାବସ୍ଥାରେ ଅଜ୍ଞାନ ଥାଇ ଭୁବନେଶ୍ୱର ଅଣା ହେଲେ । ଦାଢ଼ିଆଗୁଡ଼ାଠାରୁ କଟକ - ପୁରୀ - ଭୁବନେଶ୍ୱର ସବୁଠାରେ ଶୋକର ଛାୟା ଖେଳାଇ ଦେଇ ୮୯ ବର୍ଷ ବୟସରେ ୧୯୯୫ ମସିହା ମଇ ମାସ ୩୧ ତାରିଖରେ ପୌର ଚିକିତ୍ସାଳୟରେ ଏହି ବୈଚିତ୍ର୍ୟମୟ, ଦୀର୍ଘଶ୍ମଶ୍ରୁ, ବିଶାଳବାହୁ, ଉଗ୍ରତେଜା ସାରସ୍ୱତ ପ୍ରତିଭାର ବିଲୟ ଘଟିଲା । କଟକ ଉତ୍କଳ ସାହିତ୍ୟ ସମାଜରେ ଏପରି ଜଣେ ସାହିତ୍ୟିକଙ୍କର ତୈଳଚିତ୍ରଟିଏ ମଧ୍ୟ ରହିପାରିଲା ନାହିଁ ।



# ସମାଜସେବୀ ଓକିଲ ସିମାଦ୍ରି ମିଶ୍ର

ଉଚ୍ଚ ଆକାଂକ୍ଷା, କଠିନ ପରିଶ୍ରମ, ଧୈର୍ଯ୍ୟ ଓ ଅଧ୍ୟବସାୟ ସହିତ ଭଗବତ୍ କୃପା ଲାଭ ମନୁଷ୍ୟକୁ କିପରି ଉଚ୍ଚ ଆସନରେ ପ୍ରତିଷ୍ଠିତ କରାଇପାରେ ସ୍ୱର୍ଗତଃ ସୀମାଦ୍ରି ମିଶ୍ର ତାହାର ଉଦାହରଣ । ମୂଳ ବାସସ୍ଥାନ ପାରଳାଖେମୁଣ୍ଡି ସହର ଉପକଣ୍ଠ ଟାଙ୍ଗଡ଼ି ଶାସନରେ ମହେନ୍ଦ୍ର ତିନୟା ନଦୀ ତୀରରେ ଥିଲା । ଏହି ଗ୍ରାମଟି ମାନ୍ଦ୍ରାଜ ପ୍ରଦେଶରେ ରହିଯିବ ଜାଣି ତାଙ୍କ ବାପା ଦିଗପହଣ୍ଡି ବାଦ୍ୟନାଳ ଗାଁକୁ ଚାଲିଗଲେ । ସୀମାଦ୍ରିଙ୍କ ଜନ୍ମ ସେଇଠି । ଏସ ଏସ ଏଲ ସି (ମାଟ୍ରିକ) ଓ ଆଇ.ଏ. ବିଦ୍ୟାଶିକ୍ଷା ପାରଳାଖେମୁଣ୍ଡି ମହାରାଜ, କଲେଜରେ ହୁଏ । ମହାରାଜାଙ୍କଠାରୁ ପୃଷ୍ଠପୋଷକତା ଲାଭ କରିଥିଲେ ଓ ତାହା ସେ ଆଜୀବନ ମନେ ରଖି ମହାରାଜାଙ୍କ ବିସ୍ତୃତ ଜୀବନୀ ଲେଖିବା ଉଦ୍ୟମରେ ଭାଗୀଦାର ଥିଲେ । ସଂପର୍କୀୟ ପଣ୍ଡିତ ଗୋପୀନାଥ ନନ୍ଦ, ଶିକ୍ଷକ ଗୋବିନ୍ଦ ଦାସ ବିଦ୍ୱାନ, ଟାଟା କୃଷ୍ଣ ମୂର୍ତ୍ତୀ ପାନାଡ଼ି ଜଗନ୍ନାଥମ୍‌ଙ୍କ ଦ୍ୱାରା ପ୍ରଭାବିତ ହୋଇ ସେ ରାଜନୈତିକ ଚେତନା ସହିତ ସମାଜ ସେବାରେ ମନ ଦେଲେ । ଆଇ.ଏ. ପାସ କରି କର୍ମ ସଂସ୍ଥାନ ଉଦ୍ଦେଶ୍ୟରେ ନୂତନ ଜିଲା କୋରାପୁଟ ଆସିଲେ । ୧୯୪୦ ରେ ଜିଲାପାଳଙ୍କ ଅଫିସରେ ଚାକିରି କଲେ । ସେଥିରେ ମନ ମାନିଲା ନାହିଁ । ନୂତନ ଜିଲାରେ ଓଡ଼ିଆ ଓକିଲଙ୍କ ସଂଖ୍ୟା ନଗଣ୍ୟ । ଜୟପୁରରେ ଓଡ଼ିଆ ଓକିଲ ମାତ୍ର ଦୁଇଜଣ । ବଉଦ ଅଧିବାସୀ ଉତ୍କଳ ସମ୍ମିଳନୀରେ ଉଦଯୋକ୍ତା ହରିହର ମିଶ୍ର ଓ ମଞ୍ଜୁଷା ନିବାସୀ ଜଗଦୀଶ ନାୟକ । ସେମାନଙ୍କ ପ୍ରେରଣାରେ ସେ ଓକିଲାତି ଲାଇସେନ୍ସ ହାସଲ କଲେ । ସେତେବେଳେ ଆଂଶିକ ବହିର୍ଭୁତ ଅଞ୍ଚଳରେ ଭାଷା ଓ ଆଇନଜ୍ଞାନ ପରୀକ୍ଷା କରି ଜିଲାପାଳ ଲାଇସେନ୍ସ ଦେଉଥିଲେ । ତାଙ୍କର ହାକିମ ଥିବା କଲେକ୍ଟର ଯେ ଏସ ଉଇଲକଙ୍କଠାରୁ ଲାଇସେନ୍ସ ପାଇବା କଷ୍ଟକର ହେଲା ନାହିଁ । ନବରଙ୍ଗପୁରରେ ଥିଲେ ଜଣେ ମାତ୍ର ଓକିଲ । ବଲ୍ଲଭ ନାରାୟଣ ସାମନ୍ତରାୟ । ସେ ମଧ୍ୟ ମନୋନୀତ ବ୍ୟବସ୍ଥାପକ । ସେଇଠି ସେ ବ୍ୟବସାୟ ଆରମ୍ଭ କଲେ ୧୯୪୨ ମସିହାରୁ । ଯାହାକିଛି ଫିଜ ମିଳିଲେ ସେଥିରେ ସନ୍ତୁଷ୍ଟ ଥାଇ ବଡ଼ ସାନ

ସବୁ ପ୍ରକାର ମହକିଲଙ୍କର ସେ ପ୍ରିୟପାତ୍ର ହେଲେ । ତହସିଲଦାର ମାଜିଷ୍ଟ୍ରେଟଙ୍କ ମଫସଲ କ୍ୟାମ୍ପରେ ମକଦ୍ଦମା ପକାଇ ଶୀଘ୍ର ଫଏସଲା କରାଇଲେ । ଜୟପୁରର ଜଗଦୀଶ ନାୟକ ଓ ହରିହର ମିଶ୍ର ମଧ ପ୍ରଥମେ କ୍ୟାମ୍ପରେ ଓ ପରେ କଚେରିରେ ସେମାନଙ୍କର ମକଦ୍ଦମା ଚଳାଇବାକୁ ଦେଲେ । ୧୯୪୬ ମସିହା ସୁଦ୍ଧା ପ୍ରତିଷ୍ଠିତ ଓକିଲ ଭାବରେ ଖ୍ୟାତି ଅର୍ଜନ କଲେ । ଗଦବା ସଉରା ପରଜା ଆଦି ଆଦିବାସୀଙ୍କର ସମସ୍ୟା ବିଷୟରେ ବିଶେଷ ଅବଗତ ହେଲେ । ପୂଜ୍ୟ ଥକ୍କର ବାପାଙ୍କ ଅଧକ୍ଷତାରେ ଗଠିତ ସାମ୍ବିଧାନିକ ସଭାର ଆଦିବାସୀ କମିଟି ଆଗରେ ସେ ସାକ୍ଷ୍ୟ ଦେଇ ସେମାନଙ୍କର ଗୁହାରି ଜଣାଇଲେ । ପରବର୍ତ୍ତୀ କାଳରେ ଓଡ଼ିଶାର ଆଦିବାସୀ ନେତା ଓ ମନ୍ତ୍ରୀ ଟି.ସାଙ୍ଗନା ମଧ ଏହି ସମୟରେ ଜିଲା ଅଫିସରେ ଗୁମାସ୍ତା ପାଇଟି କରୁଥିଲେ ଓ ତାହା ଛାଡ଼ି ରାଜନୀତିରେ ଯୋଗ ଦେଲେ ।

ଆୟବୃଦ୍ଧି ସହିତ ସମାଜ ସେବାରେ ଶ୍ରୀ ମିଶ୍ର ଧ୍ୟାନ ଦେଲେ । ସମାଜବାଦୀ ମନୋଭାବ ସଂପନ୍ନ ଥାଇ ବ୍ୟବସ୍ଥାପକ ସଭାକୁ ଏକାଧିକବାର ଅସଫଳ ପ୍ରତିଦ୍ୱନ୍ଦିତା କଲେ । ଦଣ୍ଡକାରଣ୍ୟ ଯୋଜନା କାର୍ଯ୍ୟକାରୀ ହେବା ସମୟରେ ମାଲକାନଗିରି ଓ ଉମରକୋଟ ଯୋଜନାର ଉନ୍ନତିମୂଳକ ଯୋଜନାର ସମୀକ୍ଷା କଲେ ଓ ଭବିଷ୍ୟତରେ ଏହାର ସାମାଜିକ ଓ ଶୈକ୍ଷିକ ପ୍ରଭାବର ଆଲୋଚନା ନିମିତ୍ତ ନିଜ ଖରଚରେ ଦଣ୍ଡକାରଣ୍ୟ ଟାଇମସ୍' ନାମରେ ଏକ ସାପ୍ତାହିକ ସମ୍ବାଦପତ୍ର ପ୍ରକାଶ କଲେ । କ୍ଷତି ସହିଲେ ମାତ୍ର ଲୋକଚେତନା ସୃଷ୍ଟି କରିବାରେ ସଫଳ ହେଲେ । ଏହା ଫଳରେ ବର୍ତ୍ତମାନ ବଙ୍ଗୀୟ ଶରଣାର୍ଥୀମାନେ ନିଜକୁ ଓଡ଼ିଆମାନଙ୍କ ସହିତ ସାମିଲ କରିପାରିଛନ୍ତି । ସହରର ଅନ୍ୟ ଗଣ୍ୟମାଣ୍ୟ ବିଭିନ୍ନ ରାଜନୈତିକ ମତବାଦୀମାନଙ୍କ ସହିତ ମିଶି ନବରଙ୍ଗପୁର କଲେଜ ପ୍ରତିଷ୍ଠାରେ ଭାଗ ନେଲେ । କୃଷିକାର୍ଯ୍ୟରେ ଆଗ୍ରହ ରଖି ନିଜର ଚକବନ୍ଦୀ ଆଦର୍ଶ କୃଷି କ୍ଷେତ୍ର ତିଆରି କଲେ । ନିଜର ସନ୍ତାନ ମାନଙ୍କୁ ଉଚ୍ଚ ଶିକ୍ଷା ଦେଇ ସେମାନଙ୍କୁ ଉଚ୍ଚ ଆସନରେ ପ୍ରତିଷ୍ଠିତ ହେବା ଦେଖିଲେ । ଦ୍ୱିତୀୟ ପୁଅ ଅରୁଣ କୁମାର ଉତ୍ତର ପ୍ରଦେଶର ଆଇଏଏସ୍ ଥାଇ ସୁନାମ ଅର୍ଜନ କରି ଇଉଏନଓ ସଂସ୍ଥାରେ ମଧ କାର୍ଯ୍ୟ କରିଛନ୍ତି ।

ବିଚ୍ଛିନ୍ନାଞ୍ଚଳରୁ ଯେପରି ଓଡ଼ିଆ ସଂସ୍କୃତିର ଲୋପ ନ ହୁଏ ଓ ଓଡ଼ିଆ ମାନେ ନିଜକୁ ହୀନ ବା ଭାଗ୍ୟହୀନ ମନେ ନ କରନ୍ତି ସେଇ ଉଦ୍ଦେଶ୍ୟରେ ଜଗଦଳପୁର, ମଞ୍ଜୁଷା, ଇଚ୍ଛାପୁରରେ ବୈବାହିକ ସଂପର୍କ ସ୍ଥାପନ କରି ଭାବଗତ ସଂପର୍କ ଦୃଢ଼ତର କରି ରଖିଲେ । ନଭେମ୍ବର ୧୯୯୮ ମସିହା ୮୧ ବର୍ଷ ବୟସରେ ପରିଣତ ବୟସରେ ତାଙ୍କ ମୃତ୍ୟୁରେ ଜଣେ ଆଦର୍ଶ ଲୋକପ୍ରିୟ ସମାଜସେବୀ ଚାଲିଗଲେ ।



# ଜନାକୀର୍ଣ୍ଣ ବାଲିକୁଦାର ଏକ ବିସ୍ମୃତ ଐତିହ୍ୟ

ସେବାନିବୃତ୍ତ ଜୀବନରେ ବହୁତ ବୁଲିବାର ସୁଯୋଗ ମିଳିଲା ।

"ବହୁଦିନ ଭ୍ରମି ଭ୍ରମି ଅବିରତେ
ଦେଖିଲଇଁ ନାନା ସ୍ଥାନ ଭୂଭାରତେ ।
କି ଉତ୍ତରାଖଣ୍ଡ କି ଦକ୍ଷିଣପଥ
ଭ୍ରମିଲି ମୁଁ ଭାଗ୍ୟବଶେ ଚକ୍ରବତ ।
ଭ୍ରମିଲି ଦକ୍ଷିଣା ପଥେ ଉପତ୍ୟକା
ଝିଲ୍ଲି ଝଂକାରିତ ଅଟବୀ ଦଣ୍ଡକା
ତୀର୍ଥାଶ୍ରମ ଗିରି ତଟିନୀ କନ୍ଦର
ମହାରଣ୍ୟମାନେ ଚିତ୍ର-କଳେବର"

(ରାଧାନାଥ)

ଗଗନ ଭେଦୀ ହିମାଳୟରେ ତେରହଜାର ଫୁଟ ଉଚ୍ଚରେ ମହିଷର ପଶ୍ଚାତ ଅଂଶ ସଦୃଶ ଦୃଶ୍ୟ କେଦାରନାଥ ଜ୍ୟୋର୍ତିଲିଙ୍ଗ ଦର୍ଶନରେ, ଦକ୍ଷିଣାତ୍ୟର 'ସୁତାମ୍ରପର୍ଣ୍ଣୀ ଜଳରାଶୀ ଯୋଗେ ନିବଦ୍ଧ ସେତୁ ବିଶିଖରସଂଖେ ଶ୍ରୀରାମ ଚନ୍ଦ୍ରେଣ ସମର୍ପିତଂ ତଂ, ରାମେଶ୍ୱରଙ୍କୁ ପ୍ରାର୍ଥନା କଲାବେଳେ, ପଶ୍ଚିମରେ ଆରବ ସାଗର ତୀରରେ ଯଦୁବଂଶକ୍ଷୟକାରୀ ପ୍ରଭାସ ତୀର୍ଥରେ ଓ ପୂର୍ବରେ ଆସାମର ଗୌହାଟି ସହର ଉପକଣ୍ଠରେ କାମାକ୍ଷ୍ୟାଦେବୀଙ୍କ ସମ୍ମୁଖରେ ଶ୍ରୀ ଶ୍ରୀଚଣ୍ଡୀର "ସର୍ବମଙ୍ଗଳ ମାଙ୍ଗଲ୍ୟେ ଶିବେ ସର୍ବାର୍ଥ ସାଧିକେ' ସ୍ତୋତ୍ର ପାଠ ସମୟରେ ପୁଣି ଯୁକ୍ତରାଷ୍ଟ୍ର ଆମେରିକାର ଆରିଜୋନା ରାଜ୍ୟର ଆନ୍ତର୍ଜାତିକ ଦ୍ୟୂତ କ୍ରୀଡ଼ାର କେନ୍ଦ୍ରସ୍ଥଳ ଲାଭେଗାସ ସହରର ଏକଶ କୋଟି ଡଲାର ବ୍ୟୟରେ ନିର୍ମିତ ୧୯୯୩ ମସିହାରେ ଉଦ୍‌ଘାଟିତ ପୃଥିବୀର ବୃହତ୍ତମ ପାଞ୍ଚହଜାର ପାଞ୍ଚ କୋଠରୀ ବିଶିଷ୍ଟ ଏମ୍.ଜି.ଏମ୍. ହୋଟେଲର ନିର୍ମାଣ କୌଶଳ ଓ ସମାଗତ ଅତିଥି ଓ ପର୍ଯ୍ୟଟକ ମାନଙ୍କର ରୂପ ବା ବୈଭବ ଚିନ୍ତା

କଲାବେଳେ ଏହି ପଂକ୍ତିମାନ ମୋର ସ୍ମରଣ ହୋଇ ନ ଥିଲା । ଅଥଚ ବିଲାତି ଛପା ଚକଚକିଆ ମୂଲ୍ୟବାନ ବହିଖଣ୍ଡ ଦେଖି କବିତାଟିଏ ସ୍ୱତଃ ମନକୁ ଆଲୋଡ଼ିତ କଲା ।

କବିଗୁରୁ ରବୀନ୍ଦ୍ରନାଥଙ୍କର ଗୋଟିଏ କ୍ଷୁଦ୍ର କବିତା -

"ବହୁଦିନ ପରେ ବହୁକ୍ରୋଶଦୂରେ,
ବହୁବ୍ୟୟ କରି ବହୁଦେଶ ଘୁରେ ।
ଦେଖିତେ ଗିୟେଛି ପର୍ବତମାଳା,
ଦେଖିତେ ଗିୟେଛି ସିନ୍ଧୁ ।
× × × × ×
ଦେଖାହୟ ନାଇ ଚକ୍ଷୁ ମେଲିୟା,
ଘର ହତେ ସୁଦୁ ଦୁଇ ପା ଫେଲିୟା ।
ଏକଟି ଧାନେର ଶିଷେର ଉପରେ,
ଏକଟି ଶିଶିର ବିନ୍ଦୁ ।"

ବିଷୟବସ୍ତୁ ଦରଭା ଓ ପରାହାଟ । ବହିର ନାମ Hindu Temple Art of Orissa ତିନି ଖଣ୍ଡରେ ବହିଟି ସମାପ୍ତ । ଇଉରୋପରେ ନେଦରଲାଣ୍ଡ (ହଲାଣ୍ଡ) ରାଜ୍ୟର ଲିଡ଼େନ ସହରରେ ୧୯୮୬ ମସିହାରେ ମୁଦ୍ରିତ । ପ୍ରତି ଖଣ୍ଡର ମୂଲ୍ୟ ଥିଲା ୨୨୫୦ ଟଙ୍କା । ବହିଟିର ସଂପାଦନା କରିଛନ୍ତି JANICE STARGARDT ଓ ଏହାର ସଂଗ୍ରାହକ ଟମାସ ଡୋନାଲ୍ଡସନ । ୧୯୭୩ ମସିହାରେ ଡକ୍ଟରେଟ ନେବା ପରେ ସେ ବର୍ତ୍ତମାନ ଯୁକ୍ତରାଷ୍ଟ୍ରର କ୍ଲିଭଲାଣ୍ଡ ରାଜ୍ୟ ବିଶ୍ୱବିଦ୍ୟାଳୟରେ କଳା (Art)ର ଅଧ୍ୟାପକ । ଓଡ଼ିଶାରେ ବୌଦ୍ଧ ଧର୍ମ ଓ କଳା ଉପରେ ସେ ଗବେଷଣାରତ । ପୁସ୍ତକଟି ଏହି ଗବେଷଣାର ଫଳ । ଓଡ଼ିଶାରେ ଗତ ଏକହଜାର ବର୍ଷ ମଧ୍ୟରେ ସ୍ଥାପତ୍ୟ କଳାର ବିଭିନ୍ନ ଦିଗ ଏଥିରେ ଆଲୋଚିତ । ବହିଟିର ୨ୟ ଖଣ୍ଡର ପୃ. ୭୦୪ ରୁ ଉକ୍ତ ପଣ୍ଡିତ ଦରଭା ଓ ପରାହାଟ ମନ୍ଦିରର ସ୍ଥାପତ୍ୟ ଓ ହରଭାଇ କଳା ଆଲୋଚନା କରିଛନ୍ତି । ଆଲୋଚନା ପଢ଼ି ମୁଁ ଲଜ୍ଜିତ । ମୋ ଜନ୍ମ ସ୍ଥାନଠାରୁ ଏହା ବେଶୀ ଦୂର ନୁହେଁ ଅଥଚ ସେଥିରୁ ଗୋଟିଏ ମଧ୍ୟ ଦେଖିବାର ସୌଭାଗ୍ୟ ମୋର ଘଟିନାହିଁ ।

ପ୍ରଥମେ ଜଗତସିଂହପୁର ଓ ବାଲିକୁଦା ମଧ୍ୟରେ ଦରଭା ଗ୍ରାମ ଅବସ୍ଥିତ ବୋଲି ସେ ଲେଖିଛନ୍ତି । ମନ୍ଦିରର ସ୍ଥାପତ୍ୟ ୧୩ଶ ଶତାବ୍ଦୀର ଯଦିଚ ୧୨ଶ ଶତାବ୍ଦୀର କେତୋଟି ମୂର୍ତ୍ତୀ ମଧ୍ୟ ଅଛି । ପଞ୍ଚପାଣ୍ଡବେଶ୍ୱର ହତା । ଭୀମେଶ୍ୱର । ଏହାର ଦକ୍ଷିଣକୁ ଯୁଧିଷ୍ଠିର ମନ୍ଦିର । ଏହାର ଜଗମୋହନର ପଞ୍ଚରଥ ଶୈଳୀରେ ନିର୍ମାଣ କୌଶଳ, ଦୋପିଛ

ସିଂହମସ୍ତକ, ବେକି ଭୈରବ, ବଜ୍ରମୁଣ୍ଡି ଦ୍ୱାରପାଳ ପାର୍ଶ୍ୱଦେବତାମାନଙ୍କ ମଧ୍ୟରେ ତ୍ରିଭଙ୍ଗ ଠାଣିରେ ନିର୍ମିତ ମୋଦକ ହସ୍ତ ଗଣବିଗ୍ଭ, କୁଞ୍ଜରାସ୍ୟ ଗଣେଶ ସହିତ କାର୍ତ୍ତିକେୟ, ବରାହ, ଖଡ୍ଗ-ଅଙ୍କୁଶ-ଚକ୍ର-ନାଗପାଶ-ତୂଣୀର ଯୁକ୍ତ ଅଷ୍ଟଭୁଜା ମହିଷାସୁରମର୍ଦ୍ଦିନୀ, ସାମଭଙ୍ଗ ଠାଣିରେ ବରଦା ମୁଦ୍ରାହସ୍ତ ଗଦାଧର ବିଷ୍ଣୁ, ତ୍ରିଭଙ୍ଗ ଠାଣିରେ ଉଭା ଶ୍ରୀଦେବୀ ଓ ଭୂଦେବୀ ବିଗ୍ରହମାନ ବର୍ଣ୍ଣନା କରି ସେ ମନ୍ଦିର ଗାତ୍ରରେ ମହାଭାରତର ଆସ୍ତିକ-ଜଗଦ୍‌କାରୁ ଉପାଖ୍ୟାନ ଖୋଦିତ ହୋଇଥିବା ଓ ଅସୁରଗୁରୁ ଶୁକ୍ରାଚାର୍ଯ୍ୟଙ୍କର ପ୍ରତିରୋଧ ସତ୍ତ୍ୱେ ବାମନ ଅବତାରୀ ତ୍ରିବିକ୍ରମ ବିଷ୍ଣୁଙ୍କୁ, ବଳି ଦାନ ଦେବା ଦୃଶ୍ୟ ମଧ୍ୟ ଉଲ୍ଲେଖ କରିଛନ୍ତି ।

ପରାହାଟର ୪୮ ଇଞ୍ଚ ଉଚ୍ଚ ଦଶଭୁଜା ମହିଷା-ମର୍ଦ୍ଦିନୀ-ଠାଣି ଭଗବତୀଙ୍କର ସେ ବର୍ଣ୍ଣନା ଦେଇଅଛନ୍ତି । ମନ୍ଦିର ବାହାରେ ଅନ୍ୟ ଏକ ଅଷ୍ଟଭୂଜା ମହିଷା ମର୍ଦ୍ଦିନୀ ମୂର୍ତ୍ତୀ ତ୍ରିଶୂଳ ଓ ଅନ୍ୟ ଆୟୁଧ ଯୁକ୍ତ ହୋଇ ଅବସ୍ଥିତ। ସମଭାଗ ଠାଣିରେ ଅନ୍ୟ ଏକ ଚତୁର୍ଭୁଜା, ଓ ସର୍ପ, ଜପମାଳା, ଭଗ୍ନଦନ୍ତ କୁଠାର ମୋଦକ ପାତ୍ର ହସ୍ତ ଗଣପତିଙ୍କର ବିଗ୍ରହ ମଧ୍ୟ ଉଲ୍ଲେଖ କରାଯାଇଛି । ଭଗବତୀଙ୍କ ଜଗମୋହନରେ ୩୮ ଇଞ୍ଚ ଉଚ୍ଚ ବିଷ୍ଣୁମୂର୍ତ୍ତି, ସମ୍ମୁଖରେ ଶ୍ରୀଦେବୀ, ଭୂଦେବୀ ଓ ଗରୁଡ଼, କୀର୍ତ୍ତିମୁଖି, ବିଦ୍ୟାଧର ମୂର୍ତ୍ତି, ନୀଳମାଧବ ଓ ହର ପାର୍ବତୀ ବିଗ୍ରହର ମଧ୍ୟ ବର୍ଣ୍ଣନା କରାଯାଇଛି । ଶିବ ଲଳିତାସନରେ ଉପବିଷ୍ଟ । ତାଙ୍କ ବାମ ଜାନୁରେ ପାର୍ବତୀ । ଶିବଙ୍କର ଡାହାଣ ହାତରେ ଅଭୟ ମୁଦ୍ରା । ବାମରେ ଶିବା ଆଲିଙ୍ଗିତା । ଶିବ ଖଟ୍ୱାଙ୍ଗ ଓ ଜପମାଳା ହସ୍ତ । ପାର୍ବତୀ ଦର୍ପଣ ହସ୍ତା ।

କଳେବର ବୃଦ୍ଧି ଭୟରେ ସଂକ୍ଷିପ୍ତ ବର୍ଣ୍ଣନା ଦେଲି । ମୋର ବିଶ୍ୱାସ କାଳକ୍ରମେ କ୍ଷେତ୍ର ମାହାତ୍ମ୍ୟ ଲୋକପ୍ରିୟ ହେବ ଓ ସ୍ଥାନୀୟ ଲୋକ ପ୍ରତିନିଧି ମାନେ ଅର୍ଥନୀତିରେ ପର୍ଯ୍ୟଟନର ଉପାଦେୟତା ଦୃଷ୍ଟିରୁ ଉଭୟ ସ୍ଥାନକୁ ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରିବାରେ ଯତ୍ନବାନ ହେବେ ।

*(ରଚନା ୧୯୯୪ ଅକ୍ଟୋବର ମାସ)*



# ଏକ ବରିଷ୍ଠ ନାଗରିକ କେନ୍ଦ୍ରରେ ଦିନେ

କ୍ରାନ୍ତିକାରୀ ଔପନ୍ୟାସିକ, ଜ୍ଞାନପୀଠ ପୁରସ୍କାର ବିଜେତା, କର୍ମଯୋଗୀ, ଡକ୍ଟର ଗୋପୀନାଥ ମହାନ୍ତି ସରକାରୀ ଚାକିରିରୁ ଅବସର ଗ୍ରହଣ ପରେ ୧୯୭୬ ମସିହାରେ ସମ୍ବଲପୁର ବିଶ୍ୱବିଦ୍ୟାଳୟରୁ ସମ୍ମାନ ସୂଚକ ଡି.ଲିଟ୍. ଉପାଧି ପାଇଲେ । ଭାରତ ସରକାର ୧୯୮୧ ମସିହାରେ ତାଙ୍କୁ ପଦ୍ମଭୂଷଣ ଉପାଧି ପ୍ରଦାନ କରିଥିଲେ । ୧୯୮୩ ମସିହାରେ ସେ ସୃଜନାତ୍ମକ ରଚନା ନିମିତ୍ତ ଯୁକ୍ତରାଜ୍ୟ (UK)ରେ ଏମିରିଟସ ପ୍ରଫେସର ଭାବେ ସମ୍ମାନିତ ହୋଇଥିଲେ । ୧୯୮୬ ମସିହାରେ ସେ କାଲିଫର୍ଣ୍ଣିଆର SAN JOSE (ସାନ ହୋସେ)ସହରରେ ନିଜ କନ୍ୟା ଡାକ୍ତର ଅଞ୍ଜଳିକାଙ୍କ ସହିତ ଅବସର ବିନୋଦନ ସମୟରେ ଉକ୍ତ ରାଜ୍ୟ ନୃତତ୍ତ୍ୱ ଓ ଆଦିବାସୀ ସଂସ୍କୃତିର ଗବେଷଣା କ୍ଷେତ୍ରରେ ତାଙ୍କର ମାର୍ଗଦର୍ଶୀ ଅବଦାନ ଦୃଷ୍ଟେ ତାଙ୍କୁ ବିଶ୍ୱବିଦ୍ୟାଳୟର ସମାଜ-ବିଜ୍ଞାନ ଅଧ୍ୟାପକ ପଦବୀ ପ୍ରଦାନ କରିଥିଲେ । ସେଠାରେ ସେ ୧୯୯୧ ମସିହା ଅଗଷ୍ଟ ତିରିଶ ତାରିଖରେ ପ୍ରାଣତ୍ୟାଗ କରିଥିଲେ । କାଲିଫର୍ଣ୍ଣିଆର ଉକ୍ତ ସାନହୋସେ ସହରର ନିକଟବର୍ତ୍ତୀ କୁପରଟିନୋ ସହରରେ ଏ ଖବର ପାଇ ମୋର ତାଙ୍କର ଅନ୍ତିମ କର୍ମକ୍ଷେତ୍ର ଓ ସମାଧିସ୍ଥଳ ଦେଖିବାକୁ ଇଚ୍ଛା ହେଲା । ଭଣଜା ବାଦଲ ଆବଶ୍ୟକ ବ୍ୟବସ୍ଥା କଲାପରେ ମୁଁ ବିଶ୍ୱବିଦ୍ୟାଳୟ ଦେଖି ଗଲି । ସେଠାରେ ଜାଣିଲି ୬୦ ବର୍ଷରୁ ଉର୍ଦ୍ଧ୍ୱ ବରିଷ୍ଠ ନାଗରିକମାନଙ୍କ ନିମିତ୍ତ ବିଶ୍ୱବିଦ୍ୟାଳୟରେ ପ୍ରତି ସେମିଷ୍ଟରକୁ ନାମକୁ ମାତ୍ର ପାଞ୍ଚ ଡଲାର ଶୁଳ୍କ ନେଇ ଉଚ୍ଚତର ଶିକ୍ଷାଦାନର ବ୍ୟବସ୍ଥା ଅଛି। ବୟସ ସହିତ ଅନ୍ୟ ଆବଶ୍ୟକ ସର୍ତ୍ତମାନ ଅବଶ୍ୟ ଥିଲା । ପୁଣି Gerontology Education and Training Centre ମାଧ୍ୟମରେ ଜରତ୍‌ବିଦ୍ୟା (ବୃଦ୍ଧାବସ୍ଥାରେ ରୋଗ ଓ ଅନ୍ୟାନ୍ୟ ବିକାର) ବିଷୟରେ ଶିକ୍ଷା ଦିଆଯାଉଥିଲା । ବୟସ୍କମାନେ ଆଉ କଣ ସୁବିଧା ପାଉଛନ୍ତି ଜାଣିବାକୁ ମନ ହେଲା । ଜଣେ ବନ୍ଧୁ ସ୍ଥାନୀୟ ଗୋଟିଏ ବରିଷ୍ଠ ନାଗରିକ କେନ୍ଦ୍ର (Senior Citizen Centre) ଓ ଦିବ ଯତ୍ନ କେନ୍ଦ୍ର (Senior Day care Centre) ଦେଖିବାକୁ ପରାମର୍ଶ ଦେଲେ ।

୧୯୯୩ ସେପ୍ଟେମ୍ବର ଆଠ ତାରିଖରେ ମୁଁ ସେଠାକୁ ବାହାରିଲି । ଅର୍ନ୍ତଦେଶୀୟ ଉଡ଼ାଜାହାଜ ଯାତ୍ରାରେ ବରିଷ୍ଠ ନାଗରିକମାନେ ଏକ ତୃତୀୟାଂଶ ଭଡ଼ା ରିୟାଇତି ପାଆନ୍ତି । ମୁଁ ଏକ ତାରିଖରେ ଲସ ଏଞ୍ଜେଲ୍ସଠାରୁ ଓକଲାଣ୍ଡ ଯାତ୍ରା ସମୟରେ ଏହା ଅବଗତ ଥିଲି । ବସରେ ଯାତ୍ରା ନିମିତ୍ତ ବରିଷ୍ଠ ନାଗରିକମାନଙ୍କୁ ୫୦ ସେଣ୍ଟ ମାତ୍ର ଦେଇ ଦିନ ତମାମ ଇଚ୍ଛାନୁସାରେ ବସରେ ଓ ସହରମଧ୍ୟରେ ଯାତାୟତ କରୁଥିବା ଟ୍ରେନ ମାନଙ୍କରେ ଯିବାର ସୁବିଧା ଅଛି । ପୁଣି ମାସ ତମାମ ଏମିତି ଯାତ୍ରା ନିମିତ୍ତ ଯେଉଁ ଟିକେଟ ମିଳେ ତାହା ୧୨ ଡଲାର ନା କେତେ ପଡୁଥିଲା ମନେ ନାହିଁ ମାତ୍ର ତାହା ଆଉରି ଶସ୍ତା । ବସ୍‌ରେ ଷ୍ଟିଭେନ୍ସକ୍ରିକ ବରିଷ୍ଠ ନାଗରିକ କେନ୍ଦ୍ରରେ ପହଞ୍ଚିଲି । କେନ୍ଦ୍ରରେ ଦୁଇ ଜଣ ବୟସ୍କା ମହିଳା ମୋର ପରିଚୟ ଓ ଆବଶ୍ୟକତା ବୁଝିଲେ । ସହର ମଧ୍ୟରେ ଯାତାୟତ ନିମିତ୍ତ ମାନଚିତ୍ର ଓ ବସ୍ ଟ୍ରେନ୍ ଚଳାଚଳ ସମୟସାରଣୀ ଦେଲେ । ଖଣ୍ଡେ ବହି ସିନିଅର ହାଣ୍ଡବୁକ୍ ୧୯୯୩ ମଧ୍ୟ ଦେଲେ । ବିଶ୍ୱବିଦ୍ୟାଳୟରେ ପାଠପଢ଼ାଠାରୁ ରୋଗ ନିର୍ଣ୍ଣୟ, ପ୍ରତିକାର ବ୍ୟବସ୍ଥା, ସୁଖାଦ୍ୟ, ସାମାଜିକ ମିଳନ, ଆଇନଗତ ପରାମର୍ଶ, ଯାନବାହାନ, ପରିବହନ, ମରଣୋତ୍ତର ସତ୍‌କାର ବ୍ୟବସ୍ଥା ପର୍ଯ୍ୟନ୍ତ ସବୁ ଏଥିରେ ଦିଆଯାଇଥିଲା । ପ୍ରତିବର୍ଷ ଏହା ନୂଆ ହୋଇ ଛପାଯାଏ । ଫୋନ ନମ୍ବର ସହିତ ପ୍ରତି କେନ୍ଦ୍ର ବା ସଂସ୍ଥା କି ଧରଣର ସେବା ଯୋଗାଇଥାଆନ୍ତି ତାହା ସେଥିରେ ଦେଖିବାକୁ ମିଳିଲା ।

ବୟସ୍କ ମାନଙ୍କର ଅଧିକାର A Caregiver's Bill of Rights ଶିରୋନାମାରେ ଦିଆଯାଇଥିଲା । ସେ ଗୁଡ଼ିକ ମଧ୍ୟରେ ନିଜେ ନିଜର ଯତ୍ନନେବା, ନିଜର ସଂପର୍କୀୟମାନେ ଚାହୁଁ ନ ଥିଲେ ମଧ୍ୟ ଅନ୍ୟ ମାନଙ୍କର ସାହାଯ୍ୟ ଲୋଡ଼ିବା, ନିଜର ଶକ୍ତି ଓ ସହନଶୀଳତାର ସୀମା ବୁଝିବା, ନିଜର ମାନସିକ ଚିନ୍ତାଧାରା ଓ ମନୋଭାବ ସ୍ୱଷ୍ଟଭାବରେ ପ୍ରକାଶ କରିବା, ଅନ୍ୟମାନଙ୍କ ଦ୍ୱାରା ଏପରିକି ନିଜ ଆତ୍ମୀୟମାନଙ୍କ ଦ୍ୱାରା ପ୍ରଭାବିତ ବା ପ୍ରତାରିତ ନ ହେବା, ସମସ୍ତଙ୍କୁ ଶ୍ରଦ୍ଧା, କ୍ଷମା, ସୁବିଚାର ଦେଖାଇ ଅନ୍ୟମାନଙ୍କଠାରୁ ସେଇଆ ଆଶା କରିବା, ନିଜର କାର୍ଯ୍ୟରେ ଆନନ୍ଦ ଓ ଗର୍ବ ଅନୁଭବ କରିବା ସହିତ ସତ୍ କାର୍ଯ୍ୟରେ ସାହସ ଦେଖାଇବା ଆଦି ଅନ୍ତର୍ଗତ । ଆମେରିକାର ଅବସରପ୍ରାପ୍ତ ନାଗରିକ ସଂଘ, ସାନ ହୋସେ ବାର୍ଦ୍ଧକ୍ୟ କେନ୍ଦ୍ର ପ୍ରଭୃତି ଅନେକ ଅନୁଷ୍ଠାନ ମଧ୍ୟ ନାଗରିକମାନଙ୍କୁ ସେମାନଙ୍କର ସମସ୍ୟା ସମାଧାନରେ ସାହାଯ୍ୟ କରନ୍ତି । ବରିଷ୍ଠ ନାଗରିକମାନଙ୍କୁ ନିଜ ଘରେ ପ୍ରତିଦିନ ସପ୍ତାହକୁ ବା ମାସକୁ ଖାଦ୍ୟ ଯୋଗାଇଦେବା, ବଜାର ସଉଦା କରିବାକୁ ନେବାପାଇଁ ସଂସ୍ଥାମାନ ଅଛି । ଏହାଛଡ଼ା ଭୋଜନ ସମୟରେ ନିର୍ଦ୍ଦିଷ୍ଟ ନମ୍ବରକୁ ଫୋନ କଲେ ସପ୍ତାହକୁ ୫ ଦିନ ସେମାନେ ଗରମ ରୁଚିକର ସୁଖାଦ୍ୟ ପଠାଇ ଦେଇଥାଆନ୍ତି । ଏଥିପାଇଁ ବୟସ ୬୦ ବର୍ଷରୁ ଅଧିକ ଅବଶ୍ୟ ହୋଇଥିବ ଖାଦ୍ୟ ପରଶିବା ସମୟ ମଧ୍ୟ ବିଭିନ୍ନ

ସ୍ଥାନରେ ବିଭିନ୍ନ । ଖାଦ୍ୟର ମୂଲ୍ୟ ଶକ୍ତି ଅନୁସାରେ ଦାନ ଦେବା ନିମିତ୍ତ ଅନୁରୋଧ କରାଯାଇଥାଏ । ଏହା ବ୍ୟତୀତ ଅନେକ କେନ୍ଦ୍ରରେ ମାଗଣାରେ ଆଇନ ପରାମର୍ଶ, ସ୍ୱାସ୍ଥ୍ୟ ନିରୀକ୍ଷଣ, ରକ୍ତ ଚାପ ପରୀକ୍ଷା ଓ ସମାଜସେବା ଯୋଗାଇ ଦିଆଯାଇଥାଏ । କେତେକ କେନ୍ଦ୍ରରେ ବ୍ୟାୟାମ, ନାଚ ଗୀତ ଓ ଖେଳର ବ୍ୟବସ୍ଥା ଥାଏ । କେତେକ ଅଳ୍ପ ପଇସାରେ ବିଭିନ୍ନ ଦର୍ଶନୀୟ ସ୍ଥାନ ବୁଲାଇବାର ସୁବିଧା କରିଥାନ୍ତି । ପୁଣି ଏକକ ଜୀବନର କଠୋରତା ଉପଲବ୍ଧି କରି ବିରାଡ଼ି କୁକୁର ବା ସେମିତି କୌଣସି ପୋଷା ଜନ୍ତୁର ସାନ୍ନିଧ୍ୟ ଅନେକ କାମନା କରିଥାନ୍ତି । Senior Pets for Senior People ନାମରେ ଗୋଟିଏ ସଂସ୍ଥା ୩ ବର୍ଷରୁ ଊର୍ଦ୍ଧ୍ୱ ପୋଷା ଜନ୍ତୁ ଯୋଗାଇ ଦିଅନ୍ତି । ଆବଶ୍ୟକ ସ୍ଥଳେ ପୋଷା ଜନ୍ତୁମାନଙ୍କର ଖାଦ୍ୟ ଖର୍ଚ୍ଚ ମଧ୍ୟ ଜୀବଦୟା ସମାଜରୁ ଦିଆଯାଇଥାଏ । ମୋର କୌଣସି ସାହାର୍ଯ୍ୟର ଆବଶ୍ୟକତା ନ ଥିଲା । ତେଣୁ ଆବଶ୍ୟକ ତଥ୍ୟଯୁକ୍ତ ପୁସ୍ତିକା ଧରି ବିଦାୟ ନେଲି ।

ଦଶ ତାରିଖରେ ସେଣ୍ଟଜୁଡ଼ାସ ଚର୍ଚ୍ଚ ନିକଟ ଦିବା ଯତ୍ନ କେନ୍ଦ୍ର ଦେଖିବାକୁ ସମୟ ନିର୍ଦ୍ଧାରଣ କରିଥିଲି । କେନ୍ଦ୍ରର ନିର୍ଦ୍ଦେଶକ ଜନ୍ ଟିମସ ଜଣେ ଅଷ୍ଟ୍ରେଲିଆବାସୀ । ମନୋବିଜ୍ଞାନ ଅଧ୍ୟାପକ ଥିଲେ । ଏବେ ସମାଜ ସେବାରେ ବ୍ରତୀ । ଦୁଇଟି କେନ୍ଦ୍ରର ନିର୍ଦ୍ଦେଶକ । କାର୍ଯ୍ୟକ୍ରମ ନିର୍ଦ୍ଦେଶକ ଥିଲେ ଜେନେଟ ହିଲ । ଏହା ବ୍ୟତିତ ଅନ୍ୟ କେତେଜଣ କର୍ମଚାରୀ ଅଛନ୍ତି । ଟିମସ୍ ଓ ହିଲ ଉଭୟ ଅବୈତିନିକ । ବୟସ ଅଳ୍ପ ଜଣାଯାଏ । କେନ୍ଦ୍ରଟି ୧୯୮୦ ମସିହାରୁ କାର୍ଯ୍ୟ କରୁଛି । ଏହାର ଉଦ୍ଦେଶ୍ୟ, ବରିଷ୍ଠ ନାଗରିକମାନଙ୍କୁ ଘରେ ଆବଦ୍ଧ ରହିବା ଫଳରେ ଅନୁଭୂତ ନୀରବତା ଓ ନିଃସଙ୍ଗ ଦୁଃଖରୁ ଦୂରରେ ରଖିବା । ପୁଅଝିଅ ବା ଅନ୍ୟ ଆତ୍ମୀୟମାନେ କର୍ମକ୍ଷେତ୍ରକୁ ଚାଲିଯିବାପରେ ସେମାନଙ୍କର ଘରେ ଥିବା ନିର୍ଭରଶୀଳ ମାନଙ୍କୁ ସେବା ଯୋଗାଇଦେବା ମଧ୍ୟ ଉଦ୍ଦେଶ୍ୟ । ଏମାନେ ସକାଳ ୯.୩୦ରୁ ଉପରବେଳା ୩ଟା ପର୍ଯ୍ୟନ୍ତ ଏଠାରେ ଥାଆନ୍ତି । ସେମାନଙ୍କୁ ଗାଡିରେ ଆଣି ଛାଡ଼ିଦିଆଯାଏ । ନ ହେଲେ ସେମାନଙ୍କୁ ଅଣାଇବାର ବ୍ୟବସ୍ଥା ହୋଇଥାଏ । ଏହି ସମୟ ମଧ୍ୟରେ ସେମାନେ ଖେଳିବା, ଗୀତ ଶୁଣିବା, ଭିଡ଼ିଓ ଦେଖିବା ଛଡ଼ା ବଗିଚା କାମ ମଧ୍ୟ ଇଚ୍ଛାନୁସାରେ କରିଥାନ୍ତି । ମାସକୁ ଥରେ ସାନ ସାନ ପିଲାମାନଙ୍କୁ ସେଠାକୁ ଅଣାଯାଏ । ସେମାନେ ଖେଳନ୍ତି, ବୁଲନ୍ତି, ବୁଢ଼ାମାନଙ୍କ ସାଙ୍ଗରେ ମିଶନ୍ତି । ସେମାନେ ପିଲାଙ୍କୁ ଗେଲ କରି ଅଶେଷ ଆନନ୍ଦ ପାଆନ୍ତି । କେନ୍ଦ୍ରରେ ୬୦ ବର୍ଷଠାରୁ ୯୮ ବର୍ଷ ପର୍ଯ୍ୟନ୍ତ ବୟସ୍କ ଲୋକ ଅଛନ୍ତି । ୯୦ ବର୍ଷର ଜଣେ ଗଛ ଲଗାଇ ଗୋଟିଏ ସୂର୍ଯ୍ୟମୁଖୀ ଫୁଲ ଫୁଟାଇ ସେଥିପାଇଁ ସହରର ୩ୟ ପୁରସ୍କାର ପାଇ ଥିଲେ । କେନ୍ଦ୍ରକୁ ଦୈନିକ ହାରାହାରି ୧୪/୧୫ ଜଣ ଆସିଥାନ୍ତି । ସେଥିପାଇଁ ଦୈନିକ ୧୯ ଡଲାର

ଦେବାକୁ ପଡ଼ିଥାଏ । ଶକ୍ତି ଅନୁସାରେ ସ୍ଥଳ ବିଶେଷରେ ଏହା କମାଇ ଦିଆଯାଇଥାଏ। ତଥାପି ଏହି ଖରଚ ସାମାନ୍ୟ କାରଣ ପୁଅଝିଅ ଅନ୍ୟତ୍ର ଏମାନଙ୍କୁ ଛାଡ଼ିଲେ ସେଥିପାଇଁ ଘଣ୍ଟାକୁ ୧୫ ଡଲାର ବ୍ୟୟ କରିଥାନ୍ତି । ଟିମ୍‌ସ ଦାନ ଓ ଅନୁଦାନ ଦ୍ୱାରା ଏହି କେନ୍ଦ୍ରର ଖରଚ ମେଣ୍ଟାଇ ଥାଆନ୍ତି । କାହାକୁ ମନା କରାଯାଇ ନ ଥାଏ । ଏଇ ବରିଷ୍ଠ ନାଗରିକମାନେ ନାନା ପ୍ରକାର ରୋଗର ଶିକାର ମାତ୍ର ସେମାନଙ୍କର ରୋଗର ଇତିହାସ ଓ ଚିକିତ୍ସା ପ୍ରଣାଳୀ ଜଣାଥିବାରୁ କେନ୍ଦ୍ର ଏମାନଙ୍କର ସବୁ ପ୍ରକାର ଯତ୍ନ ନେବାରେ ସକ୍ଷମ ହୋଇଥାଏ । ସେମାନଙ୍କୁ ବର୍ତ୍ତମାନ ଜୀବନ ବିଷୟରେ ସଚେତନ ନ କରାଇ ସେମାନଙ୍କର ଅତୀତ ଯୌବନ ବା ଗୌରାବନ୍ୱିତ ସମୟ ସ୍ମରଣ କରାଇ ଦିଆଯାଏ । ଏହା ସେମାନଙ୍କୁ ଓ ଶ୍ରୋତାମାନଙ୍କୁ ଆନନ୍ଦ ଦେବା ସହିତ ସେମାନଙ୍କୁ ମାନସିକ ସ୍ଫୁର୍ତ୍ତି ପ୍ରଦାନ କରେ । ସେ ଦିନ ମୁଁ ପହଞ୍ଚିବା ବେଳେ ଟିମ୍‌ସ ମତେ ପାଛୋଟି ନେଲେ ଓ କଳାପଟାରେ ମୋର ଶୁଭାଗମନ ଲେଖାଇଲେ। ଆଉ ଜଣେ ମହାନ୍ତି ନ ହୋଇ ମୋର ପ୍ରଥମ ନାମ କଣ ପଚାରିବାରୁ ମୁଁ କହିଲି । ଜଣେ ସହଯୋଗୀ ତାହା ସଂଶୋଧନ କଲେ । ସେ ଦିନ ଉପସ୍ଥାନରେ ବୁଢ଼ୀ ବେଶୀ । ଦିଓଟି ବୁଢ଼ୀ ଥିଲେ । ଜଣେ ତା ଭିତରୁ ୨ଦିନ ତଳେ ୯୮ ବର୍ଷ ବୟସରେ ପଦାର୍ପଣ କଲେ । ତାଙ୍କୁ କଥା କହିବାକୁ କଷ୍ଟ ହେଉଛି ତଥାପି ଦି ପଦ କହିଲେ । ମୋର ଆଣ୍ଠୁବାତ ଅଛି । ମୁଁ ଚାଲିବାକୁ ଖଣ୍ଡେ ବାଡ଼ି ଧରିଥାଏ । ଦୈବାତ ସେଠାରେ ଜଣେ ଉକ୍ତ ରୋଗ ଭୋଗୀ ଅଭିଜ୍ଞ ବ୍ୟକ୍ତି ଥିଲେ । ଏଥିପାଇଁ କଣ କରାଯାଇପାରେ, ଆଣ୍ଠୁର ବ୍ୟାୟାମ କିପରି କରିବ ତାହା ମତେ ବତାଇଲେ । ପାଶ୍ଚାତ୍ୟ ଚିକିତ୍ସା ଶାସ୍ତ୍ରରେ ଏହା ଦୁରାରୋଗ୍ୟ ଓ କେବଳ ପ୍ରାଚ୍ୟ ଭେଷଜ ଶାସ୍ତ୍ରରେ ଏହାର ଆରୋଗ୍ୟ ବ୍ୟବସ୍ଥା ଥିବାର ସେ କହିଲେ । ଜଣେ ମହିଳା ୧୦/୧୫ ମିନିଟ ପିଆନୋ ବଜାଇଲେ । ଏ ଦେଶକୁ ଆସିବାରେ ମୋର ଉଦ୍ଦେଶ୍ୟ କ'ଣ, ଏଠାରେ କଣ ଜାଣିଲି, କଣ ଶିଖେଇବି ଇତ୍ୟାଦି କହିବାକୁ ମତେ କହିଲେ । ତା ପରେ ଘ. ୧୨.୧୫ ମିନିଟରେ ଭୋଜନ ପର୍ବ । ମୁଁ ନିରାମିଷାଶୀ । ଟିମ୍‌ସ ମଧ୍ୟ ସେଇଆ ଜାଣି ଖୁସିହେଲି । ସେ କହିଲେ ଯୁକ୍ତରାଷ୍ଟ୍ରରେ ସେମାନଙ୍କର ସଂଖ୍ୟା ବଢୁଛି । ଶତକରା ସାତ ବୋଲି । ପ୍ରାୟ ଅଧାକପ ଭାତ, ଲୁଣ ଓ ମରିଚଯୁକ୍ତ ୨/୩ ରକମର ସିଝା ପରିବା, କେକ୍, ଦିପ୍ରକାର, ସାଦାଝୋଳ, ୨/୩ ପ୍ରକାରର ଫଳ ଓ ଚର୍ବିରହିତ ଦୁଧ ଖାଇବାକୁ ରଚିପୂର୍ଣ୍ଣ ଓ ତୃପ୍ତିକର ଥିଲା । ଅଧ ଘଣ୍ଟାଯାଏ ଖାଇବା ଓ ଗପସପ ଚାଲିଲା । ସେଠାରୁ ଉଠି କିଏ ଚୁପ୍‌ଚାପ୍ ବସିଲେ । କିଏ ଖବରକାଗଜ ପଢ଼ିଲେ । ମୋର ଗନ୍ତବ୍ୟ ସ୍ଥଳ ଜାଣି ମୋର ଅନିଚ୍ଛା ସତ୍ତ୍ୱେ ଟିମ୍‌ସ ମତେ କାଉଣ୍ଟି ପୁସ୍ତକାଳୟକୁ ନେଲେ । ସବୁଦିନେ ସୁବିଧାରେ ବହି ନେଇ ପାରିବାକୁ କାର୍ଡ଼ ଓ ପଠନୀୟ ଉଦ୍ଧୃତାଂଶ ସେଠାରେ ନକଲ କରିବାର କୌଶଳ ଟିମ୍‌ସ ମତେ ଶିକ୍ଷାଦେଇ ବିଦାୟ ନେଲେ । ପାଠାଗାରରେ କୌଣସି ଗ୍ରନ୍ଥର ଅଂଶ

ବିଶେଷ ନକଲ କରି ଆଣିବାକୁ ଚାହିଁଲେ ନିଜେ ପୃଷ୍ଠା ପ୍ରତି ୫ ସେଣ୍ଟ ହିସାବରେ ଯନ୍ତ୍ରରେ ପକାଇ ହାତେ ହାତେ ସେ କାମ କରି ଆଣିବାକୁ ହୁଏ । ଆଉ ଥରେ ଦିବା ଯତ୍ନ କେନ୍ଦ୍ରକୁ ମଧ ଗଲି । ମାତ୍ର ମୁଁ ସଭ୍ୟ ନ ଥିବାରୁ ଓ ବିନା ଶୁଳ୍କରେ ସେମାନଙ୍କର ସେବା ଉପଭୋଗ କରିବା ଅନୈତିକ ମନେ ହେବାରୁ ବାରମ୍ୱାର ଯାଇ ନ ଥିଲି । ତଥାପି ସେମାନଙ୍କର ଉପଯୁକ୍ତ ସହଯୋଗ, ସେବାଧର୍ମ ଓ କର୍ତ୍ତବ୍ୟାନୁଭୂତି ମୋତେ ଅଭିଭୂତ କରିଥିଲା ।

*ରଚନା, ଜାନୁଆରୀ ୧୯୯୪*





ଅପେକ୍ଷାଗାରେ ପାଠରେ



କେନ୍ଦ୍ରର ନିର୍ଦ୍ଦେଶକ ଅଧ୍ୟାପକ ଜନ୍ ଟିମସ୍

# ମାଲକାନଗିରିର ନକ୍ସଲବାଦୀ

ଏକଦା ନବରଙ୍ଗପୁର ଉପଖଣ୍ଡର ଏକ ତାଲୁକ, ପରେ ଉପଖଣ୍ଡ ଓ ଶେଷରେ ଜିଲାର ମାନ୍ୟତା ପାଇଥିବା ମାଲକାନଗିରି ଏକ କ୍ଷୁଦ୍ର ଜିଲା । ଦେଓଗଡ଼ ଓ ବଉଦ ଜିଲାକୁ ବାଦ ଦେଲେ ଲୋକସଂଖ୍ୟା ଦୃଷ୍ଟିରୁ ଏହା ସର୍ବନିମ୍ନ ମାତ୍ର ଆୟତନରେ ୫୭୯୧ ବର୍ଗ କି.ମି. ଏହା ଦେବଗଡ଼ର ଦୁଇ ଗୁଣରୁ ଅଧିକ ଓ ବଉଦର ଦେଢ଼ଗୁଣ । ୧୯୪୬ ମସିହାରୁ ଏ ଅଞ୍ଚଳ ଦେଖୁଛି । ଜିଲାଟି ଆଦିବାସୀ ବହୁଳ । ସେମାନଙ୍କର ସଂଖ୍ୟା ସମୁଦାୟ ଜିଲାର ଲୋକସଂଖ୍ୟାର ୫୮,୩୬ ଶତାଂଶ । ୨୦୦୧ ଜନଗଣନା ଅନୁସାରେ ୫୦୪୧୯୮ ଥାଇ ଆଦିବାସୀମାନଙ୍କର ସଂଖ୍ୟା ଗରିଷ୍ଠତା ଦୃଷ୍ଟିରୁ ଏହି ଜିଲ୍ଲାର ବିଶେଷତ୍ୱ ରହିଛି । ଅତି ପ୍ରାଚୀନ ଉପଜାତି ବଣ୍ଡା, ଦିଡାଇ, ଲାଞ୍ଜିଆ ଶଉରା ଡଙ୍ଗରା କନ୍ଧମାନଙ୍କ ସହିତ କୋୟା, ଗଦବା, ହଲୱା, ପରଜା ଆଦି ଅନ୍ୟମାନେ ଅଛନ୍ତି । ୨୦୦୧ ଜନଗଣନା ଅନୁସାରେ ବିଭିନ୍ନ ଉପଜାତିମାନଙ୍କର ଅଲଗା ଅଲଗା ସଂଖ୍ୟା ଅପ୍ରକାଶିତ । ସମଗ୍ର ଜିଲ୍ଲାଟି ସମ୍ବିଧାନ ଅନୁସାରେ ଅନୁସୂଚିତ ଅଞ୍ଚଳ । ଏମାନଙ୍କର ଉନ୍ନତି ପାଇଁ ରାଜ୍ୟରେ ଆଦିବାସୀ ହରିଜନମଙ୍ଗଳ ବିଭାଗ ବହୁତଦିନୁଁ କାର୍ଯ୍ୟ କରୁଛି । ବର୍ତ୍ତମାନ ମଧ୍ୟ ସମଗ୍ର ଜିଲ୍ଲାଟି କେବିକେ ଯୋଜନାର ଅନ୍ତର୍ଗତ ।

ଜିଲ୍ଲାର ସାତୋଟି ଯାକ ବ୍ଲକ ଆଦିବାସୀ ସେବା ବ୍ଲକ । ଶହେ ଆଠ ଗ୍ରାମପଞ୍ଚାୟତରେ ମୋଟ ଏକ ହଜାର ଅଠଚାଳିଶଟି ଗ୍ରାମ । ସେଥିମଧ୍ୟରୁ ଛଅଷଠି ଗୋଟି ବେଛପରି । ସାତଶହ ଛୟାନବେଟି ଗ୍ରାମରେ ଆଦିବାସୀ ହରିଜନମାନଙ୍କର ସଂଖ୍ୟା ଶତକରା ପଞ୍ଚସ୍ତରିରୁ ବେଶି । ଶତକରା ବୟାନବେ ଗ୍ରାମରେ ଏମାନଙ୍କର ସଂଖ୍ୟା ପଚାଶରୁ ବେଶି । ଏମାନଙ୍କର ଉନ୍ନତି ନିମିତ୍ତ ବିପୁଳ ଅର୍ଥ ବ୍ୟବସ୍ଥା କରାଯାଉଛି । କୃଷି, ଫଳଚାଷ, ମାଛଚାଷ, ବନ ସଂରକ୍ଷଣ ଓ ରୋପଣ, ସ୍ୱାସ୍ଥ୍ୟ, ପରିବାର କଲ୍ୟାଣ, ପାନୀୟ ଜଳ ଯୋଗାଣ, ରାସ୍ତାନିର୍ମାଣ, ଜଳସେଚନ, ତନ୍ତ ଓ ବୟନ ଶିଳ୍ପ, ବୃଦ୍ଧ ଅକର୍ମଣ୍ୟ ନାରୀ ଶିଶୁ ସେବା, ଦାରିଦ୍ର୍ୟ ଦୂରୀକରଣ

ଉଦ୍ଦେଶ୍ୟରେ ଅର୍ଥ ବ୍ୟୟ କରାଯାଉଛି । ୧୯୯୭ର ଜନଗଣନା ଅନୁସାରେ ଶତକରା ୮୨ ଲୋକ ଦାରିଦ୍ର୍ୟ ସୀମାରେଖା ତଳେ ଅଛନ୍ତି । ପୁଷ୍ଟି ଅଭାବ ଜନିତ ରୋଗଭୋଗ ଅତି ସାଧାରଣ ।

୧୯୯୧ ମସିହା ଜନଗଣନା ଅନୁସାରେ ଅବିଭକ୍ତ କୋରାପୁଟ ଜିଲାରେ ଆଦିବାସୀମାନଙ୍କ ମଧ୍ୟରୁ କନ୍ଧ ପ୍ରାୟ ଚାରିଲକ୍ଷ, ପରଜା (ଡକ୍ଟର ଗୋପୀନାଥଙ୍କ ଉପନ୍ୟାସ ସେମାନଙ୍କୁ ଲୋକଲୋଚନକୁ ଆଣିଛି) ତିନି ଲକ୍ଷ, ଭତରା, ଅଢ଼େଇ ଲକ୍ଷ, କୋୟା ଦେଢ଼ ଲକ୍ଷ, ଗଣ୍ଡ ଏକ ଲକ୍ଷ, ବଣ୍ଡାପରଜା ପ୍ରାୟ ସାତହଜାର । ଏହା ବ୍ୟତୀତ ଅନ୍ୟ ଉପଜାତିମାନେ ଅଳ୍ପ ବହୁତ ସଂଖ୍ୟାରେ ଅଛନ୍ତି । ଏହିମାନଙ୍କ ମଧ୍ୟରୁ କେତେକଙ୍କର ନିଜ ନିଜର କଥିତ ଭାଷା ଅଛି । ଦୁଇଗୋଟି ସହରାଞ୍ଚଳ ଏଗାରଗୋଟି ଥାନା ଅଛି । ମାଲକାନଗିରି ଜିଲାରେ ତିନିଗୋଟି ତହସିଲ ମାଲକାନଗିରି, ମୋଟୁ ଚିତ୍ରାକୋଣ୍ଡା । ସବୁଗୁଡ଼ିକ ଆଦିବାସୀ ବ୍ଲକ ଭାବରେ ବିଶେଷ ଚିହ୍ନିତ । ସାତଗୋଟି ବ୍ଲକ । ପୋଲିସ ଥାନା ଉପରେ ଆକ୍ରମଣ, ନିରୀହ ପୁଲିଶ କର୍ମଚାରୀଙ୍କର ଅତର୍କିତ ହତ୍ୟା, ଅସ୍ତ୍ରଶସ୍ତ୍ର ଲୁଣ୍ଠନ ସମଗ୍ର ରାଜ୍ୟରେ ଆଲୋଡ଼ନ ସୃଷ୍ଟି କରିଛି ।

ମାଲକାନଗିରି ଜିଲା ଆନ୍ଧ୍ର ଓ ମଧ୍ୟ ପ୍ରଦେଶକୁ ଲାଗିଛି । ସେହି ରାଜ୍ୟର ଜିଲାମାନଙ୍କରେ ପିପଲ୍ସ ୱାର ଗ୍ରୁପ୍ (ପି.ଡବ୍ଲୁ.ଜି.) ଅତ୍ୟନ୍ତ ସକ୍ରିୟ ଏହା ପୂର୍ବରୁ ସରକାରଙ୍କୁ ଅଗୋଚର ନ ଥିବ । ଜିଲାର ଆଦିବାସୀମାନେ ଓଡ଼ିଆ ଭାଷା ସହିତ ସମସ୍ତେ ବିଶେଷ ପରିଚିତ ନୁହନ୍ତି । ବଙ୍ଗୀୟ ଶରଣାର୍ଥୀମାନେ ସେଠାରେ ଆଶ୍ରୟ ନେଇ ନିଜ ଭାଷାର ଗୌରବ ରକ୍ଷା କରୁଛନ୍ତି । ୨୦୦୧ ମସିହା ଜନଗଣନା ଅନୁସାରେ ଉପଜାତିମାନଙ୍କ ମଧ୍ୟରେ ସାକ୍ଷରତା କମ୍ କୋରାପୁଟରେ କଳାହାଣ୍ଡିଠାରୁ ମଧ୍ୟ କମ୍ । ରାଜ୍ୟର ସବୁଠାରୁ ମାଲକାନଗିରି ଜିଲାରେ ଏହା ୩୦.୫୩ ଶତାଂଶ ମାତ୍ର, ୧୯୯୧ ଜନଗଣନା ଅନୁସାରେ କୋରାପୁଟ ଅବିଭକ୍ତ ଜିଲାରେ ଚାରିଲକ୍ଷ କନ୍ଧଙ୍କ ମଧ୍ୟରୁ ମାତ୍ର ଅଠତିରିଶ ହଜାର ପ୍ରାଥମିକ ଶିକ୍ଷା ପାଇଥିଲେ । ଅନ୍ୟ ଉପଜାତିମାନଙ୍କର ପରିସଂଖ୍ୟାନ ପ୍ରାୟ ତଦ୍ରୁପ ଥିଲା । ପଚାଶ ବରଷ ତଳେ ଏହି ପାଠୁଆଙ୍କ ସଂଖ୍ୟା ଆହୁରି କମ ଥିଲା । ଶାସନର ସବୁ ନିର୍ଦ୍ଦେଶ ସେମାନେ ନିଃସଙ୍କୋଚରେ ମାନି ନେଉଥିଲେ । ଉପଜାତିମାନେ ଭାବପ୍ରବଣ । ସେମାନଙ୍କୁ ମତେଇଦେବା ବଡ଼ ସହଜ । ୧୯୪୨ ମସିହାରେ ମାତିଲି ଲକ୍ଷ୍ମଣ ନାୟକଙ୍କ ନେତୃତ୍ୱରେ ଆନ୍ଦୋଳନ, ଗୁଳିଚାଳନା ଓ ହତ୍ୟାକାଣ୍ଡ ଏହାର ଐତିହାସିକ ସାକ୍ଷୀ । ବର୍ତ୍ତମାନ ପାଠପଢ଼ି ସେମାନେ ଚାକିରି ବାକିରି କଲେଣି । ସରକାରୀ କଳର ମନ୍ଥର ବା କ୍ଷିପ୍ର ଗତି ସହିତ ସେମାନେ ପରିଚିତ । ଯେଉଁ କେତେ ମୁଷ୍ଟିମେୟ ଉଚ୍ଚ ଶିକ୍ଷିତ ସେମାନେ ସେମାନଙ୍କ ସମୂହ ଉନ୍ନତି ନିମିତ୍ତ ବିଭିନ୍ନ ଯୋଜନାରେ ଆସୁଥିବା ଅର୍ଥ ବିଷୟରେ ସଚେତନ । ଅର୍ଥ

ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟରେ ବ୍ୟୟିତ ନ ହୋଇ କେଉଁଠି ପୁରାପୁରି କେଉଁଠି ଅବା ବେଶି ଅଂଶ ବାଟମାରଣା ହୋଇ ଯାଉଛି ଏହା ସେମାନେ ଅବଗତ ହେଉଛନ୍ତି । ସେମାନଙ୍କର ଧାରଣା ହେଉଛି ଏହି ବାଟମାରଣା ରୋକିବାରେ ସରକାରଙ୍କର ଆନ୍ତରିକତା ନାହିଁ । ବାଟମାରଣା ହେଉଥିବାର ପ୍ରମାଣ ମିଳିଗଲେ କେଉଁଠାରେ କେଉଁ ଅଧିକାରୀଙ୍କୁ କି ଦଣ୍ଡ ଦିଆଯାଉଛି ତାହା ସେମାନଙ୍କୁ ସେମାନଙ୍କର କଥିତ ଭାଷାରେ ଶୁଣାଇ ଦିଆଯାଉନାହିଁ ।

ଷାଠିଏ ବରଷ ତଳେ ପ୍ରଖ୍ୟାତ ସାହିତ୍ୟିକ ଗୋପୀନାଥ ମହାନ୍ତି କୋରାପୁଟରେ ତାଲୁକ ଅଫିସର ଥିଲେ । ପରେ ସେ କୁଇ କନ୍ଧ ଶିଖିବାକୁ ବ୍ୟାକରଣ ଲେଖିଲେ । ଥରେ ବିଜୟନଗରରୁ କୋରାପୁଟ ସିଧା ସଳଖ ବସ ପାଇଲେ ନାହିଁ । ସାଲୁରକୁ ଆସି ଗାଡ଼ି ଅପେକ୍ଷା କଲେ । ଜଣେ ସ୍ଥାନୀୟ କନ୍ଧଠାରୁ ଏହି ଅବସରରେ ସେ ତାର ସୁଖ ଦୁଃଖ ତାଙ୍କ ଭାଷାରେ ବୁଝିଲେ । ଏହା ପଞ୍ଚବାର୍ଷିକ ଯୋଜନାର ପୂର୍ବ ଯୁଗ । କଥା ଚାରିଆଡ଼େ ରଟିଗଲା । ଦଳଦଳ ହୋଇ ସ୍ତ୍ରୀ ପୁରୁଷ ରାସ୍ତା ଅବରୋଧ କରି ତାଙ୍କୁ ଦେଖିବାକୁ ଦଉଡ଼ିଲେ । ଉତ୍ତରରେ ସେମାନେ କହିଲେ ତୁ ଆମ ଭିତରୁ ଜଣେ ହୋଇଥିବୁ । ସେଇଥି ପାଇଁ ଆମ ସୁଖ ଦୁଃଖ ତୋଠାରୁ ଆଉ କିଏ ଅଧିକ ବୁଝୁଥିବ, ସରକାରଙ୍କୁ ଜଣାଉଥିବ । ସେଇଥିପାଇଁ ତୋତେ ଦେଖିବାକୁ ଆସୁଛୁ । ଗୋପୀନାଥବାବୁଙ୍କ ପ୍ରଭାବ ପ୍ରତିପତ୍ତି ଏହି ଘଟଣାରୁ ଜଣାଯିବ । କୌଣସି ବେଆଇନ କାର୍ଯ୍ୟ କରିବାକୁ ସେମାନେ ବାହାରିଲେ ଗୋପୀନାଥବାବୁଙ୍କ ନିଷେଧ ସେମାନଙ୍କ ପାଇ ବେଦବାକ୍ୟ ଥିଲା । ସେମିତି ଆଉ ଜଣେ ଥିଲେ ଉଦୟନାଥ ପଟ୍ଟନାୟକ । ପରେ ଆଇ.ଏ.ଏସ୍. ହୋଇ ପୁରୀ ଜିଲାପାଳ ପଦରୁ ଅବସର ନେଲେ । ପାରଳା ମିଳିତ ମନ୍ତ୍ରୀମଣ୍ଡଳ ସମୟରେ ଗଞ୍ଜାମରେ ପାଣ ଶଉରା ସଂଘର୍ଷ ହେଲା । ଏହା ତୀବ୍ର ଓ ହିଂସ୍ର ହେବା ପୂର୍ବରୁ ସେ ଶଉରାମାନଙ୍କର ଅଭିଯୋଗର ଶୁଣାଣି କରି ନିଷ୍ପତ୍ତି ସେମାନଙ୍କୁ ଶୁଣାଇଲେ । ବେଆଇନ ଜମାଏତ ଭାଙ୍ଗିଗଲା । ମେଳିଆମାନେ ତାଙ୍କ ଅନୁଗତ ଭାବେ କାମ କଲେ । ବର୍ତ୍ତମାନ ପାଠୁଆ ଆଦିବାସୀମାନେ ଜାଣୁଛନ୍ତି । ଆଇନଗତ ପ୍ରତିବନ୍ଧକ ସତ୍ତ୍ୱେ ସେମାନଙ୍କର ନିଜ ଚାଷ ଜମିରୁ ସେମାନେ ବେଦଖଲ ହେଉଛନ୍ତି । ଭଲ ଜମି ସବୁଠାରେ ଅଣ-ଆଦିବାସୀ ମାରି ନେଉଛନ୍ତି । ଉପଜାତିମାନେ ପଟା ପାଇବାରେ ଆଇନଗତ ସାମାନ୍ୟ ବିଳମ୍ବ ମଧ୍ୟ ସହି ପାରୁନାହାନ୍ତି । ଅହେତୁକ ସେମାନେ ଏହାକୁ କର୍ତ୍ତୃପକ୍ଷଙ୍କର ସେମାନଙ୍କ ପ୍ରତି ନିଷ୍ଠୁରତା ବୋଲି ମନେ କରୁଛନ୍ତି । ବର୍ତ୍ତମାନ ଓଡ଼ିଶା ପ୍ରଶାସନିକ ସେବାରେ ପ୍ରାୟ ଦେଢ଼ ହଜାର କର୍ମଚାରୀ ଥିବେ । ଆଦିବାସୀ ଗ୍ରାମମଙ୍ଗଳ ବିଭାଗର ଅନେକ କର୍ମଚାରୀ ମଧ୍ୟ ଅଛନ୍ତି । ଏମାନଙ୍କ ମଧ୍ୟରୁ କେତେଜଣ ଉପଜାତିମାନଙ୍କର କଥିତ ଭାଷାରେ ଦକ୍ଷତା ଅର୍ଜ୍ଜନ କରିଅଛନ୍ତି ? କେତେ ଜଣ ସେମାନଙ୍କୁ ସରକାରୀ କଳର ବିଧିଗତ ମନ୍ଥର ଗତି,

ଯୋଜନାର ବିଭିନ୍ନ ଦିଗ ଓ ଲାଭ ବୁଝାଇ ପାରିବେ ? ଜିଲାରେ ୧୦୮ ଗୋଟି ଗ୍ରାମ ପଞ୍ଚାୟତ ଓ ୯୭୯ଗୋଟି ଜନବସତି ଗ୍ରାମ । କେତେଜଣ ଜିଲାସ୍ତରୀୟ ଅଧିକାରୀ ଏହି ପଞ୍ଚାୟତ ଓ ଗ୍ରାମମାନ ପରିଦର୍ଶନ କରି ସେମାନଙ୍କର ହାନି ଲାଭ ବୁଝି ଅଛନ୍ତି । ତେଣୁ ସେମାନେ ବିପଥଗାମୀ । ଏହି ସହିଂସ୍ର ଉପଜାତିମାନଙ୍କର ନେତୃପଦରେ ଅବିଭକ୍ତ କୋରାପୁଟ ଜିଲା ଓ ଅନ୍ୟ ଅଞ୍ଚଳରୁ ଯାଇଥିବା ଉଦାରପନ୍ଥୀ ଜନନାୟକ କେତେଜଣ ଅଛନ୍ତି । ସେମାନେ ୧୯୫୪-୫୫ ମସିହାରେ ବିନୋବା ବାଭେଙ୍କ ଆଦର୍ଶରେ ପୂଜ୍ୟ ଗୋପବନ୍ଧୁ ଚଉଧୁରୀଙ୍କ ନେତୃତ୍ୱରେ କୋରାପୁଟ ଜିଲାର ଭୂଦାନ ଓ ଗ୍ରାମଦାନ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ଭୂକ୍ରାନ୍ତି ଆନ୍ଦୋଳନ ବିଫଳ ହେଲା ବୋଲି ସେମାନେ ଶେଷରେ ଅନୁଭବ କଲେ । ନିରନ୍ନ ନିର୍ବାକ ଆଦିବାସୀ ମୁହଁରେ ହସ ଫୁଟାଇବାକୁ ସେମାନେ ଅଣ୍ଟା ଭିଡ଼ିଲେ । ସେମାନେ ଉଦାରପନ୍ଥୀ ଲୋକପ୍ରିୟ ସଚେତନ ନାଗରିକ ଥାଇ ଉପଜାତି ଉଦ୍ଦିଷ୍ଟ ପାଣ୍ଠିର ଦୁରୂପଯୋଗ ବା ଆତ୍ମସାତ ବିଷୟରେ ସଂପୂର୍ଣ୍ଣ ଅବଗତ ହେଲେ । ସେମାନଙ୍କର ଅନୁଚରମାନେ ସେମାନଙ୍କର ଉଦାର ଚିନ୍ତାଧାରା ଦ୍ୱାରା ଉଦବୁଦ୍ଧ । ମନ୍ଥର ଫଳାଫଳ ଦେଖି ଓ ବିଭ୍ରାନ୍ତକାରୀ ପ୍ରଚାର ଫଳରେ କେତେକ ହୁଏତ ଦିଗହରା ଓ ହିଂସ୍ରକ । ଏହା ଲକ୍ଷ୍ୟସାଧନ ଉଦ୍ଦେଶ୍ୟରେ ସେମାନଙ୍କ ସହାୟକ ହେବ ବୋଲି ସେମାନେ ବିଶ୍ୱାସ କରୁଅଛନ୍ତି ।

ବର୍ତ୍ତମାନ ଆମେ ଇତିହାସକୁ ଅନେଇବା । ଇଂରେଜ ଶାସନ । ୧୯୨୮ ମସିହା । ସାଇମନ କମିସନଙ୍କୁ ବୟକଟ ଡ଼କରା । ପଞ୍ଜାବ କେଶରୀ ଲାଲା ଲଜପତରାୟଙ୍କ ନେତୃତ୍ୱରେ ପ୍ରତିବାଦ । ପୁଲିଶ ଲାଠି ମାଡ଼ରେ ଆଘାତ ପାଇ ସେ ପ୍ରାଣ ହରାଇଲେ । ସହିଦ ଭଗତସିଂହ ଏହି ଶୋଭାଯାତ୍ରା ମଧ୍ୟ ପରିଚାଳନା କରୁଥିଲେ । ହତ୍ୟାର ପ୍ରତିବାଦରେ ୧୯୨୮ ମସିହା ଡିସେମ୍ବର ଅଠେଇଶ ତାରିଖରେ ସାଥୀ ରାଜଗୁରୁ ଓ ଆଜାଦଙ୍କ ସହିତ ମିଶି ସେ ବୋମା ଫିଙ୍ଗିଲେ । ପୁଲିଶ ସାହେବ ସର୍ଣ୍ଡସ ନିହତ ହେଲେ । ଏହା ପରେ ସେ ସାଥୀ ବଟୁକେଶ୍ୱର ଦତ୍ତଙ୍କ ସହିତ ମିଶି ୧୯୨୯ ମସିହା ଅପ୍ରେଲ ଆଠ ତାରିଖରେ କେନ୍ଦ୍ର ବିଧାନ ସଭା ମଧ୍ୟରେ ବୋମା ବିସ୍ଫୋରଣ କଲେ । ପଳାଇବାର ସୁଯୋଗ ଥାଇ ମଧ୍ୟ ସେ ଧରାଦେଲେ । ଦୁଇ ମକଦମାର ବିଚାର ହେଲା । କେନ୍ଦ୍ର ବିଧାନ ସଭା ଗୃହରେ ବୋମା ବିସ୍ଫୋରଣ ନିମିତ୍ତ ତାଙ୍କୁ ଯାବଦ୍‌ଜୀବନ ଦ୍ୱୀପାନ୍ତର ଓ ସର୍ଣ୍ଡର୍ସ ହତ୍ୟା ମକଦମାରେ ଫାଶି ହେଲା । ପ୍ରଥମ ମକଦମାରେ ଓଡ଼ିଶାର ଏକଦା ରାଜ୍ୟପାଳ ବାରିଷ୍ଟର ଆସଫ ଅଲ୍ଲି ତାଙ୍କର ଓକିଲ ଥିଲେ । ସହବନ୍ଦୀ ବଟୁକେଶ୍ୱର ଦତ୍ତଙ୍କ ସହିତ ଅଦାଲତରେ ପ୍ରଥମେ ଇନକିଲାବ ଜିନ୍ଦାବାଦ (ବିପ୍ଳବ ଦୀର୍ଘଜୀବି ହେଉ) ଧ୍ୱନି ଦେଇ ସେମାନେ ପ୍ରବେଶ କଲେ । ଧ୍ୱନିକୁ ଅଦାଲତ ଲେଖି ରଖିଲେ । ସେମାନେ ହସହସ ବଦନରେ

କକ୍ଷରେ ପଶିଲେ । ବିଚାର ଶେଷ ପର୍ଯ୍ୟନ୍ତ ମୁହଁରୁ ହସ ଲିଭି ନ ଥିଲା । ଲୁହା ରେଲିଂ ମଧ୍ୟରେ ହାତକଡ଼ା ଦି ହାତରେ ଦେଇ ସେମାନଙ୍କୁ ମୁଦାଲାଗଡ଼ାରେ ବେଞ୍ଚ ଉପରେ ବସାଯାଇଥାଏ । ସରକାରୀ ସାକ୍ଷ୍ୟ ଶୁଣାଣି ପରେ ସେମାନଙ୍କର ବୟାନ ଦେବା ଅବସରରେ ଜୁନ ଛଅ ତାରିଖରେ ସେମାନଙ୍କର ବିବୃତ୍ତି ବାରିଷ୍ଟର ଆସଫ ଅଲ୍ଲି ପଢ଼ି ଅଦାଲତକୁ ଶୁଣାଇ ଦେଲେ । ବିବୃତ୍ତି ପ୍ରସଙ୍ଗରେ ସେମାନଙ୍କର କଥନ ଏହି ମର୍ମରେ ଥିଲା ।

"ଶାସକ ଇଂରେଜଙ୍କୁ ସେମାନଙ୍କର ସ୍ୱପ୍ନ ରାଜ୍ୟରୁ ଜାଗ୍ରତ କରି ଆଣିବାକୁ ବୋମା ପକାଇବାର ଆବଶ୍ୟକତା ଥିଲା । ଯେଉଁ ନିର୍ବାକ ଜନତାର ହୃଦୟ ବିଦାରକ ବ୍ୟଥା ପ୍ରକାଶ କରିବାକୁ କୌଣସି ପଥ ନାହିଁ ସେମାନଙ୍କର ପ୍ରତିବାଦ ଜଣାଇଦେବାକୁ ଆମ୍ଭେମାନେ କେନ୍ଦ୍ରୀୟ ବିଧାନ ସଭାର ଚଟାଣରେ ବୋମା ପକାଇଲୁ । ବଧୀରକୁ ଦୁଃଖ ଶୁଣାଇବା ଓ ଜାଣିଶୁଣି ନ ଶୁଣିବା ଛଳନା କରିବା ଲୋକଙ୍କୁ ଉଚିତ୍ ସମୟରେ ସତର୍କ କରିଦେବା ଆମ୍ଭମାନଙ୍କର ଏକମାତ୍ର ଉଦ୍ଦେଶ୍ୟ ଥିଲା । ଯାହା ଆମ୍ଭେମାନେ କରିଛୁ ତାହା କରିବାକୁ ଅନ୍ୟ ବହୁତ ଲୋକ ଦୃଢ଼ଭାବରେ ଅନୁଭବ କରୁଛନ୍ତି । ଭାରତୀୟ ଅଗଣିତ ଜନ ସମୁଦ୍ରର ମଧ୍ୟରୁ  ସମୁଦ୍ର ମଧ୍ୟରୁ ନିକଟରେ ଏକ ପ୍ରଚଣ୍ଡ ଝଡ଼ ବହିବାକୁ ଯାଉଛି । ଏ ଦିଗରେ ଆମ୍ଭେମାନେ କେବଳ ବିପଦ ସଂକେତ ମାତ୍ର ଦେଖାଇ ଦେଇଛୁ । ଯେଉଁମାନେ ଏହି ଭବିଷ୍ୟତ ବିପଦର ସଙ୍କେତକୁ ନ ଶୁଣି ଦ୍ରୁତଗତିରେ ଆଗେଇ ଯାଉଛନ୍ତି, ଆମ୍ଭେମାନେ ସେହିମାନଙ୍କୁ ହୁସିଆର କରି ଦେଉଛୁ ।"

ଏଥି ସହିତ ଭଗତସିଂହ ହିଂସାମାର୍ଗର ନୈତିକ ସମର୍ଥନ, ଅହିଂସା ମାର୍ଗର ଅଯଥାର୍ଥତା ସହିତ ଗୁରୁଗୋବିନ୍ଦ ସିଂହ, ଶିବାଜୀ, କାମାଲ ପାଶା, ରେଜା ଖାଁ, ୱାସିଂଟନ, ଗାରିବାଲ୍ଡି, ଲେଫାଏତ ଓ ଲେନିନଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସେମାନେ ଏହି ସତର୍କତା ଶୁଣାଇଥିଲେ ବୋଲି ସେ ବୟାନରେ ଉଲ୍ଲେଖକରି ଅଦାଲତଙ୍କ ଦୃଷ୍ଟିକୁ ଆଣିଥିଲେ । ବୋମା ପକାଇବା ମକଦମାର ରାୟ ୧୯୨୯ ମସିହା ଜୁନ ବାର ତାରଖରେ ଦିଆଯାଇ ତାଙ୍କୁ ଯାବଦଜୀବନ କାରାଦଣ୍ଡ ଓ ଦ୍ୱିତୀୟ ହତ୍ୟା ମକଦମାରେ ତାଙ୍କୁ ୧୯୩୦ ମସିହା ଅକ୍ଟୋବର ସାତ ତାରିଖରେ ମୃତ୍ୟୁଦଣ୍ଡ ଦିଆଗଲା । ବିଲାତର ସର୍ବୋଚ୍ଚ ଅଦାଲତ ତାଙ୍କର ଅପିଲ ନାମଞ୍ଜୁର କରିବାରେ ସେ ୧୯୩୧ ମସିହା ମାର୍ଚ୍ଚ ୨୩ ତାରିଖରେ ଲାହୋର ଜେଲରେ ଫାଶି ଖୁଣ୍ଟରେ ଝୁଲିଲେ । ହତ୍ୟା ମକଦମାରେ, ନ୍ୟାୟାଳୟ ପ୍ରତି ବିମୁଖ ଥାଇ ସେ ଓକିଲ ଦେଇ ନ ଥିଲେ ।

ସହିଦ ଭଗତସିଂହ ଓ ତାଙ୍କର ଅନ୍ୟାନ୍ୟ ସହଯୋଗୀମାନେ ମହାନ ଦେଶସେବୀ ଭାବରେ ପରିଚିତ । ବର୍ତ୍ତମାନ ହିଂସ୍ର, ବିପଥଗାମୀ, ପୁଲିଶ-ବିରୋଧୀ ହତ୍ୟାକାରୀମାନଙ୍କୁ

ସାଧାରଣ ହତ୍ୟାକାରୀ ଓ ଦେଶଦ୍ରୋହୀ ଭାବିବା ଅବସରରେ ଭଗତ ସିଂହଙ୍କର ଅଦାଲତ ବୟାନ ପରିପେକ୍ଷୀରେ ସେମାନଙ୍କର ଆଚରଣ ସମୀକ୍ଷା କରିବା ସମୀଚୀନ ହେବ । ମାଲକାନଗିରି ଜିଲାର ନକ୍ସଲବାଦୀ ଆନ୍ଦୋଳନ ଏକ ଶାନ୍ତି ଶୃଙ୍ଖଳା ଜନିତ ବା ରାଜନୈତିକ ଆନ୍ଦୋଳନ ବୋଲି ମନେ କରିବା ଠିକ୍ ହେବ ନାହିଁ । ଏହା ପଛରେ ଅର୍ଥନୈତିକ କାରଣମାନ ଲୁଚି ରହିଛି । ସାତଗୋଟି ଉପଜାତି ବହୁଳ ବ୍ଲକ ମାଧ୍ୟମରେ ଉନ୍ନୟନ କାର୍ଯ୍ୟମାନ କରାଯାଇଛି । ଉପଜାତି ଅନୁଯୋଜନା ମଧ୍ୟ କରାଯାଇଛି । ଯୋଜନା ଆରମ୍ଭରୁ ଏ ପର୍ଯ୍ୟନ୍ତ କେଉଁ ପର୍ଯ୍ୟାୟରେ କେଉଁ କ୍ଷେତ୍ରରେ କେତେ ଟଙ୍କା ଆଦିବାସୀ ମାନଙ୍କର ମଙ୍ଗଳ ଉଦ୍ଦେଶ୍ୟରେ ଖରଚ ହୋଇଛି ତାହା ସରକାରଙ୍କ ପାଖରେ ନିଶ୍ଚୟ ଅଛି । କେଉଁ ଅଧିକାରୀମାନଙ୍କ ମାରଫତରେ ଏହା ଖରଚ ହୋଇଛି ତାହା ମଧ୍ୟ ଜଣାଅଛି । ଯେଉଁ ଅଧିକାରୀ ସେବା ନିବୃତ୍ତ ସେମାନଙ୍କର ବର୍ତ୍ତମାନ ଚାଲିଚଲଣ ଦେଖାଯାଉ । ସେବା ନିଯୁକ୍ତ ଅଧିକାରୀମାନଙ୍କର ସଂପତ୍ତି ଅନୁସନ୍ଧାନ କରାଯାଉ । ଉଭୟଙ୍କ ବିରଦ୍ଧରେ କାର୍ଯ୍ୟାନୁଷ୍ଠାନ ଓ ଫଳାଫଳ ଗ୍ରାମପଞ୍ଚାୟତ ଜରିଆରେ ପ୍ରଚାରିତ ହେଉ । ଏହି ଜିଲାକୁ ବଦଳି କୋଳୁଆ ଭୟ ସୃଷ୍ଟି କରୁଛି । ଶିକ୍ଷକମାନେ ମଧ୍ୟ ବିଦ୍ୟାଳୟକୁ ଯାଉନାହାନ୍ତି । ପରିଦର୍ଶକମାନେ ମଧ୍ୟ ଜାଣିଶୁଣି ଆଖି ବୁଜି ଦେଉଛନ୍ତି । ସମସ୍ତେ ଦରମା ନେଉଛନ୍ତି ବିଦ୍ୟାଳୟ ଗୃହରେ ତାଲା ଝୁଲୁଛି । ଖୋଲିବା କାହାର ଇଚ୍ଛା ନୁହେଁ । ଛାତ୍ରମାନେ ଅନ୍ୟ କାମରେ ନିୟୋଜିତ। ଜିଲାର ଇତିହାସରେ ବିଦ୍ୟାଦାନକାରୀ ସଚ୍ଚରିତ୍ର ଲୋକପ୍ରିୟ ଶିକ୍ଷକ ବା ପରିଦର୍ଶକଙ୍କର ହତ୍ୟା କେବେ ହେଲେ ଘଟିନାହିଁ । ବିଦ୍ୟାଳୟ ନ ଖୋଲିବା କେବଳ ଆନ୍ତରିକତାର ଅଭାବରୁ ।

ସମସ୍ୟାର ସମାଧାନ ନିମିତ୍ତ ଅନ୍ୟ ଜିଲାରେ କୃତୀତ୍ୱ ହାସଲ କରିଥିବା ଦକ୍ଷ ଓ ସାଧୁ କର୍ମଚାରୀମାନଙ୍କୁ ସେଠାରେ ନିୟୋଜିତ କରାଯାଉ । ସେମାନଙ୍କୁ ଆକର୍ଷିତ କରିବାକୁ ବିଶେଷ ସୁବିଧା ସୁଯୋଗ ଦିଆଯାଉ । ଜିଲାର ଉପଜାତି କଥିତ ଭାଷାରେ ଦକ୍ଷତା ହାସଲ କଲେ ସେମାନଙ୍କ ମାଧ୍ୟମରେ ସରକାରୀ ଯୋଜନାର ଲକ୍ଷ୍ୟ କାର୍ଯ୍ୟକାରିତା ଓ ସୁଫଳ ଲୋକଙ୍କୁ ବୁଝାଇ ଦିଆଯାଉ । ସରକାରୀ କାର୍ଯ୍ୟାଳୟରେ କାର୍ଯ୍ୟ ସଂସ୍କୃତି ସେବା ମାଧ୍ୟମ ହେଉ । ଅବିଭକ୍ତ କୋରାପୁଟ ଜିଲ୍ଲାରେ ଜନପ୍ରିୟତା ଓ କାର୍ଯ୍ୟଦକ୍ଷତା ପ୍ରମାଣିତ କରିଥିବା କେତେଜଣ ଜିଲାପାଳ ବର୍ତ୍ତମାନ ମଧ୍ୟ ସେବାରତ । ସେମାନଙ୍କୁ ଓ ସେବା ନିବୃତ୍ତ ସେହିପରି କେତେଜଣଙ୍କୁ ସମସ୍ୟା ଅବଗତ କରାଯାଉ । ସେମାନଙ୍କର ଅତୀତ ଅଭିଜ୍ଞତାର ସଦୁପଯୋଗ କରାଯାଉ । ଓଡ଼ିଶା ବିଧାନ ସଭାରେ ଆନ୍ଦୋଳନର ତୀବ୍ରତା ଓ ହିଂସ୍ରତା ଆଲୋଚିତ ହେଉଛି । ଯଦି ଗୃହ କମିଟି ଗଢ଼ାଯାଇ ଦୋଭାଷୀମାନଙ୍କ ସାହାର୍ଯ୍ୟରେ ସାତଗୋଟି ବ୍ଲକ ପରିଦର୍ଶନ କରି ଲୋକପ୍ରିୟ ଯୋଜନାର ବ୍ୟୟ ଉପରେ ସେମାନଙ୍କର

ପ୍ରତିକ୍ରିୟା ଓ ନୂତନ ବିଭିନ୍ନ ଯୋଜନାର ଆବଶ୍ୟକତା ବିଚାରକୁ ନିଆଯାଏ, ଅସାଧୁ କର୍ମଚାରୀମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ଓ ଦଣ୍ଡ ବିଧାନ ବୁଝାଇ ଦିଆଯାଏ, ସେମାନେ ହିଂସାତ୍ମକ ମାର୍ଗ ଅବଶ୍ୟ ପରିହାର କରିବେ । ମାତ୍ର ଏ ଦିଗରେ ଆମ୍ଭମାନଙ୍କର ଦୃଢ ଆନ୍ତରିକତା ସେମାନେ ପ୍ରଥମେ ଉପଲବ୍ଧି କରିବା ଦରକାର । ଭଗତ ସିଂହଙ୍କ ଭାଷାରେ ବିରାଟ ଝଡ଼ର ବିପଦ ସଙ୍କେତ ଶୁଣାଇ ଦିଆଯାଇଛି । ତାକୁ ଶୁଣିବାର ବେଳ ଆସିଛି ।



# ଏକ ନକ୍ସଲର ଆତ୍ମକଥା

ନକ୍ସଲ ଗାଁ କୁଆଡ଼େ ମୁଁ କଣ ଜାଣିଛି ? ମୋ ଗାଁ ଭାଇଁଶାଢ଼ିଅ କଥା କହୁଛି । ଜଳନ୍ତର ହାଟ ଗୁଣପୁରରୁ ଓଳିକର ଚଲାବାଟ । ଆମ ଗାଁରୁ ଦିକୋଶ ହେବ । ଆମ ଗାଁଟାରେ ଆମେ ଶଉରା ବେଶି । ଲାଞ୍ଜିଆ ସଉରା ନୁହଁ । ମାଲୁଆ ଖଦିପିନ୍ଧା ସଉରା । ମତେ ବୟସ ହେବଣି ଏବେ ତିନିକୋଡ଼ି ଦଶ ଉପରେ । ବାପା କହୁଥିଲା, ଗାଁରେ ଯେତେ ଜମି ଦେଖୁଛ ସବୁ ଆଗେ ଜଂଗଲ ଥିଲା । ଆମେ ଗୁମା ଗାଇବା ଆଡୁ ଆସିଲୁ । ଜଂଗଲ କାଟି ସଫା କଲୁ । ଭଲ ଫସଲ ହେଲା । ବରଷେ ଦି'ବରଷର ଜମିକରି ଆମେ ଦଖଲ କଲୁ । ଜଂଗଲ ଗାରଡୁ (ଗାର୍ଡ଼) କେଶ୍ ଦେଲା ।

ଫରିଷ୍ଟ (ଫରେଷ୍ଟର) ଗାଁକୁ ଆସିଲା, ଜଳନ୍ତରରୁ । ବରଷା ଦିନେ ସେ ତା ଗାଁକୁ ଚାଲି ଯାଇଥାଏ । ଶୁଖିଲା ପାଚିଲା ଦିନ ହେଲେ ଆସେ । ତା କୋଥଳିରେ ତିରୁପତି ମହାପ୍ରଭୁ ଚିତ୍ର ଥାଏ । ସେ ବାପାକୁ ଆଉ ଯେତେ ଆମ ଜାତିଲୋକ ଜଂଗଲ ସଫାକରି ଚାଷ କରୁଥାନ୍ତି ତାକୁ କହେ, 'ଦେଖ, ଏ ଭାରି ପ୍ରତ୍ୟକ୍ଷ ଦେବତା । ମିଛ କହିଲେ ତୋ ବଉଁଶ ଲୋପ କରିଦେବ । କେଉଁ କେଉଁ ଜାଗାରେ କେତେ ପୋଡୁଚାଷ କରିଛ, ସତ ସତ କହିଦେଇ ଯାଅ, ଜମି ଜାଗା ମତେ ନେଇ ଦେଖେଇ ଦିଅ । ସବୁ ଦୋଷ ତୁଟିଯିବ' । ଆମ ଲୋକେ ବତେଇ ଦିଅନ୍ତି । ସେ ସେମାନଙ୍କ ନାଁରେ ଫରିଷ୍ଟ କେଶ୍ କରେ । ମକଦ୍ଦମା ବିଚାର ହାକିମ କରନ୍ତି । ଦଣ୍ଡ ଦିଅନ୍ତି । ଜୁରମାନା ଟଙ୍କା କୁଆଡୁ ଆସିବ । ଆମ ଲୋକ ଯାଇ ଗୁଣପୁର ଜେଲ୍‌ରେ ମାସେ ପନ୍ଦରଦିନ ଖଣ୍ଡେ ରହି ଲେଉଟି ଆସନ୍ତି । ଆରବରଷକୁ ଫେରେ ସେଇକଥା । ଥରକୁ ଥର ଆମଦାନି ଫସଲ ଧରିତ୍ରିମାତା କମ କରିଦେଉଥାଏ । ସାଇମନ ପାଣଠାରୁ ଖବର ପାଇ ଆସିଲେ ଗୁଣପୁରରୁ ଦେବୁଡୁ ରାମୁଲୁ, ଗୁଡ଼ାରି ଲଛି ନାରାୟଣ, କୁମୁଟି । ଏମିତି କେତେ ସାହୁକାର । ସାଇମନ ପାଣ ବୁଝାଇଦିଏ । ଏ ଜମିରଖି ଲାଭ କଣ ? ଫି ବରଷ ସଜା ହେଉଛି । ବରଷକୁ ବରଷତ ଧରିତ୍ରି ମା' ବି

କମ୍ ଦେଉଛି । ଜମି ବିକି ଦିଅ କିଛି ଟଙ୍କା ମିଳିବ । ସୁଖରେ ରହିବ । ଆର ବରଷକୁ ଆଉ ଜାଗାଏ ଚାଷ କରିବ । ସେ ଜମି ତମର ହୋଇଯିବ । ଗାଁର ସବୁ ମଣିଷ ରାଜିହୋଇ ଯାଆନ୍ତି । ଆମେ ତିଆରି କରିଥିବା ଜମି କୁମୁଟି ସାହୁକାର ହାତକୁ ଯାଏ । ଆମ ଦୁଃଖ ସରେ ନାହିଁ । ପୁଣି ଆଉ ଜାଗାଏ ଜମି ତିଆରି । ସରକାର ଆଇନ କଲେ ଆଦିବାସୀ ଜମି ଅଣ ଆଦିବାସୀ କିଣି ପାରିବେ ନାହିଁ । କିଣିଲେ ବିକିରି ଅସିଦ୍ଧ । ଅଧିକାରୀମାନେ ଗାଁକୁ ଆସିଲେ । କେଶ୍ ଛିଣ୍ଡାଇଲେ । ଜମି ଦଖଲ ଆମକୁ ଫେରାଇ ଦେଲେ । ସେମାନେ ଚାଲିଗଲେ । ସାଉକାର ପୁଲିସ୍ ନେଇ ପୁଣି ଆମକୁ ଘଉଡ଼ି ଦେଲା । ଜମି ବେଦଖଲ ହୋଇଥିଲେ ଦଖଲ ଦେବା କ୍ଷମତା ଦେଓ୍ୱାନୀ ଅଦାଲତର । ତହସିଲଦାରର ଏ କାମ ନୁହେଁ । ସେତେବେଳକୁ ଆମ ଭାଷା ବୁଝିବା ମଣିଷ କମ୍ । ଆମ ଭାଷାରେ କଚେରୀ ଗଲେ ଆମେ କଣ କହୁ ତାକୁ ପାପେୟା, ପାନ ଦୋକାନୀ ଦୋଭାଷା କରି ଅଧିକାରୀଙ୍କୁ ଶୁଣାଏ । କେତେ ସତ କେତେ ମିଛ ତା କଥାରେ ? ଧରମ ଏକା ଜାଣେ । ମୋ ବାପ ଅମଳ ଯାଇ ମୋ ବେଳକୁ, ଜଲତର ହାଟ ଗୁଣପୁର ବଜାର ଯାଇ ଆମେ ସବୁ କିଛି ଶିଖିଲୁଣି । ବୁଝିଲୁଣି । ତେଲେଙ୍ଗା ଅଧିକାରୀ ଆଉ ନଥାନ୍ତି, ଜଣେ ଜଣେ ଅଧିକାରୀ ଆମ ଭାଷା ଶିଖନ୍ତି । ଆମର ଦୁଃଖ ବୁଝନ୍ତି । କନ୍ଧ ଶଉରୀଙ୍କର ସେମାନେ ମନେକର ଦେବତା ।

ମୋ ବାପା ସାଂଗରେ ମୁଁ ହାଟକୁ ଯାଏ । ମଣିଷକୁ ଡରିବା ଢଂଗ ଛାଡ଼ିଥାଏ, ଟିକେ ଟିକେ । ମୋ ସାଂଗ ଜପାଗୁଡ଼ାର ଲିବୁରୁ । ଆମ ଜାତିର । ମୋ ବୟସର । ପିଲାଦିନେ ଆମେ ସାଂଗହୋଇ ଛେଳି ଚରାଉଥାଉ । ଏକାଠି କନ୍ଦା କୋଳି ଖୋଜି ଆଣିକରି ଖାଉ । ଦେଶ ସ୍ୱାଧୀନ ହେବା ଶୁଣିଲୁ । ମୋତେ କୋଡ଼ିଏ ପାଖାପାଖି । ଛେଳି ଚରେଇବା ଛାଡ଼ିଲିଣି । କନିଆଁ ଆଣି ନଥାଏ । ମୋ ବାପା କହିଲା ମତେ ସେ କାହାରି ଗୋତି କରେଇ ଦେବ ନାହିଁ । ପୁଅ ମଜୁରି ଲାଗି ପେଟ ପୋଷିବ । ରାସ୍ତା କାମ ହେଉଥାଏ । ମୁଁ ମୂଲ ଲାଗେ ଲେବୁରୁ ମଧ୍ୟ ମୋ ସାଂଗରେ ଯାଏ । ସବୁଦିନେ କଣ ମଜୁରି ମିଳିବ । ମାଣ୍ଡିଆ ବାଜରା ଗୁରଜି ଚାଷକରି ଘରେ ରଖିଥାଉ, ତେନ୍ତୁଳି ବରଗୁଡ଼ି, କାନ୍ଦୁଲ ଫୁଲଝାଡୁ, ଶିଆଳି ଖଲିପତ୍ର ଗୋଟାଉ । ହାଟକୁ ନେଇ ବିକିଦେଉ । ସାହୁକାରମାନେ ନିଅନ୍ତି । ବଦଳେଇ ଆମେ ଲୁଣ, ମାଟିତେଲ (କିରାସିନି) ଚାଉଳ, କାଚମାଳି, ରଂଗମାଳି, ଜାମା,ଖଦି ଆଦି ଆଣୁ । ସେଇ ଜଲତର ହାଟକୁ ଥରେ ଆସିଲେ ବିନୋବା ଭାବେ ଭୂଦାନ ବାବା । ଚାଲି ଚାଲି ଗୁମା ଗାଇବା ପାରଳାଖେମୁଣ୍ଡି ତାଲୁକା ଆଡୁ ଆସିଲେ । ବହୁତ ବଡ଼ ଅଧିକାରୀ, ବଡ଼ ବଡ଼ ନାମକରା ମଣିଷ ତାଙ୍କ ସାଂଗରେ ଥାଆନ୍ତି । ବାବା ଜମିମାଗୁ ଥାନ୍ତି ଅନ୍ୟ ସାହୁକାର ମାନଙ୍କଠାରୁ । ସେମାନେ ଯାହା ଦିଅନ୍ତି

ତାକୁ ସେ ଜମି ନଥିଲା ଲୋକଙ୍କୁ ବଣ୍ଟାଯିବ ବୋଲି କହୁଥାନ୍ତି । ବହୁତ ଭଲ କଥା ଶୁଣାନ୍ତି । ଜଣେ କିଏ କଟକ ଆଡୁ ଆସିଥାଆନ୍ତି । ତାକୁ ଓଡ଼ିଆ କରନ୍ତି । ଶଉରା ଭାଷାରେ ବୁଝେଇ ଦିଅନ୍ତି । ସେ ଆମକୁ ବତେଇଲେ । ଦେଶ ଏବେ ସ୍ୱାଧୀନ ଇଂରେଜମାନେ ଦେଶଛାଡ଼ି ଚାଲିଗଲେ । ଜୟପୁର ମହାରାଜାଙ୍କ ସମସ୍ଥାନ (ଜମିଦାରି) ସରକାରଙ୍କର ହୋଇଗଲା । ଯେଉଁ ଅଧିକାରୀମାନେ ଆସିବେ ତମର ସେମାନେ ସେବା କରିବେ । ତମ ଭଲମନ୍ଦ ବୁଝିବେ । ତମର ଦେହମୁଣ୍ଡ କଥା, ଖାଦି ଖଦିର କଥା, ପିଲାଙ୍କ ପାଠଶାଠ, ପଢ଼ିବା, ପିଇବାକୁ ପାଣି, ଲୁଣ, ମାଟିତେଲ, ଚାଉଳ, ଖଦି ଯୋଗାଇବା ସେଇମାନେ ବୁଝିବେ । ତମେ ଏ ଧୋବ ଧାଉଳିଆ ମଣିଷକୁ ଡର ନାହିଁ । ତମେ ଡରିଗଲେ ସେ ତମ ପଛରେ ଗୋଡ଼ାଇବେ । ତମେ ତାଙ୍କୁ ଗୋଡ଼ାଇଲେ ସେ ଡରି କରି ଦଉଡ଼ି ପଳାଇବେ । ତମେ ଡର ଛାଡ଼ । ସବୁ ଦୁଃଖ ତମର ଘୁଞ୍ଚିଯିବ । ସେଇ କଥା କେଇ ପଦ ମତେ ଆଉ ଲେବୁରୁ ମନକୁ ଭାରି ପାଇଲା । ଆମେ କହିଲୁ ସେଇଆ କରିବା ଏଣିକି । ସମସ୍ତ ଜାତିଭାଇଙ୍କୁ ଆମେ ସେଇଆ କରିବାକୁ ବୁଝେଇଦେବା ।

ଏମିତି ବରଷେ ଗଲା । ସେ ବରଷ ଭଲ ତେନ୍ତୁଳି ଫସଲ ହୋଇଥାଏ । ଜଳତର ହାଟରେ ମାଲ୍ ସାହୁକାରମାନେ ଆସି ଭାରି ଶସ୍ତାରେ କିଣି ନେଲେ । ଲେବୁରୁ କହିଲା ଆମେ ରଖିବା ଯାକୁ । ପଛରେ ବିକିବା । ସେଇଆ କଲୁ । ଖରାରେ ଶୁଖାଇଲୁ । ଓଜନରୁ ଯେପରି ସୁକତି ସାହୁକାର ନକାଟିବ । ହାଟକୁ ଆମେ ନେଲାବେଳେ ହାଟକୁ ଅଳ୍ପ ମାଲ ଆସୁଥାଏ । ଲେବୁରୁ ଆଗ ତାର ତେନ୍ତୁଳି ବିକି ଦେଲା । ମୋର କାଉଡ଼ି (ଏକଭାର) କର ଦାମ ମୁଁ ଦଶଟଙ୍କା ଧରିଥାଏ । ଉଚିତ୍ ମୂଲ୍ୟ । କମ୍‌ରେ ଦେବି ନାହିଁ । ହାଟ ସକାଳ ନଅଟାରୁ ଉପରବେଳା ୪ଟା ୫ଟା ଯାଏ ବସେ । ହାଟ ସରି ଆସୁଛି । ହାଟ ବେପାରୀ ବାରଟଂ ଶାମମୂର୍ତ୍ତି ମୋ ତେନ୍ତୁଳିକୁ ପରଖିଲା । ଦେଖିଲା ଭଲ ଶୁଖିଲା ପାଚିଲା ମାଲ, କହିଲା ମତେ ଦି'ଟଙ୍କା କମ୍‌କର, ନେବି । ମୁଁ ମନାକଲି । ସେ ଶେଷରେ ରାଜିହେଲା । କହିଲା ହାଟ ସରିବାକୁ ବସିଲାଣି । ମୋ ଗୋଟି ମାଲ୍ ଶଗଡ଼ରେ ଲଦି ଘରକୁ ଗଲାଣି । ତୁ ଚାଲ୍ ମାଲ୍ ଘରେ ପହଞ୍ଚାଇ ଦେବୁ । ମୁଁ କହିଲି ହଉଯିବି । ହେଲେ ସାହୁକାର ମତେ ଟିକେ ଧୁଙ୍ଗିଆ (ଧୂଆଁପତ୍ର) ଦେବୁ । ଜଲ୍‌ଦି ଛାଡ଼ିଦେବୁ । ଆଉ କାମ ବତେଇବୁ ନାହିଁ । ସେ ରାଜି ହେଲା । ମୁଁ ଗଲି । ତା ଘରେ ମାଲ୍ ପହଞ୍ଚାଇ ଦେଲି । ମତେ ଦଶଟଙ୍କା ନଦେଇ, ଦେଲା ଦି'ଟଙ୍କା କମ୍ କରି । କହିଲି ସୁକତି କଣ କାଟୁଛୁ । ଏତ ପୁରା ଶୁଖିଲା । ଓଜନ ଠିକ୍ ଆସିବ । ସାହୁକାର କହିଲା, ତୁଟା ଓଲୁଟାଏ କିରେ, ହଇରେ ହାଟରେ ମୁଁ ନ କିଣିଥିଲେ ଆଉ କିଏ ଅବା କିଣିଥାନ୍ତା । ନ ହେଲେ ଘରକୁ ନେଇ ଥାଆନ୍ତୁ । ତୁଛା ବୋଝ ବୋହିଥାନ୍ତୁ । ମୁଁ ଏବେ ନବାକୁ ମନାକଲେ କଣ

ଆଉ କିଏ ଯାକୁ କିଣୁଛି । ଯାଆ ସେତିକି ନେଇ ଯାଆ । ଲେବୁରୁକୁ କହିଛୁ ଅନେଇଥିବ । ରାତି ହୋଇଯିବ । ତହସିଲଦାର କହିଛି ବାଘ ମାତିଛି । ମଲାବାଘ ଦେଖାଇଲେ ପୁରଷ୍କାର ଦେବ । ମୁଁ ରାଜି ହେଲି ନାହିଁ । 'ସାହୁକାର, ପଇସା ନଦେଲେ ମୁଁ ତୋ ଦୁଆରରୁ ଉଠିବି ନାହିଁ । ଏଇଠି ବସିବି । ତୁ ମତେ ମିଛରେ ଠକୁଛୁ । ସାହୁକାର ଗର୍ଜି ଉଠିଲେ, ହଇରେ ତୁମତୁମା ତୋର ଏତେ ବହପ । ମୋ ଘରୁ ନଉଠି ପାଟି କରୁଛୁ, କିଏ ତତେ ବଳ ଦେବ । ହେଡୁ (ହେଡ୍ ପୋଲିସ କନେଷ୍ଟବଲ) ନିଘମନ (ଜମିଦାର ଲୋକ) ନାଁ ସଲୁ (ଅବକାରୀ ବାଲା) ନାଁ ସାର୍‌କିଲ୍ (ସର୍କଲ ଦାରୋଗା) ଏମାନେ କଣ ମୋ କଥା ବାହାରେ । ମୁଁ ଶୁଣିଲି ନାହିଁ, ଠିଆହୋଇ ବଡ଼ ପାଟିରେ କହିଲି । ସାହୁକାର ଆଉରି ରାଗିଗଲା । 'ସଉରା, ଟୋକା ତୋ ଦମ୍ଭ କିଛି କମ୍ ନୁହେଁ । ମୋ କଥା ଉପରେ ଏଡ଼େ ଟାଣ କଥା କହୁଛୁ । କାହା ବଳରେ' ମୁଁ କହିଲି 'ଧରମ ବଳରେ' । ସେମିତି ଠିଆହୋଇ ହାତ ହଲେଇ କହୁଥାଏ । ତା ପିଆଲ (ପିଣ୍ଡା) ଉପରେ । ମତେ ଦେଲା ଗୋଟାଏ ଧକ୍କା । ମୁହଁମାଡ଼ି ତଳେ ପଡ଼ିଗଲି । କହୁଣି ଆଣ୍ଠୁ ଛିଣ୍ଡି ଆଞ୍ଜୁଡ଼ି ହୋଇଗଲା । ଉଠିଲାରୁ ଆଉ ଦି'ଧକ୍କା ଦେଲା । ପଇସା ଆଠଟଙ୍କା ହାତରୁ ଛଡ଼େଇନେଲା । 'ଆକୁ ଜିହଲ କୋଠିକୁ ନେଇଯାଅ' ତା ପୁଅ (ଗୋତି)କୁ ହୁକୁମ ଦେଲା । ସେ ମୋତେ ନେଇ ଗୋଟାଏ ଆଟୁଘର ଭିତରେ ପୁରାଇ ଦେଲା । ପଦାରୁ ବାଉଁଶ ତାଟି କିଳିଦେଲା। କେତେବେଳ ଯାଏଁ ମୁଁ ଅଛି । ସାହୁକାରଆଣି ଆସି ଥୀର (ମାଣ୍ଡିଆ ଥିର) ଚାଉଳ ପେଜ ଆଉ ଗୋଟାଏ ତୁମ୍ବାରେ ପୁରାଇ ରଖିଦେଇ ଗଲା । ଶୋଷ ଲାଗୁଥାଏ, ପିଇଦେଲି । ଶୋଇଗଲି । ସାହୁକାରର ସେ ବାହାହେଲା କନିଆ । ହେଲେ ତାର ଆଉ ୩/୪ଟା, ରଖିଲା ମାଇପି ଥାଆନ୍ତି । ଗୋଟାଏ ଶଉରା, ଗୋଟାଏ କନ୍ଧ । ଗୋଟାଏ ପରଜା, ନା ଉତରା । ସରକାର ଆଇନ୍ କରିଛନ୍ତି ସଉରା ଜମି ମାଲୁଆ ଛଡ଼ା ଆଉ କେହି କିଣି ପାରିବେ ନାହିଁ । କିଣିଲେ ତାହା ଅସିଦ୍ଧ । ହେଲେ ଜାତି ଲୋକ କିଣିଲେ ଠିକ୍ କାଗଜ ପତ୍ର ଲେଖି ରଖିଲେ କିଛି ଜଂଜାଳ ନଥାଏ । ଶାମ୍ବା ସାହୁକାର ସେଇଠି ପାଇଁ ରଖୁଣି ମାଇପି ତିନି ଚାରିଟା ରଖିଛି । ତାଙ୍କଆଡୁ ୨/୩ଟା ଲେଖା ପିଲା । ସାହୁକାର ଚାଷ ଜମିରେ ସେଇମାନେ ବଡ଼ ହୋଇଗଲେ ତାର ବିଶ୍ୱାସୀ ଗୋତି । ଖାଲି ଜନମ ହେବା ୩/୪ ବରଷ ଛେଳି ଚରାଇବା ଯାଏ ତାଙ୍କୁ ଟିକେ ଖାଇବା ପିଇବାକୁ ଦେଇ ବଞ୍ଚାଇ ରଖିଲେ ହେଲା । ଛୁଆହେଲେ ରଖୁଣି ମାଇପିକୁ ମାଣ୍ଡିଆ, ଚାଉଳ, ଭାତିଆ ବେଶିକରି ଦିଆଯାଏ । ଯେଉଁଠି ସାହୁକାରର ବେଶି ଜମି ସେଇଠି ସାହୁକାର ରଖୁଣିଙ୍କ ପାଇଁ ସେଇଠି ପଲାମାରି ରଖିଯାଏ । ବାହାହେଲା ନିଜ ମାଇକିନା ତା ଗାଁରେ । ସେ ସାହୁକାରକୁ ବୁଝାଏ, ଧରମ ମାନି ଚଳ । ପିଲା ଛୁଆଙ୍କର ନହେଲେ ମୋର ଅମଙ୍ଗଳ ହେବ । ସାହୁକାର ଶୁଣି ନ ଶୁଣିବାର ପରି ଭାବ ଦେଖାଏ । ରଖୁଣି ମାଇଜିର ଛୁଆ ତାର ବିନା

ପଇସାରେ ଗୋତି । ତାକୁ ବାପା ଡ଼ାକନ୍ତି । ଜମି ଖରିଦ୍ ତାଙ୍କ ନାଁରେ । ସେ କଣ କମ ମର୍ଯ୍ୟଦା । ସେମାନଙ୍କୁ ତାର ବେଶି ବିଶ୍ୱାସ । ତା ଢେଲ୍‌ଖାନା ଜଗୁଆଳି ଗୋତି ବି ଭାରି ବିଶ୍ୱାସି । ସେ ବଡ଼ ରଖୁଣିର ବଡ଼ପୁଅ ।

ଏଇଠି ମୁଁ ଅଟକ । ଲେବୁରୁ ଦିଘଡ଼ି ଅନେଇଲା । ବେଳ ବୁଡ଼ି ଯାଉଛି । କଣ କରିବ ଦଉଡ଼ି ଦଉଡ଼ି ସାହୁକାର ଘରକୁ ଆସିଲା । ଶୁଣିଲା ଡୁମଡୁମକା ଟଙ୍କା ନେଇ ଲେଉଟି ଗଲାଣି । ବାଟରେ ତ ଦେଖିନାହିଁ । କ'ଣ ଅଘଟଣ ଘଟିଲା କି ? ବାଘ ମାଡିଛି । ଏକୁଟିଆ ଦେଖି ମାଡ଼ି ବସିଲା କି ? ଏମିତି ଭାବି ଜଳତର ଫାଣ୍ଡିକୁ ବାହାରିଲା । ଦାୟିତ୍ୱରେ ହେଡ୍ଡୁ ଆଉ ସେତେବେଳକୁ ନଥାଏ । ଗୋଟାଏ ପୁଲିସ୍ ବଡ଼ବାବୁ (ସବ୍‌ଇନ୍ସପେକ୍ଟର) ଥାଏ । ତା ବଡ଼ ପୁଲିଶ୍ ସାହେବ ତାକୁ ରାଗରେ ଥାନା ନଦେଇ ଫାଣ୍ଡିକୁ ପଠେଇଥାଏ । ମହାପାତ୍ର ବାବୁ । ତା ରୂପ ଯେମିତି ଗୁଣ ସେମିତି । ହାଟ ବୁଲି ଦେଖେ । ଜୋର୍ ଜୁଲମ ଦେଖିଲେ ଫାଣ୍ଡିକୁ ଧରିନିଏ । କାହା ପାଖରୁ କଫି କପ୍ ବି ଛୁଏଁ ନାହଁ । ଲେବୁରୁ ହାଟରେ ପହଞ୍ଚି ଦେଖିଲା, ବାବୁ ସେଇ । ସବୁକଥା ଶୁଣାଇଲା । ଖୁବ୍ ମନଦେଇ ସେ ଶୁଣିଲା । ତାର ସାଂଗରେ ବାହାରିଲା ସାହୁକାର ଗାଁ ପଖନାପଦରକୁ । ଶାମ୍ୟାକୁ ଡାକିଲା, ଆଖି ପଡ଼ିଲା ଜିହଲ ଘର ଉପରେ । ତାଟି କବାଟ ଠେଲିଦେଲା । ମୁଁ ଶୋଇଛି ଦେଖିଲା । ମୋତେ ପଚାରିଲା ସବୁକଥା କହିଲି । ତା ମନ ବୁଝିଗଲା ମୋ ଆଞ୍ଚୁଡ଼ା ଜାଗାଟା ରକ୍ତଲଗା ଦିଶୁଥାଏ । ସାହୁକାର କହିଲା, 'ପଇସା ନେଲା ଡୁମଡୁମା । ସିଧା ଭାଟିକୁ ଗଲା । ସେଇଠି ପିଇଲା । ସବୁ ପଇସା ସାରିଦେଲା । ମାତିକରି (ମାତାଲ୍ ହୋଇ) ଟଳମଳ ହୋଇ ମୁହଁମାଡି ପଡ଼ିଲା । ଗୋରୁ ଗାଈ ଗୋଠ ଲେଉଟାଣି ବେଳ । ରାସ୍ତା ମଝି ଅଧାରେ ପଡ଼ିଥିଲା । ମୋ ଗୋତିମାନେ ତା ଅବସ୍ଥା ଦେଖି ମତେ ଜଣେଇଲେ । ମୁଁ କହିଲାରୁ ଟେକାଟେକି କରି ଆଣି ତାକୁ ଏ ଘରେ ରଖିଦେଲେ । ମହାପାତ୍ର ବାବୁ ଶାମ୍ୟା ଗାରଦ ଘର କଥା ଆଗରୁ ଶୁଣିଥିଲେ । ଯେଉଁ ଗୋତି କାମରେ ଢିଲା କରେ ଘରମୁହାଁ ସବୁବେଳେ ହୁଏ, ତାଙ୍କୁ ସେଇ ଘରେ ରଖି ଦଣ୍ଡ ଦିଆଯାଏ । ଦିନେ ଦି' ଦିନ ବାଦ ସେମାନେ ମଣ ହୋଇଯାଆନ୍ତି । ସାହୁକାରିଆଣି ପେଜପାଣି ଟିକେ ଦେଉଥାଉ ବୋଲି ତାଙ୍କ ଜୀବନ ଥାଏ । ଭାଟିକୁ ଗଲେ ପୁଲିସ୍ ବାବୁ । ଭାଟିବାଲା ଆଗରୁ  ମତେ ଦେଖିନାହିଁ ବୋଲି କହିଲା । ହାଟଦିନ ତ ଭାଟିରେ ଭାରି ଭିଡ଼ ଥାଏ । କେମିତି ଦେଖିବ ? ମହାପାତ୍ର ବାବୁ ମତେ ନେଇ ଥାନାକୁ ଗଲେ, ଫାଣ୍ଡିରେ କଣ ଲେଖାଲେଖି କରି ମୋ ଦୁଃଖ ଜଣାଇଲି । ଶାମ୍ୟା ସାହୁକାର ନାଁରେ ମକଦ୍ଦମା ହେଲା । ସେ ଜାମିନ୍‌ରେ ଛଡ଼ାଗଲା । ଗୁଣପୁରରେ ମକଦ୍ଦମା ପଡ଼ିବ ବୋଲି ମତେ କହିଲେ । ୪/୬ ମାସ ବାଦେ ମୋତେ ଡକରା ହେଲା । ପୁଲିସ୍ ପାଇକ ଆସି କହିଗଲେ । ମୁଁ

ଗୁଣପୁର ଗଲି । ଆଗରୁ ହାଟକୁ ଯାଇଥିଲି, କଚେରି ଦେଖି ନଥିଲି। ଜେଲ୍‌ରୁକୁ ମଧ ଡକରା ହୋଇଥାଏ, ସାକ୍ଷୀହୋଇ । ଆମକୁ ଡରଡ଼ର ଲାଗୁଥାଏ । ଭୁବନ ଓକିଲଙ୍କ ଘରକୁ ଗଲୁ । ସେ ଶଉରା ଭାଷା କୁହନ୍ତି । ତାଙ୍କ ଘରେ ଦେଖିଲୁ ନାଗ ଭୂଷଣ ପଟ୍ଟନାୟକଙ୍କୁ । ତା ବାପା ରାମମୂର୍ତ୍ତି ଆମ ଗାଁକୁ ଯାଏ । ନାଗଭୂଷଣ କଟକରେ ଓକିଲାତି ପଢୁଥାଏ । ସେ ଶଉରା ଶିଖିଲାଣି । ଭଲ କହେ । ଆମ ଦି'ଜଣଙ୍କ ସାଂଗରେ ଦୁଃଖ ସୁଖ ହେଲା । ଭୁବନ ନାଗଭୂଷଣ ଆମକୁ ସେଇ ଭୂଦାନ ବାବା ଯାହା କହିଥିଲେ ସେଇଆ କହିଲେ । ଏ ଧୋବ ଧାଉଳିଆ ଜମିଦାର ସାହୁକାରଙ୍କୁ ତମେ ଡରିଲେ ତମକୁ ଗୋଡ଼ାଇବେ, ତମେ ତାଙ୍କୁ ଗୋଡ଼ାଇଲେ ସେ ଡରିକରି ତମ ପାଖରୁ ପଳେଇବେ ।

ମକଦ୍ଦମା କଚେରୀରେ ପଡ଼ିଲା । କୋଟବାବୁ ସରକାରଙ୍କ ତରଫରୁ ଆମର ଜମାନବନ୍ଦୀ କରାଇଲେ, ଶାମ୍ୟା ଓକିଲ ଦେଇଥାଏ ମିନାରାଓ ଓକିଲକୁ । ଶଉରା ପଟ୍ଟନାୟକ ଗୁଣପୁରର । ଭଲ ଶଉରା କହେ । ଆମ ଗାଁକୁ ଯାଏ ଜଂଗଲ ଜିନିଷ ଖରିଦ୍ ବିକ୍ରିରେ ସାହୁକାରଙ୍କୁ ସାହାର୍ଯ୍ୟ କରେ । ଦିନେ ଯାଇ ଆମ ଦିଜଣଙ୍କୁ ଡକେଇ ବୁଝେଇଲା । ତମକୁ ମିନାରାଓ ଯାହା ପଚାରିବ ସେଥିରେ ହଁ କହିଦେବ । ତମ ସାକ୍ଷୀରେ ସାହୁକାରର କିଛି ହେବ ନାହିଁ । ତାର ଖାଲି ରାଗ ରହିବ । ଆମେ ପଚାରିଲୁ ଭୁବନ ଓକିଲ ଆମକୁ କହିଲା ଯାହା ସତ, ସେତିକି ମାନିବୁ । ସେଇ କଥା କହିବୁ, ଆମେ କଚେରିରେ ଜେରା ହେବାବେଳେ ସେଇକଥା ଦୋହରାଉଥାଉ । ମକଦ୍ଦମା ବିଚାର ଚାଲିଲ। ମହାପାତ୍ର ବାବୁ ଫି ତାରିଖରେ (ବାଇଦାରେ) କଚେରୀ ଯାଏ । କୋଟବାବୁ ସାଂଗରେ କଣ କଥାବାର୍ତ୍ତା ହୁଏ । ଦିନେ ମେସରଟେ ହୁକୁମ ଶୁଣାଇଲେ ଶାମ୍ୟାକୁ ତିନିମାସ ଜେଲ । ଆଗରୁ ତା ଓକିଲ କହୁଥିଲା ତାକୁ ତୋର କେହି ରୁମ ବଙ୍କା କରିପାରିବେ ନାହିଁ । ତୁ ମାରିବା ଆଉ ଘରେ ଆବଦ୍ଧ କରି ରଖିବାର କୌଣସି ପ୍ରମାଣ ନାହିଁ । ଶାମ୍ୟା ସଜାଶୁଣି ଛାନିଁଆ ହୋଇଗଲା । ଥାନାଠୁଁ କଚେରୀ ଯାଏ ସବୁଠି ଶାମ୍ୟା ଭଲ ମନ୍ଦରେ କି ପର୍ବପର୍ବାଣିରେ ଦି ଚାରିଟା ଖାସୁ (ସୁନାମୋହର) ପହଞ୍ଚାଇବାର ବ୍ୟବସ୍ଥା କରିଥାଏ । ଏଥର ସେଇଟା କାଟୁକଲା ନାହିଁ । ମନରେ ତାର ଭାରି ଦୁଃଖ ହେଲା । ଅପିଲ କରିବା କଥା ଯାଇ ଜୟପୁର ଜର୍ଜ କୋର୍ଟରେ । ଓକିଲ ଦେଲା ଟାଣୁଆ କଳାନାଗକୁ। (ପୁରୁଣା ସର୍କଲ ଇନ୍ସପେକ୍ଟର ରାମକୃଷ୍ଣ ରାଓ) । ତାର ବି ଭାରି ଟାଣ ଫିଜ୍ । ଶାମ୍ୟା ଶରଣ ପଶିଲା। ମାହାପ୍ରୁ ଯାହା ନେବାର ନେ ପଛେ ଆଉ ଶହେ ଖାସୁ ପଛେ ଖରଚ ହେଉ । ତୁ ମତେ ଜେଲ୍ ଯିବାରୁ ରଖେ । ସେଇଠି ବିଚାର ହେଲା । ମକଦ୍ଦମାର ସିଧା ସଳଖ ପ୍ରମାଣ ନଥିଲା । ଯାହା ମୋର ନିଜର ସାକ୍ଷ୍ୟ । ପୁଣି ଜେଲ୍‌ରୁ ମୋର ସାଂଗ । ସେ ନିରପେକ୍ଷ ନୁହେଁ । ଖାଲି ଘଟଣା ଓ ଅବସ୍ଥାଚକ୍ରରୁ ସାହୁକାର ଦୋଷୀବୋଲି କହି ତଳକୋଟ

ହାକିମ ସଜା ଦେଇଛି । ମଦଖାଇ ମାତିବା ବା ପଇସା ହଜାଇବା, ରାସ୍ତାରେ ମୁହଁମାଡ଼ି ପଡ଼ିବା, ଗୋରୁ ଗାଈ ଚକଟି ଦେବା ଡ଼ରରେ ତାକୁ ନେଇ ନିଜ ଗୁହାଳରେ ନିରାପଦ ରଖିବା ଏ ସବୁର ସମ୍ଭାବନା ଏଡ଼ାଇ ଦିଆଯାଇ ନପାରେ। ଜଜ୍ ସାହେବ ବୁଝିଗଲେ । ସନ୍ଦେହରେ ଶାମ୍ୟାକୁ ଛାଡ଼ିଦେଲେ । ସରକାରୀ ଓକିଲ କଣ କହିଲେ ମୁଁ ତ ଯାଇ ଜୟପୁରରେ ଶୁଣିନାହଁ । ମାତ୍ର ସମସ୍ତେ କହନ୍ତି ସେ ନିଜେ ଟାଣକରି ସରକାରୀ ମକଦ୍ଦମା ଚଳେଇଲେ ନାହଁ ।

ଭୁବନ ଓକିଲଙ୍କ ଘରେ ସେ ମତେ ଦିନେ ଶାମ୍ୟା ଖଲାସ ହେବା ଶୁଣାଇଲେ । ନାଗଭୂଷଣ ସେଇଠି ଥାଏ । ମୋ ସାଂଗରେ ଲେବୁରୁ ଥାଏ । ଆମ ଦି' ଜଣଙ୍କ କାହିଁକି ସେ ଭାରି ଶରଧା କରୁଥାଆନ୍ତି । ଆମେ ମନମାରି ବସିଚୁ ସାହୁକାର କଣ କରିବ ? ଆମକୁ କେହି ମଜୁରି ନଦେବାକୁ କହିବ ସମସ୍ତଙ୍କୁ । ଆମଘର ଲୁଟି ନେବ । ତାର ତ ସାହସ ବଢ଼ିଗଲା ଏବେ ମକଦ୍ଦମାରେ ଖଲାସ ପାଇଲାରୁ । ନାଗଭୂଷଣ କହିଲା 'ଆରେ ଶୁଣ, ଡରଛାଡ଼, ତାକୁ ଡରାଅ । ଏ ଧୋବ ଧାଉଳିଆ ତମ ଦୁଃଖ ବୁଝବେ ନାହିଁ । ତୁମର ମଂଗଳ ପାଇଁ ଶହ ଶହ ଟଙ୍କା ଆସୁଛି । ଯେତେ ସାନ ବଡ଼ ଅଧିକାରୀ ଦେଖୁଛ ସେଇ ସବୁ ତାକୁ ଖାଇଯାଉଛନ୍ତି । ବଡ଼ ବଡ଼ ମେଢ଼ (କୋଠାଘର) ତାଙ୍କର । ଗାଡ଼ି ମଟର ତାଙ୍କର । ବଡ଼ ବଡ଼ ବେପାର ତାଙ୍କର । ଖାଇପିଇ ମଉଜ ମଜଲିସ୍‌ରେ ସେଇମାନେ ରହୁଛନ୍ତି । ନିଜ ରକତ ଦେଇ ତମେ ମରୁଛ । ତମ ରକତ ଶୋଷି ସେମାନେ ମସ୍ତ ହେଉଛନ୍ତି । ମଦ ଦୋକାନ ଏଇ ସହରରେ, ସେମାନେ ପିଉଛନ୍ତି । ମାତୁଛନ୍ତି । ତାଙ୍କର ଦୋଷ ନାହିଁ । ସେମାନେ ସମସ୍ତେ ମିଶିଯାଇ ଗୋଟାଏ । ତମର ସୁଖ ଦେଖିବେ ନାହିଁ । ତମ ପାଇଁ ଯାହା ସରକାରରୁ କଟକ ଭୁବନେଶ୍ୱରରୁ ଆସିବ ସବୁ ମାରି ଖାଇଯିବେ । ଫି ମାସରେ ଖାସୁ (ମୋହର) କିଣି ରଖିବେ । ବେଙ୍କରେ ଟଙ୍କା ଜମେଇବେ । ତମର ଗରଜ ପଡ଼ିଲେ ତମରି ଟଙ୍କା, କାଗଜରେ ଟିପନେଇ ତମକୁ ଉଧାର ଦେବେ । ସୁଧ ଦେଢ଼ା ନେବେ । ତମ ଜମି ଫସଲ ମାଣ୍ଡିଆ ହେଉ, ଗୁରଜି ହେଉ, କାନ୍ଦୁଲ ହେଉ, ମକ୍କା ହେଉ, ଧାନ ହେଉ, ପାଚିବା ଆଗରୁ ଅଳ୍ପ ପଇସା ଦେଇ କିଣି ନେଉଛନ୍ତି । ତମେ ଅମଳକରି ତାଙ୍କ ଗୋଦାମରେ ଦେଇ ଆସୁଛ । ଫେରେ ନିଅଣ୍ଟ ବେଳେ ସେଇଥାକୁ ଚଢ଼ା ସୁଧଦେଇ ଆଣି ଖାଇ ବଞ୍ଚୁଛ । ତମର ଜମିରେ କମଳା ଗଛ, ପିଜୁଳି ଗଛ, ସପୁରୀ ଗଛରେ ଫଳ ଧରିବା ବେଳକୁ ଆସି ତାକୁ ଶାଗମାଛ କରି କିଣି ନେଉଛନ୍ତି । ପାଚିଲା ଫସଲ ଯାଏ ତମେ ଖଟୁଛ । ତାଙ୍କ ଦୁଆରେ ଦେଇ ଆସୁଛ । ଲାଭ ତାଙ୍କର । ତମ ପିଲାଏ ପିଜୁଳିଟାଏ କି ସପୁରିଟାଏ ଦେଖୁ ନାହାନ୍ତି । ଏହାକୁ ବଦଳାଇବା ଆମେ । ତମେ ଦି' ଜଣ ଆର ହାଟପାଳି ଡେପାଗୁଡ଼ା ବାଉରି ସାହିରେ ମୋ ଘରକୁ ଆସିବ ।

ଆଉ କେତେକଥା ମୋ ଠାରୁ ଶୁଣିବ। ଭୁବନ ଓକିଲଙ୍କ ପାଖରେ ସେତେବେଳକୁ ନାଗଭୂଷଣ କାମ ଶିଖୁଥାଏ । ସେ ମଧ୍ୟ ଆମକୁ କହିଲେ ସେ ଯାହା କହିବ ମନଦେଇ ଶୁଣିବ । ସବୁକଥା ଗାଁକୁ ଗଲେ ତମର ସବୁ ଲୋକଙ୍କୁ ଜଣାଇବ । ସେଦିନ ଗାଁକୁ ଗଲୁ । ସେଇକଥା ଗାଁରେ ଆଉ କେତେକଙ୍କୁ କହିଲୁ । ବୁଢ଼ା ବୁଢ଼ା କେତୁଟାଙ୍କର ଡ଼ର ଛାଡ଼ିନଥାଏ । ସେମାନେ ଡରାଇଲେ । ଜମିଦାର ସାହୁକାର କଥା ନ ମାନିଲେ ଆମର ଭଲଗତି ନାହିଁ । ସେମାନେ ମିଶି ଲାଛି ଦେବେ । ଆମେ ଟୋକାଏ କହିଲୁ କେତେ ଲାଛିବେ ଲାଛନ୍ତୁ । ଆମେ ଏବେ ଗୋତି ଖଟି ମରୁଛୁ । ଉପାସରେ ମରୁଛୁ । ହେଲେ ସେମାନେ ଲାଛିଦେଲେ ମରିବୁ । କଥା ଏମିତି ଅଛିଣ୍ଡା ରହିଲା ।

ପୁଣି କେଇଦିନ ବାଦ ବାଉରିସାହିରେ ନାଗଭୂଷଣଙ୍କ ଘରକୁ ଗଲୁ । ଯିବା ବାଟରେ କାନ୍ଥରେ କେତେ ମଣିଷଙ୍କ ଚିତ୍ର, କେତେ ଦେଶର ଚିତ୍ର ବନ୍ଧୁକର ଚିତ୍ର ଭିନ୍ନ ଭିନ୍ନ ରଂଗିତରେ ରଂଗା ହୋଇଥାଏ । ଗୋଟାଏ ବହିରୁ କଣ ସବୁ ଲେଖା ହୋଇଥାଏ । ତା ମାନେ କୁଆଡ଼େ ହେବ ଆମକୁ କ୍ଷମତା ମିଳିବ ବନ୍ଧୁକ ଧରି ଏଇ ଥିଲାବାଲାଙ୍କୁ ଜବତ କଲେ । ନହେଲେ ସେମିତି ଖଟିଖିଆ ହୋଇ ଖଟି ଖଟି ମରିବୁ । କେଉଁ ଗୋଟାଏ ବଡ଼ ଦେଶର ନେତା କିଏ ତାହା କହିଛି । ନାଗଭୂଷଣ ଆମକୁ ଖାଇବାକୁ ଦେଲା । ରାତିରେ ରହିବାକୁ ଜାଗା ଦେଲା । ଆଉ ୨/୪ ଜଣ କିଏ ଚିକାକୋଲ ଆଡୁ ଆସିଥାଆନ୍ତି । ଆମ ଭାଷାରେ କହୁଥାନ୍ତି । ଦିଇଟା ବଡ଼ ଦେଶ କଥା କହିଲେ । ସେଇଠି କେହି ଗରିବ ନାହିଁ, କେହି ଉପାସିଆ ନାହିଁ, କେହି ସାହୁକାର ଜମିଦାର ନୁହନ୍ତି । ସମସ୍ତେ ଖଟିବେ, ଖାଇବେ, କେହି ଖାଲି ବସିକରି ଖାଇ ପାରିବେ ନାହିଁ । ତାଙ୍କ ଦୁଃଖ ସୁଖ ହାରି ଗୁହାରି ସବୁ ସରକାରୀ ଲୋକ ବୁଝିବେ । ସେଇମାନେ ସେଇ ବନ୍ଧୁକ ଧରି ଦେଶରେ ଏମିତି ଅବସ୍ଥା ଆଣିଛନ୍ତି । ସବୁ ବଦଳେଇ ଦେଇଛନ୍ତି । ତମେ ସବୁ ସେମିତି କର । କେମିତି କରିବ ଆମେ ବତେଇ ଦେବୁ । ଯେଉଁ ସାହୁକାର ଏବେ ବଡ଼ ମୋଟା ରୋଟା ହୋଇ ବେକରେ ସୁନାହାର ପକାଇ ଗାଞ୍ଜିଆରେ ଟଙ୍କାଧରି ଘରେ ବସି ତୁମକୁ ଶୋଷୁଛନ୍ତି, ତମର ଗରଜ ବେଳେ ଟଙ୍କା କି ଚାଉଳ ଦେଇ ହାଣ୍ଡନୋଟ୍ କାଗଜ ନେଇ ତମଠୁ ଦି'ଗୁଣ, ଚାରିଗୁଣା କରି ଆଦାୟ କରୁଛନ୍ତି ତାଙ୍କୁ ଆଗ ନିପାତ କର । ତାଙ୍କ ଜୁଲମ ବନ୍ଦ ହୋଇଯିବ । ତମେ ଗୋଡ଼ାଇଲେ ସେ ଦଉଡ଼ିବେ । ରାତିଟା କଥା ଶୁଣିବାରେ ଗଲା । ମୁଁ ଆଉ ଲେବୁରୁ ଭାବିଲୁ ଠିକ୍ କଥା । ଆମେ ତ କନିଆଁ ଆଣି ନେଉଁ । ମକୁରି ଖଟି ଚଳିଆସୁଛୁ । ତାଙ୍କ କଥାରେ କାହିଁକି ନଚଳିବା । କଣ ହେଉଛି ଦେଖି ଆସିବା । ଆମେ ଗାଁକୁ ଆସିଲୁ । ଆଠ ଦଶଦିନ ବାଦେ ପୁଣି ଗାଁ ଛାଡ଼ିଲୁ । କହିଗଲୁ ଦୂରଦେଶକୁ ଯାଉଛୁ । ବିଳମ୍ବରେ ଫେରିବୁ ।

ଆମ ଦି'ଜଣଙ୍କର ସେତେବେଳକୁ ଡର ପୁରା ଛାଡ଼ିଯାଇଥାଏ । ଆମେ ମରିବୁ ଭଲ କଥା । ଉପାସରେ ମରିବୁ ତ ନାହିଁ । ତାଙ୍କ ସାଂଗରେ ଆମେ ଠାଆକୁ ଠାଆ ଗଲୁ । ଦିନରେ ବିଶ୍ରାମ ନେଉ ରାତିରେ ଜଂଗଲ ବାଟେ ଚାଲୁ । କୁରୁପମ, ବାତିଲ, ସମପୋଟା, ଇଛାପୁର କେତେ ଜାଗା ବୁଲିଲୁ । କେତେକଥା ଶୁଣିଲୁ । ଆମ ଖାଇବା ପିଇବା ଖଦି ଲୋଡ଼ା ଥିଲେ, ତାକୁ, ନହେଲେ ଧୁଂଗିଆ ସେଇମାନେ ଦେଇଦିଅନ୍ତି । ଆଦର ଆମେ ତାଙ୍କଠାରୁ ପାଇଥାଉ । ଧୋବ ଧାଉଳିଆ ଆମକୁ ଯେମିତି ଛି ଛାକର କରି କରଛଡ଼ା କରି ରଖିଥାଆନ୍ତି, ତାହା ସେଠରେ ନଥାଏ । ରାତିରେ ଦିନେ ଦିନେ ନଳି (ବନ୍ଧୁକ) ଟାଙ୍ଗିଆ କଟୁରୀ ନିଆଁହୁଳା ବଡ଼ ଟର୍ଚ୍ଚ ଲାଇଟ୍ ଧରି ସେମାନେ ଦଳେ ବାହାରନ୍ତି । ଆମେ ପୁରୁଣା ହେଲେ ତାଙ୍କ ସାଙ୍ଗେରେ ଯିବୁ ବୋଲି କହନ୍ତି । ଆଉ ସାଙ୍ଗମାନେ କହିଲେ ବଡ଼ ବଡ଼ ସାହୁକାରଙ୍କର ଘର ରାତିରେ ଘେରାଉ ହୋଇଥାଏ । ଛୁଆପିଲା ସ୍ତ୍ରୀ ଲୋକ, ଅକାମିକା ମଣିଷ ସମସ୍ତଙ୍କୁ ଘରୁ ବାହାର କରି ଦିଆଯାଏ । ତିରିଲା ମଣିଷକୁ ସୁନା ଲୋଭରେ କି ଆଉ କାହିଁ ପାଇଁ ଛୁଇଁଲେ ଦଳପତି ମୁଣ୍ଡକାଟ ଶାସ୍ତି ଦେବେ । ମାଲିକକୁ ବନ୍ଧା ସୁନା ସବୁ ସାଂଗରେ, ପାଖରେ ଥିବା ହାଣ୍ଡନୋଟ ମାନ ଦେବାକୁ କହନ୍ତି । ଦେଲେ ଭଲ କଥା । ନହେଲେ ମୁଣ୍ଡକାଟ ଶାସ୍ତି ମିଳେ । ମୁଣ୍ଡକୁ ଘର ଆଗରେ ଉଚ୍ଚ ଯାଗା ଚଉରା ନହେଲେ ଉଚ୍ଚ ପିଣ୍ଡାରେ ରଖି ଦିଆଯାଏ । ଆମ ଭିତରେ ଲୋକ ଥାଆନ୍ତି । ପାଟି ନଫିଟାଇ ଚୁପ୍‌ଚାପ୍ ଯାଇ ଖାତକ ଘରେ ମାଲ ପହଞ୍ଚାଇ ଦିଅନ୍ତି । ହାଣ୍ଡନୋଟମାନ ମହାଜନ ଘର ଆଗରେ କାଠ ନିଆଁ କରି ସେଥିରେ ପୋଡ଼ି ଦିଆଯାଏ । ପୁଲିସ୍‌ବାଲା ପଛରେ ଆସନ୍ତି । କାହାକୁ ଧରି ପାରନ୍ତି ନାହିଁ । ଡରରେ ଗାଁ ଛାଡ଼ି ବଡ଼ ଜମିଦାର, ସାହୁକାର ନିରାପଦରେ ରହିବେ ବୋଲି ସହରକୁ ପଳେଇଲେ । ତାଙ୍କ ସାଙ୍ଗରେ ଦି ବରଷ ଖଣ୍ଡେ କଟିଗଲା । ଲେବୁରୁ ଯେମିତି ମୁଁ ସେମିତି । ଆମେ ଖୁସି । ଥରେ ଓଡ଼ିଶା ଆନ୍ଧ୍ରଆଡୁ ବନ୍ଧୁକିଆ ପୁଲିସ୍ ମାଡ଼ି ଆସିଲେ, ଆମେ ଧରାହେଲୁ । ସେସବୁ କଣ ବା କହିବି । ନାଗଭୂଷଣର ଫାଶି ଦଣ୍ଡ ହେଲା । ଫାଶି ପାଇବା ଆଗରୁ ରାଷ୍ଟ୍ରପତିଠାରୁ କ୍ଷମା ପାଇଲା । ଭୁବନ ଓକିଲ ଧରାପଡ଼ିଲେ ଅଲଗା ଜାଗାରେ । ବିଚାରରେ ଦଣ୍ଡପାଇ ଅପିଲ୍‌ରେ ଛାଡ଼ ପାଇଲେ । ଦେହ ଉପରେ ଏମିତି ବର୍ଷ ବର୍ଷ ଧରି ଅତ୍ୟାଚାର କରି ଦିଜଣଯାକ ବେମାରିଆ ହୋଇଗଲେ । ନାଗଭଷଣ ମଲାଣି । ଭୁବନ ଓକିଲ ଏବେ ଗୁଣପୁରରେ ଓକିଲ । ଆମ ସବୁରି ଉପରେ ପୁଲିସ୍‌ର ନଜର । ଆମେ କୁଆଡ଼େ ନକ୍ସଲବାଦୀ । ଆମେ ଏବେ ବି କହୁଛୁ ଧୋବ ଧାଉଳିଆ ବାବୁମାନେ, ଆମ ମଙ୍ଗଳ ପାଇଁ ଆସୁଥିବା ଟଙ୍କା ଆଉ ଲୋଡ଼ା ଦରବ ମାନ ତମେମାନେ ମିଳି ବାଟମାରଣା କରନାହିଁ। ଆମକୁ ଅନ୍ଧାରରୁ ଆଲୁଅକୁ ନିଅ । ଆମର ଦୁଃଖ ଦୂର କରିଦିଅ । ଆମେ ସବୁ ଆଇନ୍ ତମର ମାନିବୁ । ନହେଲେ ଆମେ ତମ ଗୁଳିରେ ପଛକେ ମରିବୁ ମାତ୍ର ତା ଆଗରୁ ତମ ଭିତରୁ ଅନେକ ଆମ ହାତରେ ମରୁଥିବେ ।

ମୁଁ ଆଉ ଲେବୁରୁ ଏବେ ଆଉ ଭାଇଁଷାଡ଼ିଅ କି ଢ଼ପଗୁଡ଼ାରେ ରହୁନାହୁଁ । କେଉଁଠି ଅଛୁ କଣ କରୁଛୁ କାହିଁକି କହିବୁ ? ତମ ଲୋକବାକ ସଙ୍ଗନଥାଟ, ପାଇକ ପଟୁଆରି ସବୁରି ହାତରେ ଖୋଜି ନିଅ । ମନେ ରଖିଥାଅ ସବୁ ନ ଥିଲାବାଲା, ତଳିଆ ଖଟିକିଆ ନିଅଣ୍ଡିଆ ଲୋକ ଆମ କଥାରେ ମୁଣ୍ଡ ଟୁଙ୍ଗାରିବେ । ତମକୁ ଭକ୍ତି ଖାଲି ଲୋକ ଦେଖାଣିଆ । ମୁଁ କହୁଛି ମୁଁ ଆଇନ କାନୁନ୍ ମାନିବା ମଣିଷ ଜଣେ । ଆତଙ୍କବାଦୀ ମୋତେ ନୁହେଁ

"କହୁଛି ସତ
ଶୁଣିଥା ମିତ
ଧ୍ୱଂସ ମନେ ମୋର ନାହିଁତ ।

ଏ ନୁହେଁ ମୋର ଭୂଷଣ-

ପ୍ରଳୟ ଧୂମକେତୁ ମୁଁ ନୁହେଁ
ସୃଷ୍ଟି ସ୍ଥିତି ନାଶନ ନୁହେଁ ।"

(ଅନ୍ନଦାଶଙ୍କର ରାୟ)

*(୰ନାଗଭୂଷଣ ଓ ଭୁବନ ମୋହନଙ୍କ ବ୍ୟତୀତ ଅନ୍ୟଗୁଡ଼ିକ ଛଦ୍ମନାମ । ସତ୍ୟ ଘଟଣା ଉପରେ ଆଧାରିତ । ୨୦୦୦ ମସିହା ଗୁଣପୁରରେ ସାକ୍ଷାତ)*



# ଆମ ପୁରାଣରେ କୁଶିକ୍ଷା ?

ବୈଦିକ ଯୁଗ ପରେ ବେଦ ଓ ଷଡ଼ଦର୍ଶନର ଜ୍ଞାନ ସମସ୍ତଙ୍କ ପାଇଁ ବୋଧଗମ୍ୟ ବା ସୁଖପାଠ୍ୟ ହେଲା ନାହିଁ । ତେଣୁ ଅତି ପ୍ରାଚୀନ କାଳର ପ୍ରସିଦ୍ଧ ବ୍ୟକ୍ତି, ସମାଜ ଓ ଧର୍ମ ଇତ୍ୟାଦି ବିଷୟକୁ ଅବଲମ୍ବନ କରି କେତେକ ଆଖ୍ୟାୟିକା ରଚିତ ହେଲା । ଏ ଗୁଡ଼ିକ ହେଲା ପୁରାଣ । ସାଧାରଣତଃ ପୁରାଣ, ବ୍ୟାସ ଓ ଅନ୍ୟ ମୁନିମାନଙ୍କର ପ୍ରଣୀତ ଶାସ୍ତ୍ର । ସର୍ଗ, ପ୍ରତିସର୍ଗ, ବଂଶ, ମନ୍ୱନ୍ତର ଓ ବଂଶାନୁଚରିତ ଏହି ପଞ୍ଚଲକ୍ଷଣ ଏହି ଗ୍ରନ୍ଥମାନଙ୍କରେ ରହିଛି । ଏହି ଗ୍ରନ୍ଥମାନଙ୍କର ସ୍ଥାବର, ଜଙ୍ଗମ, ଦେବତା, ଅସୁର, ଗନ୍ଧର୍ବ, ଯକ୍ଷ, ମନୁଷ୍ୟ ଆଦିଙ୍କର ବୃତାନ୍ତ ସହିତ ସୃଷ୍ଟି ବିବରଣ, ବ୍ରହ୍ମ ଅନୁସନ୍ଧାନ, ବ୍ରହ୍ମର ସାକାର ଓ ନିରାକାର ବର୍ଣ୍ଣନ ଅନ୍ତତତ୍ତ୍ୱ ନିର୍ଣ୍ଣୟ, ଜ୍ୟୋତିର୍ବିଜ୍ଞାନ, ପୂର୍ବତନ ରାଜନ୍ୟମାନଙ୍କର ବଂଶାବଳୀ ପ୍ରଭୃତି ନାନା ବିଷୟର ବର୍ଣ୍ଣନା କରାଯାଉଅଛି । ଭୂତ, ଭବିଷ୍ୟତ ଓ ବର୍ତ୍ତମାନ ଅବସ୍ଥାର ପରିଜ୍ଞାନ, ଜ୍ଞାନର ନିର୍ମଳତା ଓ ବୁଦ୍ଧିର ପ୍ରଖରତା ଏହାର ପାଠ ଫଳରେ ଆସିଥାଏ । ଏହି ପୁରାଣମାନ ଦୁଇ ଭାଗରେ ବିଭକ୍ତ ମହାପୁରାଣ ଉପପୁରାଣ । ମହା ପୁରାଣର ସଂଖ୍ୟା ଅଠର । କ୍ଷୁଦ୍ର ଅଠରଟି ଉପପୁରାଣ ନାନା ମୁନିଙ୍କ ଦ୍ୱାରା ରଚିତ । ମହାମନ ତିଳକଙ୍କର ମତାନୁସାରେ ଏ ସବୁ ୨ୟ ଶତାବ୍ଦୀରେ ରଚିତ । (ଯୁଗେ ଯୁଗେ ହିନ୍ଦୁଧର୍ମ) ଭାରତୀୟ ବିଦ୍ୟାଭବନ ପ୍ରକାଶିତ Hinduism through Age ପୁସ୍ତକରେ ଅଧ୍ୟାପକ ଡି.ଏସ.ଶର୍ମା ଏହାର ରଚନାକାଳ ଖ୍ରୀ ୩୦୦ ଖ୍ରୀ ୬୫୦ ମଧ୍ୟରେ ଧାର୍ଯ୍ୟ କରି ଏହି ଯୁଗକୁ ପୁରାଣ ଯୁଗ (Age of the Purans) ବୋଲି ବର୍ଣ୍ଣନା କରିଛନ୍ତି । ତାଙ୍କ ମତ ଅନୁସାରେ ଏହ ସମୟରେ ଭାରତ ବର୍ଷରେ ସମୁଦ୍ର ଗୁପ୍ତ, ଚନ୍ଦ୍ର ଗୁପ୍ତ, ବିକ୍ରମାଦିତ୍ୟ ଆଦି ରାଜାମାନେ ରାଜପଣ କରୁଥିଲେ । କାଳିଦାସଙ୍କର ରଚନା ଏହି ସମୟରେ ମଧ୍ୟ ।

ପୁରୁଣା ରଚନାର ପୂର୍ବରୁ ରାମାୟଣ ଓ ମହାଭାରତ ଦୁଇ ମହାକାବ୍ୟ ରଚିତ ହୋଇଥିଲା । ଶ୍ରୀମଦ ଭଗବଦ୍ ଗୀତା ମହାଭାରତର ଅଂଶ । ଲୋକମାନ୍ୟ ତିଳକଙ୍କ ଅନୁସାରେ ମହାଭାରତ ଯୁଦ୍ଧ ସମୟ ଖ୍ରୀ.ପୂ. ୧୪୦୦ ଓ ମହାଭାରତ ରଚନାକାଳ

ଖ୍ରୀ.ପୂ. ୯୦୦ ବର୍ଷ । ଡକ୍ଟର ରାଧାକ୍ରିଷ୍ଣନ ଗୀତାର ରଚନା କାଳ ଖ୍ରୀ.ପୂ. ୫୦୦ ବର୍ଷ ବୋଲି ତାଙ୍କ ଗୀତା ଭାଷ୍ୟରେ ଦର୍ଶାଇଛନ୍ତି । ଅଧ୍ୟାପକ ଶର୍ମା ଖ୍ରୀ.ପୂ. ୨୦୦୦ ରୁ ଖ୍ରୀ. ୩୦୦ ପର୍ଯ୍ୟନ୍ତ ସମୟକୁ ମହାକାବ୍ୟ ଯୁଗ (The age of the Epics) ବୋଲି ନିର୍ଦ୍ଦିଷ୍ଟ କରିଅଛନ୍ତି । ଏହିପରି ବିଭିନ୍ନମତ ଥାଇ ମଧ୍ୟ ଏହି ରଚନାମାନ ଯେ ଅତି ପୁରାତନ ସେ ବିଷୟରେ ପାଶ୍ଚାତ୍ୟ ପଣ୍ଡିତମାନେ ମଧ୍ୟ ଏକମତ । ତେଣୁ ଏହି ସମୟର ସୃଷ୍ଟିର ସ୍ଥିତି, ଲୋକାଚାର, ଆଚାରସଂହିତା, ଲୋକନୀତି ରଣନୀତି ଆଦି ବର୍ତ୍ତମାନ ଯୁଗଠାରୁ ବିଭିନ୍ନ ଥିଲା ଏହା ମାନିବାକୁ ହେବ । ସେମିତି ବର୍ଣ୍ଣଭେଦ ଅନାଦି କାଳରୁ ଭାରତ ବର୍ଷର ସମାଜରେ ପ୍ରଚଳିତ । ବୈଦିକ ଯୁଗରେ ବ୍ରାହ୍ମଣାଦି ବର୍ଣ୍ଣବିଭାଗ ଥିଲା । ଏହା ଋଗବେଦର ପୁରୁଷ ସୁକ୍ତରୁ ଜଣାଯାଉଛି । ମାତ୍ର ଏହା ଗୁଣ କର୍ମ ଉପରେ ପ୍ରତିଷ୍ଠିତ ଥିଲା । ପରବର୍ତ୍ତୀ କାଳରେ ଏହି ଶ୍ରେଣୀବିଭାଗ ବଂଶଗତ ହୋଇ ଜାତି ବିଭାଗର ସୃଷ୍ଟି ହେଲା । ତେଣୁ ସମାଜ ବିଶୃଙ୍ଖଳ ହୋଇଗଲା । ଏବେ ଦେଖାଯାଉଛି ବ୍ରାହ୍ମଣର ପୁତ୍ର ଶୁଦ୍ରର କର୍ମ କଲେହେଁ ସେ ବ୍ରାହ୍ମଣ ରୂପରେ ପରିଚିତ ହେଉଛି । ଶୁଦ୍ର ବ୍ରାହ୍ମଣୋଚିତ ଜ୍ଞାନ କର୍ମର ଅନୁଷ୍ଠାନ କଲେ ହେଁ ସମାଜରେ ଶୁଦ୍ର ଭାବରେ ଉପେକ୍ଷିତ ହେଉଛି । ଏହା ହିଁ ହିନ୍ଦୁ ସମାଜର ଅବନତିର କାରଣ । ଗୌତମ ସଂହିତାରେ ଲେଖାଅଛି

"ନ ଜାତି ପୂଜ୍ୟତେ ରାଜନ୍ ଗୁଣାଃ କଲ୍ୟାଣ କାରକାଃ
ଚଣ୍ଡାଳମପି ବୃତ୍ତସ୍ଥଂ ତଂ ଦେବା ବ୍ରାହ୍ମଣଂ ବିଦୁଃ ।"

ଅର୍ଥାତ ଚଣ୍ଡାଳ ଯଦି ବୃତ୍ତସ୍ଥ (ନିଷ୍ଠାପର) ହୁଏ ତାକୁ ଦେବତାମାନେ ବ୍ରାହ୍ମଣ ବୋଲି କହନ୍ତି । ପୁଣି ଅଛି -

"କ୍ଷାନ୍ତଂ ଦାନ୍ତଂ ଜିତକ୍ରୋଧଂ ଜିତାତ୍ମନଂ ଜିତେନ୍ଦ୍ରିୟମ
ତମେବ ବ୍ରାହ୍ମଣଂ ମନ୍ୟେ ଶେଷା ଶୁଦ୍ରା ଇତି ସ୍ମୃତାଃ ।"

କ୍ଷମାଶୀଳ, ସଂଯତେନ୍ଦ୍ରିୟ, ଜିତକ୍ରୋଧ, ଜିତାତ୍ମା ଓ ଜିତେନ୍ଦ୍ରିୟ ଲୋକଙ୍କୁ ବ୍ରାହ୍ମଣ ବୋଲି ମନେକରାଯାଏ । ଆଉ ସମସ୍ତେ ଶୁଦ୍ର । ଗୀତାରେ ମଧ୍ୟ ଭଗବାନ ଗୁଣକର୍ମ ଅନୁସାରେ ଚତୁର୍ବର୍ଗର ସୃଷ୍ଟି ବୋଲି କହିଛନ୍ତି । ଗୀତାର ୧୮ଶ ଅଧ୍ୟାୟରେ ଚିତ୍ତଶାନ୍ତି, ବାହ୍ୟେନ୍ଦ୍ରିୟ ସଂଯମ, ତପସ୍ୟା, ବାହ୍ୟ ଓ ଅଭ୍ୟନ୍ତର ଶୁଦ୍ଧି, ସରଳତା, ଶାସ୍ତ୍ର ପାଣ୍ଡିତ୍ୟ, ଆତ୍ମାନୁଭବ ଓ ପରଲୋକ ବିଶ୍ୱାସ ଏ ଗୁଡ଼ିକ ବ୍ରାହ୍ମଣଙ୍କର ସ୍ୱାଭାବିକ କର୍ମ ବୋଲି କୁହାଯାଇଛି । ଜଗନ୍ନାଥଙ୍କ ଦାସଙ୍କ ଭାଗବତରେ ଅଛି

ତପଶଉଚ ଶମ ଦମ
ମୋର ଭକତ ଅନୁପମ

ସତ୍ୟ, ସନ୍ତୋଷ, କ୍ଷମା ଦୟା
ଆର୍ଜବ, ହୃଦୟ ନିର୍ମାୟା
ଏ ସର୍ବ ବ୍ରାହ୍ମଣ ଲକ୍ଷଣ

୧୧ସ୍କ/୧୮ଅ/୧୫

ବର୍ତ୍ତମାନ ଯୁଗରେ ଏହି ଚର୍ତୁବର୍ଗଙ୍କୁ ଆମ୍ଭେମାନେ ଶିକ୍ଷକ, ରକ୍ଷକ, ପୋଷକ ଓ ସେବକ ବୋଲି ଧରିନେଲେ ସମସ୍ୟା ସରଳ ହେବ । ପ୍ରାଚୀନ ଭାରତରେ ବ୍ରାହ୍ମଣର ଧର୍ମଜ୍ଞାନ, କ୍ଷତ୍ରିୟର ପରାକ୍ରମ, ବୈଶ୍ୟର ଧନାର୍ଜନ ଓ ଶୁଦ୍ରର ସେବାକର୍ମ ଦ୍ୱାରା ସମାଜ ସୁଦୃଢ଼ ଥିଲା । ଦ୍ରୋଣ କୃପାଚାର୍ଯ୍ୟ, ଅଶ୍ୱତ୍ଥାମା ବ୍ରାହ୍ମଣ ମାତ୍ର କ୍ଷତ୍ରୀୟ ବିହିତ କର୍ମ କରି ସେମାନେ ସମାଜରେ ପ୍ରତିଷ୍ଠିତ ହୋଇଥିଲେ । କ୍ଷତ୍ରୀୟ ବିଶ୍ୱାମିତ୍ର ନିଜର ତପସ୍ୟା ବଳରେ ଋଷି ପଦ ପାଇଥିଲେ । ସବୁ ଋଷିମୁନି, ପୁରାଣକାର, ବ୍ରାହ୍ମଣ ହୋଇ ଜନ୍ମ ନେଇ ନ ଥିଲେ । ଏହି ଆଲୋଚନାରୁ ଜଣାଯିବ ପୁରାଣରେ ଜାତି ଓ ବର୍ଣ୍ଣ ଉପରେ ଅଯଥା ଗୁରୁତ୍ୱାରୋପ କରାଯାଇନାହିଁ ।

ପୁରାଣ ମାନଙ୍କ ସଫଳତା ପାଇଁ ଶଠତାର ଲଜ୍ଜାହୀନ ପ୍ରୟୋଗ କଥା କୁହାଯାଉଛି । ଉଚ୍ଛୃଙ୍ଖଳତା ଓ ସ୍ୱେଚ୍ଛାଚାରିତା ନିବାରଣ କରି ସମାଜକୁ ବିହିତ ସୁସ୍ଥ ଧର୍ମ ମାର୍ଗରେ ପରିଚାଳିତ କରାଇବା ପ୍ରତ୍ୟେକ ଧର୍ମଶାସ୍ତ୍ରର ଉଦ୍ଦେଶ୍ୟ । ଶାସ୍ତ୍ର-ବିହିତ କର୍ମ ହିଁ ନିୟତ କର୍ମ । ହିନ୍ଦୁର ଧର୍ମଜୀବନ ଓ କର୍ମ ଜୀବନରେ ପାର୍ଥକ୍ୟ ନାହିଁ । ତେଣୁ ସାଂସାରିକ କର୍ମ ନିୟନ୍ତଣ ଧର୍ମ ଶାସ୍ତ୍ରର ପରିଧି ଅନ୍ତର୍ଭୁକ୍ତ । ଏହି ଧର୍ମଶାସ୍ତ୍ର ସବୁ ହଜାର ହଜାର ବର୍ଷ ପୁର୍ବେ ରଚନା କରାଯାଇଥିଲା । ସେ କାଳର ସମାଜର ପ୍ରଚଳିତ ଅବସ୍ଥା ଉପରେ ଏହି ବିଧିବିଧାନମାନ ପ୍ରଣୟନ କରାଯାଇଥିଲା । ବର୍ତ୍ତମାନ ଯୁଗର ପରିବର୍ତ୍ତିତ ମୂଲ୍ୟବୋଧ ପରିସ୍ଥିତିରେ ଯଦି ସେ ସବୁ ବିଧି ବ୍ୟବସ୍ଥା ସମାଜ ରକ୍ଷାର ପ୍ରତିକୂଳ ହୁଏ ତେବେ ତାହା ସର୍ବଥା ପରିତ୍ୟଜ୍ୟ । ନିକଟ ଅତୀତର ଏକ ଉଦାହରଣ ଧରାଯାଉ। ବିଗତ ବିଶ୍ୱଯୁଦ୍ଧ ସମୟରେ ନେତାଜୀ ସୁଭାଷଚନ୍ଦ୍ର ଜର୍ମାନ ରେଡ଼ିଓରୁ ଭାଷଣ ଦେବାବେଳେ ବା ବ୍ରହ୍ମଦେଶରେ ଜାତୀୟ ସେନା ବାହିନୀ ଧରି ଯୁଦ୍ଧ କଲା ବେଳେ ତାଙ୍କୁ କୁଇସ୍‌ଲିଂ (Quisling) ଗୃହଭେଦୀ ବିଭୀଷଣ ବୋଲି କହିବାକୁ ପଛାଉ ନ ଥିବା ବୁଦ୍ଧିଜୀବୀମାନେ ସବୁ ବିଷୟ ଜାଣିବା ପରେ ତାଙ୍କୁ ମହାନ ବିପ୍ଳବୀ ଯୋଦ୍ଧା ଓ ମୁକ୍ତିଦାତା ନେତାଜୀ ଭାବେ ଗ୍ରହଣ କଲେ । ସେଇମିତି ନିଜର ବିଚାର ବୁଦ୍ଧି ପ୍ରୟୋଗ ନ କରି ଗତାନୁଗତିକ ଭାବରେ ଶାସ୍ତ୍ର ଅନୁସରଣ କଲେ ଧର୍ମହାନୀ ହୁଏ ।

"କେବଳ ଶାସ୍ତ୍ରମାଶ୍ରିତ୍ୟ ନ କର୍ତ୍ତବ୍ୟୋ ବିନିର୍ଣ୍ଣୟଃ
ଯୁକ୍ତିହୀନ ବିଚାରେଣ ଧର୍ମହାନୀ ପ୍ରଜାୟତେ (ବୃହସ୍ପତି)

କେବଳ ଶାସ୍ତ୍ର ବିଧିକୁ ଆଶ୍ରୟ କରି କର୍ତ୍ତବ୍ୟ ନିର୍ଣ୍ଣୟ ହୁଏ ନାହିଁ, ଯେଉଁ ବିଚାର ଯୁକ୍ତି ଉପରେ ପ୍ରତିଷ୍ଠିତ ନୁହେଁ ତାହାଦ୍ୱାରା ଧର୍ମହାନୀ ହୋଇଥାଏ । ପୁଣି

"ଅନ୍ୟ ତୃଣମିବ ତ୍ୟାଜ୍ୟ ମପ୍ୟୁକ୍ତଂ ପଦ୍ମଜନ୍ମନା" (ବଶିଷ୍ଠ)

ସ୍ୱୟଂ ବ୍ରହ୍ମା ଯେବେ ଅଯୌକ୍ତିକ କଥା କହନ୍ତି ତେବେ ତାହାକୁ ତୃଣବତ ପରିତ୍ୟାଗ କରିବ । କର୍ତ୍ତବ୍ୟର ଦ୍ୱିଧା ସମୟରେ ଏମିତି କେତେ କଥା କରିବାକୁ ପଡ଼ିଥାଏ । ଯେପରି ନିଜ ବଡ଼ ଭାଇର ଦୋଷତ୍ରୁଟି ସମାଧାନ ନ କରି ବିଭୀଷଣ ଶତ୍ରୁ ପକ୍ଷରେ ଯୋଗଦେଲେ । ମାତ୍ର ପୁରାଣ କେଉଁଠାରେ ଅନ୍ଧ ଅନୁସରଣକୁ ସମର୍ଥନ କରି ନ ଥାଏ । ପରିସ୍ଥିତି ଭେଦରେ ଆଚାର ସଂହିତା ଓ ରଣକୌଶଳ ମଧ ସମାଜରେ ପରିବର୍ତ୍ତିତ ହୋଇଥାଏ । ପାରିପାର୍ଶ୍ୱିକ ପରିସ୍ଥିତିର ପ୍ରଭାବ ଏହା ଉପରେ ପଡ଼ିଥାଏ । ପ୍ରଥମ ଓ ଦ୍ୱିତୀୟ ବିଶ୍ୱଯୁଦ୍ଧର ରଣକୌଶଳ ପୃଥକ ଥିଲା । ଯଦି ଲକ୍ଷ ଲକ୍ଷ ଲୋକଙ୍କର ପ୍ରାଣହାନି ପ୍ରଥମେ ଚିନ୍ତା କରାଯାଇଥାନ୍ତା ତେବେ ବିଶ୍ୱଯୁଦ୍ଧରେ ହିରୋସୀମା ନାଗାସାକି ଉପରେ ଆଣବିକ ବୋମା ନିକ୍ଷେପ କରି ଯୁଦ୍ଧ ଏତେ ଶୀଘ୍ର ଶେଷ କରାଯାଇ ପାରିଥାଆନ୍ତା କି ? ପୁରାଣ ଯୁଗରେ ସେମିତି ଆତତାୟୀ ପ୍ରତି ଶଠେ ଶାଠ୍ୟ ନୀତି ପ୍ରୟୋଗ କରାଯାଉଥିଲା । "ଶଠକୁ ବିନୟ, କୁଟୀଳକୁ ପ୍ରୀତି, ଲୋଭୀକୁ ବୈରାଗ୍ୟ, କ୍ରୋଧୀକୁ ସମତା କାମାଶକ୍ତକୁ ହରିକଥା, ବୁଝାଇବା ଲୁଣିଆ ଜମିରେ ମଞ୍ଜି ବୁଣିବା ସହିତ ସମାନ" ବୋଲି ସନ୍ଥ ତୁଳସୀ ଦାସ କହିଛନ୍ତି । ଘରେ ଅଗ୍ନି ଲଗାଇବା, ବିଷଦେବା ହାତରେ ଅସ୍ତ୍ର ଶସ୍ତ୍ର ଧରି ହତ୍ୟା କରିବାକୁ ଉଦ୍ୟତ ଧନ ଭୂମି ଓ ସ୍ତ୍ରୀ ଅପହରଣକାରୀ ଏହି ଲୋକମାନଙ୍କୁ ଶାସ୍ତ୍ରରେ ଆତତାୟୀ କୁହାଯାଇଛି । ନିଜର ଅନିଷ୍ଟ କରିବାକୁ ଆସୁଥିବା ଏହି ଆତତାୟୀମାନଙ୍କୁ ବିନା ବିଚାରରେ ମାରିଦେବା ଉଚିତ୍ । ଆତତାୟୀଙ୍କୁ ହତ୍ୟାକଲେ ହତ୍ୟାକାରୀର ଦୋଷ ହୋଇ ନ ଥାଏ ବୋଲି ଧର୍ମଶାସ୍ତ୍ର କହେ । ତେଣୁ କର୍ଣ୍ଣ ଓ ରାବଣଙ୍କର ଅତୀତ ଆଚରଣ ପ୍ରତି ଦୃଷ୍ଟି ଦେଇ ସେମାନଙ୍କର କୁଟିଳତାର ପ୍ରତିଶୋଧ ସ୍ୱରୁପ କାର୍ଯ୍ୟ କରିବାକୁ କୁହାଗଲା । ଦେଶ, କାଳପାତ୍ର ଅନୁସାରେ ଘଟିତ ନାରୀ ନିର୍ଯ୍ୟାତନା ବା ଅତ୍ୟାଚାରକୁ କୌଣସି ପୁରାଣ ବା ଶାସ୍ତ୍ରରେ ସମର୍ଥନ କରାଯାଇନାହିଁ । ତେଣୁ ପୁରାଣରେ କେଉଁଠି କୁଶିକ୍ଷା ଦେବାର ସୁଯୋଗ ରହୁଛି ।

*(ତା ୭.୫.୯୭ରେ*
*ଏକ ଦୈନିକ ସମ୍ବାଦପତ୍ରରେ*
*'ଆମ ପୁରାଣରେ କୁଶିକ୍ଷା" ପ୍ରବନ୍ଧ ପଢ଼ି*
*ଜଣେ ପ୍ରାଚୀନ ପନ୍ଥୀର ପ୍ରତିକ୍ରିୟା)*



# ଅଷ୍ଟାଦଶ ପୁରାଣର ପରିଚୟ

(ପୁରାଣର ଭାବଗତ ବିଭବ)

ପ୍ରାଚୀନ ଭାରତୀୟ ସଂସ୍କୃତି ଓ ଧର୍ମଦର୍ଶନ ପ୍ରତି ଆଜିର ସାଧାରଣ ବରିଷ୍ଠ ନାଗରିକ ମଧ୍ୟ ଚର୍ଚ୍ଚା ଅଭାବରୁ ଆଗ୍ରହ ହରାଇବସୁଛି । ବେଦ ଉପନିଷଦ ତନ୍ତ୍ର ଓ ପୁରାଣର ସାଧାରଣ ପରିଚୟ ସଂକ୍ଷିପ୍ତ ଓ ସରଳ ଭାଷାରେ ଉପଲବ୍ଧ ନ ଥିବାରୁ ଏହା ଜିଜ୍ଞାସୁ ପାଠକକୁ ଆକୃଷ୍ଟ କରି ପାରୁନାହିଁ । ବୈଜ୍ଞାନିକ ପ୍ରଗତି ସହିତ ନୈତିକ ଓ ଆଧ୍ୟାତ୍ମିକ ପ୍ରଗତିର ମଧ୍ୟ ପ୍ରୟୋଜନ । ଏହି ଉଦ୍ଦେଶ୍ୟରେ ଏ ବିଷୟ ଗୁଡିକର ସମ୍ୟକ ଧାରଣା ଦେବା ଆବଶ୍ୟକ ।

ପ୍ରିୟ ବିଷୟଟି ସରସ ଓ ମନୋରମ ଭାବରେ ପାଇବାକୁ ମଣିଷ ମାତ୍ରେ ଇଚ୍ଛା କରିଥାଏ । ବିଷୟଟି କଥା ସାହିତ୍ୟ ଓ ଗଳ୍ପ ଭାବରେ ମଣିଷକୁ ବେଶି ଆକୃଷ୍ଟ କରେ । ସେଥିପାଇଁ ଗଳ୍ପ ଶୁଣିବାର ଆଗ୍ରହ ବେଶୀ । ସେ ଗଳ୍ପ ଗୁଡ଼ିକ ଯଦି କଳ୍ପନା ନହୋଇ ସତ୍ୟ ଭିତ୍ତିରେ ମନୁଷ୍ୟ ଜୀବନର ସୁଖଦୁଃଖ ହସ-କାନ୍ଦ,ମିଳନ ବିରହ ବର୍ଣ୍ଣନା କରିଥାଏ ତାହାହେଲେ ଲୋକପ୍ରିୟ ହୋଇଥାଏ । ପୃଥିବୀର ସବୁ ଦେଶରେ ନିଜର କାବ୍ୟ ଓ ପୁରାତନ ସାହିତ୍ୟ ଅଛି ମାତ୍ର ଭାରତୀୟ ବିଶାଳ ପୌରାଣିକ ସାହିତ୍ୟ ତୁଳନାରେ ଏହା ସାମାନ୍ୟ । ଭାରତୀୟ ସଭ୍ୟତା ଓ ସଂସ୍କୃତିର ବୈଚିତ୍ର୍ୟମୟ ଇତିହାସ ପୁରୁଷାନୁକ୍ରମେ ଆମ୍ଭମାନଙ୍କୁ ଉପଲବ୍ଧ ହୋଇ ଆସୁଛି ଓ ଏ ଦିଗରେ ପୁରାଣର ଭୂମିକା ବିଶେଷ ଭାବରେ ଉଲ୍ଲେଖ ଯୋଗ୍ୟ ।

ପ୍ରାଚୀନ ଭାରତୀୟ ସଂସ୍କୃତି ଆର୍ଯ୍ୟ ଓ ଅନାର୍ଯ୍ୟ ସଭ୍ୟତାକୁ କେନ୍ଦ୍ରକରି ଦୁଇ ଭାଗରେ ବିଭକ୍ତ ଥିଲା । ଏହି ଦୁଇ ଜାତି ମଧ୍ୟରେ ଦୀର୍ଘକାଳ ଧରି ସଂଘର୍ଷ ଚାଲିଥିଲା । ଏହା ମୂଳରେ ସେମାନଙ୍କର ଭିନ୍ନ ଜୀବନ ଆଦର୍ଶ ଓ ସଂସ୍କୃତିଗତ ବୈଷମ୍ୟ ରହିଥିଲା । ଦୀର୍ଘକାଳ ଏହି ସଂଘର୍ଷ ଫଳରେ ସବଳ ଆଗରେ ଦୁର୍ବଳକୁ ଅବନତ ହେବାକୁ ପଡିଥିଲା । ବୈବାହିକ ସଂପର୍କ ସ୍ଥାପନ କରି ଅନେକ ସ୍ଥଳରେ ଏହି ବଶତାକୁ ଆତ୍ମୀୟତାରେ ପରିଣତ କରାଯାଇଥିଲା । ଏହା ଫଳରେ ଆର୍ଯ୍ୟ ଅନାର୍ଯ୍ୟଙ୍କର ପରସ୍ପର ଚିନ୍ତା ଓ ଭାବନାର ଆଦାନ

ପ୍ରଦାନ ହୋଇଛି । ଅନାର୍ଯ୍ୟ ଅନେକ ଭାବରେ ଆର୍ଯ୍ୟ ଭାବାପନ୍ନ ହୋଇଥିବା ବେଳେ ଆର୍ଯ୍ୟମାନେ ମଧ୍ୟ ଅନାର୍ଯ୍ୟମାନଙ୍କର ବହୁ ଉଚ୍ଚ ସାଧନା ଓ ସଂସ୍କୃତିକୁ ପରିମାର୍ଜିତ କରି ଗ୍ରହଣ କରିବାରେ ତ୍ରୁଟି କରି ନାହାନ୍ତି । ଏହା ଫଳରେ ଏକ ମିଶ୍ର ସଂସ୍କୃତି ଗଢି ଉଠିଛି । ଏହିପରି ଭାବରେ ପ୍ରାଚୀନ ସାହିତ୍ୟ ଓ ସଂସ୍କୃତି ଯୁଗେ ଯୁଗେ କେତେବେଳେ ରକ୍ଷଣଶୀଳ ବା କେତେବେଳେ ପ୍ରଗତିବାଦୀ ମନୁଷ୍ୟମାନଙ୍କର ମାଧ୍ୟମରେ ପରିପୁଷ୍ଟ ଓ ପ୍ରସାରିତ ହୋଇଆସିଅଛି ।

ବୁଦ୍ଧଦେବଙ୍କର ଆବିର୍ଭାବ ପୂର୍ବରୁ ପ୍ରାଚୀନ ସାହିତ୍ୟକୁ ମୋଟା ମୋଟି ସାତ ଭାଗରେ ବିଭକ୍ତ କରାଯାଇ ପାରିବ । ସେଗୁଡିକ ହେଲା -

୧) ବେଦ

୨) ଉପବେଦ - ଉପବେଦର ସ୍ଥାନ ବେଦଠାରୁ ତଳକୁ । ଶ୍ରୁତି ସହିତ ଏହାର କୌଣସି ସଂପର୍କ ନାହିଁ । ଏହି ଉପବେଦ ସାଧାରଣତଃ ବିଜ୍ଞାନ ବିଷୟକ । ସବୁ ବେଦରେ ଉପବେଦ ଅଛି । ରଗବେଦର ଉପବେଦ - ଆୟୁର୍ବେଦ, ଯଦୁର୍ବେଦର ଧର୍ନୁବେଦ, ସାମବେଦର ଗନ୍ଧର୍ବବେଦ ଓ ଅଥର୍ବବେଦର ସ୍ଥାପତ୍ୟବେଦ ।

୩) ବେଦାଙ୍ଗ ବେଦର ଅବୟବ । ଏଗୁଡ଼ିକ ଶିକ୍ଷା, କଳ୍ପ,ବ୍ୟାକରଣ, ଛାନ୍ଦ, ଜ୍ୟୋତିଷ, ନିରୁକ୍ତ, ଏମିତି ଛଅଟି । (କ) ଶିକ୍ଷା ଅର୍ଥ ସ୍ୱରବିଜ୍ଞାନ ଯାହାଦ୍ୱାରା ବୈଦିକ ସୁକ୍ତଗୁଡ଼ିକ ଉଚ୍ଚାରଣ କରି ସ୍ୱର ସଂଯୋଗରେ ଗାନ କରିବାର ନିୟମ ଶିକ୍ଷା ଦିଆହୋଇଛି । (ଖ) କଳ୍ପ ସୂତ୍ରଗ୍ରନ୍ଥ ବେଦର ବ୍ରାହ୍ମଣ ଭାଗରୁ ଏହା ସାରତତ୍ତ୍ୱ ସୂତ୍ର ଆକାରରେ ଗ୍ରଥିତ । (ଗ) ବ୍ୟାକରଣ ବୈଦିକ ସାହିତ୍ୟ ପରିଚୟର ସହାୟକ । (ଘ) ଛନ୍ଦ ବେଦ ପାଠ ନିମିତ୍ତ ଆବଶ୍ୟକ । ଏହା ଅଭାବରେ ରସ, ଗୁଣ, ଦୋଷ ଉପଲବ୍ଧି ହୁଏ ନାହିଁ । ଉଚ୍ଚାରିତ ଶବ୍ଦ ହୃଦୟଙ୍ଗମ କରି ହୁଏ ନାହିଁ । ଗାୟତ୍ରୀ, ଉଷ୍ଣୀକ, ଅନୁଷ୍ଟତ, ବୃହତ, ପଂକ୍ତି, ତ୍ରିଷ୍ଟୁପ ଓ ଜଗତି ଏମିତି ସାତୋଟି ବୈଦିକ ଛାନ୍ଦ । ତାର ପରବର୍ତ୍ତୀ ଗୁଡ଼ିକ ଲୌକିକ । (ଙ) ସୂର୍ଯ୍ୟ ଆଦି ଗ୍ରହର ଅବସ୍ଥାନ ଗତି, ସ୍ଥିତି, ଜ୍ଞାନ ସହିତ ଯଜ୍ଞ ଆଦି ସଂପନ୍ନ କାର୍ଯ୍ୟରେ ଗ୍ରହାଦିତ ଅବସ୍ଥାନ ଜ୍ୟୋତିଷର ଅନ୍ତର୍ଭୁକ୍ତ । (ଚ) ବୈଦିକ ଶବ୍ଦ ଓ ବାକ୍ୟ ସମୂହର ଅର୍ଥ ପ୍ରତିପାଦନ ଗ୍ରନ୍ଥ ନିରୁକ୍ତ ।

୪) ସାଧନ ପ୍ରଣାଳୀ ପ୍ରଧାନ ବେଦର ଶାସ୍ତ୍ର ବିଶେଷ ତନ୍ତ୍ର ।

୫) ପୁରାଣ

୬) ଇତିହାସ (ରାମାୟଣ ଓ ମହାଭାରତ

୭) ଦର୍ଶନ  ହିନ୍ଦୁ ଦର୍ଶନ ଛଅ ଭାଗରେ ବିଭକ୍ତ – (କ) କପିଳ କୃତ ସାଂଖ୍ୟ (ଖ) ପାତଞ୍ଜଳି କୃତଯୋଗ (ଗ) କଣାଦ କୃତ ବୈଶେଷିକ (ଘ) ଗୌତମକୃତ ନ୍ୟାୟ (ଙ) ଜୈମିନି କୃତ ପୂର୍ବମୀମାଂଶା ବା ମାମାଂଶ ଓ (ଚ) ବେଦବ୍ୟାସକୃତ ଉତ୍ତର ମୀମାଂଶା ବା ବେଦାନ୍ତ । ଏହା ମଧ୍ୟରୁ ପୁରାଣ ଆମର ଆଲୋଚ୍ୟ ବିଷୟ । ଆମର ମିଶ୍ର ସଂସ୍କୃତି ଓ ସଭ୍ୟତାର ଏହା ବିରାଟ ନିଦର୍ଶନ । କୁହାଯାଇଛି ପୁରାଣରେ ଯେତେ କାହାଣୀ ଅଛି ସେ ସବୁ ଆର୍ଯ୍ୟ ଅନାର୍ଯ୍ୟଙ୍କର ସଂଘର୍ଷକୁ ଲକ୍ଷ କରି ରଚନା କରାଯାଇଅଛି । ବୈଦିକ ଯୁଗ ପରେ ପରେ ଯେଉଁ ସନାତନ ଧର୍ମଦର୍ଶନ ଓ ସଂସ୍କୃତିର ଧାରା ପ୍ରବାହିତ ହେଲା ତାହା ସାଧାରଣ ମନୁଷ୍ୟକୁ ପ୍ରଭାବିତ କରି ପାରିନଥିଲା । ଏସବୁ ଉଚ୍ଚାଙ୍ଗ ଦର୍ଶନ ସଂସ୍କୃତରେ ବର୍ଣ୍ଣିତ ଥିବାରୁ ଗୋଟିଏ ନିର୍ଦ୍ଦିଷ୍ଟ ଗୋଷ୍ଠିର ଲୋକଙ୍କର ଏକଚାଟିଆ ହୋଇ ରହିଲା । ମାତ୍ର ପରବର୍ତ୍ତୀ କାଳରେ କେବଳ ପୁରାଣ ସାହିତ୍ୟ ଏହାକୁ ସର୍ବସାଧାରଣଙ୍କ ପାଖରେ ପହଞ୍ଚାଇବାକୁ ସକ୍ଷମ ହୋଇପାରିଲା । ବୈଦିକ ଯୁଗର ଧର୍ମଦର୍ଶନ ଆଲୋଚନା ପାଇ କୌଣସି ସ୍ଥାୟୀ ମିଳନ କେନ୍ଦ୍ର ନଥିଲା । ଆଚାର୍ଯ୍ୟମାନଙ୍କର ଗୃହରେ ଏହା ଆଲୋଚିତ ହୋଇ ଶିଷ୍ୟ ପରମ୍ପରାରେ ପ୍ରସାରିତ ହେଉଥିଲା । ମାତ୍ର ପୁରାଣରେ ଲୋକରୋଚକ ଗଳ୍ପ ଓ କାହାଣୀ ଲୋକପ୍ରିୟ ହେବାରୁ ଏହ ଦେବମନ୍ଦିର ଓ ବିଭିନ୍ନ ମିଳନ ପୀଠରେ ଆଲୋଚିତ ହେଲା । ପୁରାଣପଣ୍ଡା ତଥ୍ୟ ବାଖ୍ୟା କଲେ । ସାଧାରଣ ମନୁଷ୍ୟ ଏହା ଶୁଣିଲା । ଲୋକ ମୁଖରେ ଏହା ପ୍ରଚାରିତ ଓ ପ୍ରସାରିତ ହେଲା । ଜନପ୍ରିୟତା ବଢ଼ିବା ସହିତ ଏହାର ତତ୍ତ୍ୱ ଉପଦେଶମାନ ସାଧାରଣ ଗୃହସ୍ଥ ପାଖରେ ଗ୍ରହଣୀୟ ହୋଇ ଉଠିଲା ।

ପୁରାଣର ଲୋକପ୍ରିୟତା ନିମିତ୍ତ ଆମ୍ଭମାନଙ୍କର ପୁରାଣକାର ଆଶ୍ଚର୍ଯ୍ୟ ପୁରୁଷ ମହର୍ଷି ବେଦବ୍ୟାସ ପ୍ରଥମେ ନମସ୍ୟ । ବେଦର କର୍ମକାଣ୍ଡ ଓ ଜ୍ଞାନକାଣ୍ଡର ସମର୍ଥକ ମାନଙ୍କର ଦ୍ୱନ୍ଦ୍ୱ, ଦର୍ଶନଗତ ମତଭେଦ ଓ ଅବୈଦିକ ନୂଆ ନୂଆ ଚିନ୍ତାଧାରାର ହଠାତ୍ ଜାଗରଣ, ଉଚ୍ଚାଙ୍ଗ ଜ୍ଞାନ ଓ ସାଧନାରେ ସାଧାରଣ ନରନାରୀଙ୍କର ଅନଧିକାର, ବିଭିନ୍ନ ଜାତି ଓ ଶ୍ରେଣୀର ମନୁଷ୍ୟ ମଧ୍ୟରେ କ୍ଷମତା ଦଖଲ ନିମିତ୍ତ ବିଭିନ୍ନ ଯୁଦ୍ଧ ଆଦି ବିଭିନ୍ନ ସମସ୍ୟାର ସମାଧାନ ଯେତେବେଳେ ପରିସ୍ଥିତିକୁ ଜଟିଳ କରି ରଖିଥିଲା ସେହି  ସମୟରେ କୃଷ୍ଣଦ୍ୱୈପାୟନ ବ୍ୟାସ ଓ ବସୁଦେବ ପୁତ୍ର ଶ୍ରୀକୃଷ୍ଣ ଆର୍ବିଭୂତ ହୋଇ ଭାରତୀୟ ସଭ୍ୟତା ଓ ସଂସ୍କୃତିକୁ ଏହି ଜଟିଳ ପରିସ୍ଥିତିରୁ ରକ୍ଷାକଲେ । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ଯେ ଏହି ଦୁଇ ମହାମାନବଙ୍କୁ ହିନ୍ଦୁ ଧର୍ମରେ ଅବତାର ଭାବେ ଗ୍ରହଣ କରି ନିଆଗଲା ।

ଶ୍ରୀକୃଷ୍ଣ ଦ୍ୱୈପାୟନବ୍ୟାସ ଭଗବାନଙ୍କର ଜ୍ଞାନ ଶକ୍ତିର ଅବତାର ରୂପେ ସ୍ୱୀକୃତ । ଏହି ମହାନ ଆଚାର୍ଯ୍ୟ ଜ୍ଞାନର ଜୀବନ୍ତ ଭଣ୍ଡାର ଥିଲେ । ଅଲୌକିକ ପ୍ରଜ୍ଞା ଓ ଶକ୍ତି ସଂପନ୍ନ ଏହି ମହାନ ଆଚାର୍ଯ୍ୟ ଶତଶାଖାଯୁକ୍ତ ବେଦର ବିଭିନ୍ନ ଭାଗକୁ ସଜାଇ

(ଶତଶାଖାଯୁକ୍ତ) ଚାରିଭାଗରେ ବିଭକ୍ତ କରି ବେଦବ୍ୟାସ ହେଲେ । ବେଦାନ୍ତ ଦର୍ଶନର ମୂଳଗ୍ରନ୍ଥ ବ୍ରହ୍ମସୂତ୍ରର ବଦରିକା ଆଶ୍ରମରେ ରଚନା ସଂପୂର୍ଣ୍ଣ କରି ସେ ହେଲେ କୃଷ୍ଣ ଦ୍ୱୈପାୟନ ବାଦରାୟଣ ବେଦବ୍ୟାସ। ବିଭିନ୍ନ ସ୍ଥାନରେ ବିଭିନ୍ନ ଶାଖାପ୍ରଶାଖାରେ ପଡିରହିଥିବା ବେଦମନ୍ତ ସମୂହକୁ ସଂକଳିତ କରି ସେ କବିତା, ଗାନ ଗଦ୍ୟ ଓ ମିଶ୍ର ପ୍ରାଧାନ୍ୟ ଅନୁସାରେ ଋକ୍, ସାମ, ଯଜୁଃ ଓ ଅଥର୍ବ ବେଦରୂପେ ଚାରିଭାଗରେ ବିଭକ୍ତ କଲେ । ପ୍ରତ୍ୟେକକୁ ସେ ସଂହିତା, ବ୍ରାହ୍ମଣ, ଆରଣ୍ୟକ ଓ ଉପନିଷଦ (ବେଦାନ୍ତ) ନାମରେ ଚାରି ଅଙ୍ଗରେ ବିଭକ୍ତ କଲେ । ଏହା ପରେ ବ୍ୟାସ ଦେବ ତାଙ୍କର ଚାରି ପ୍ରଧାନ ଶିଷ୍ୟପୈଳ, ଜୈମିନି, ବୈଶଂପାୟନ, ଓ ସୁମନ୍ତଙ୍କ ଉପରେ ଯଥାକ୍ରମେ ଚାରି ବେଦର ଭାର ଅର୍ପଣ କଲେ । ଗୁଣ କର୍ମର ବୃତ୍ତି ଅନୁସାରେ (ବଂଶଗତ ଜନ୍ମଅନୁସାରେ ନୁହେଁ) - ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୁଦ୍ର ଚାରି ବର୍ଣ୍ଣର ନରନାରୀ ଯେପରି ବୈଦିକ ଜ୍ଞାନ ସହଜରେ ଲାଭ କରି ପାରିବେ, ସର୍ବତ୍ର ଯେପରି ବେଦକଥା ପ୍ରଚାରିତ ହୋଇପାରିବ ଏହି ଉଦ୍ଦେଶ୍ୟରେ ସେ ଏହି ଚାରିଜଣ ଶିଷ୍ୟଙ୍କୁ ବିଶେଷ ସକ୍ରିୟ ହେବାକୁ ନିର୍ଦ୍ଦେଶ ଦେଲେ । ବେଦବ୍ୟାସ ସାର୍ବଜନୀନ ବେଦର ପ୍ରଚାରର ବ୍ୟବସ୍ଥା କଲେ ମଧ ବେଦାନ୍ତ ଦର୍ଶନ ରଚନା କରି ତାହା ସଫଳ କରାଇ ପାରିଲେ ନାହିଁ । ବିରାଟ ଏହି ଭୂଖଣ୍ଡରେ ଅଧିକାଂଶ ନରନାରୀ ଉଚ୍ଚ ଦର୍ଶନ ଚିନ୍ତାରେ ଅସମର୍ଥ ଥିଲେ । ବୈଦିକ ଭାଷା ମଧ ସମସ୍ତେ ଜାଣୁ ନଥିଲେ । ବ୍ୟାସଦେବ ତ୍ରିତାପଗ୍ରସ୍ତ ନରନାରୀଙ୍କୁ ଶାନ୍ତି ଦେବା ଉଦ୍ଦେଶ୍ୟରେ ନୈତିକ ଆଦର୍ଶ ଓ ଧର୍ମଦର୍ଶନର ବିଶେଷ ପ୍ରଚାର ଲୋଡୁଥିଲେ । ତାହା ନ ହେବାର ଦେଖି ସେ ଶାନ୍ତି ପାଇଲେ ନାହିଁ । ଏ ପ୍ରସଙ୍ଗରେ ଏକ ପୌରାଣିକ କାହାଣୀ ଅଛି । ଦିନେ ବଦରିକା ଆଶ୍ରମ ନିକଟ ଶମ୍ୟାପ୍ରାସ ନାମକ ଏକ ସ୍ଥାନରେ ମହର୍ଷି ବ୍ୟାସଦେବ ଗଭୀର ଚିନ୍ତାମଗ୍ନ ଥିଲେ । ଏହି ସମୟରେ ତ୍ରିଭୁବନ ପରିବ୍ରାଜକ ନାରଦ ମହାମୁନି ସେଠାରେ ପହଞ୍ଚିଲେ । ସେ ସବୁ ଶୁଣି ବ୍ୟାସଦେବଙ୍କୁ ଅନୁରୋଧ କଲେ ସର୍ବସାଧାରଣ ହୃଦୟଙ୍ଗମ କରିବ ଧର୍ମତତ୍ତ୍ୱ ସରଳଭାବରେ ଭାଗବତ ଗ୍ରନ୍ଥରେ ରଚନା କରିବାକୁ । ସେହି କଥାସାହିତ୍ୟ, ପାପ-ତାପ-ଦଗ୍ଧ ମନୁଷ୍ୟ ମନରୁ ମୋହ ଦୂର କରିବ । ଜୀବନରେ ଆଶାର ଆଲୋକ ଦେବା ସହିତ ମନୁଷ୍ୟଙ୍କୁ ନେତିକ ଓ ଆଧାତ୍ମିକ ଆଦର୍ଶରେ ଅନୁପ୍ରାଣିତ କରିବ । ଏହି ପ୍ରସ୍ତାବ ବ୍ୟାସଦେବଙ୍କ ମନକୁ ପାଇଲା । ସେ ତାଙ୍କ ପୂର୍ବବର୍ତ୍ତୀ ମୁନି ଋଷି ଯୋଗୀମାନଙ୍କର ଜୀବନ କଥା, ଅବତାର ମାନଙ୍କର ଲୀଳାବର୍ଣ୍ଣନ ପୌରାଣିକ ଆଖ୍ୟାନ, ଉପାଖ୍ୟାନ ଓ ଗାଥା ଗୁଡ଼ିକ ସଂକଳିତ ଓ ସଂପାଦିତ କରି ପୁରାଣମାନ ରଚନାରେ ପ୍ରବୃତ୍ତ ହେଲେ । **ଆଖ୍ୟାନ** ହେଉଛି ପୁରାଣକାରଙ୍କର ଦୃଷ୍ଟ ବିଷୟର କଥା । ମାତ୍ର ଯାହା ସେ ଅନ୍ୟଠାରୁ ଶୁଣିଥିଲେ ଓ ଯାହା ନିଜର ପ୍ରତ୍ୟକ୍ଷ ନଥିଲା ତାହା **ଉପାଖ୍ୟାନ** ବୋଲାଗଲା । ଲୋକ ମୁଖରେ ପୂର୍ବର କୃତୀ ମନୁଷ୍ୟ ମାନଙ୍କର ଜୀବନର ବିଶେଷ ବିଶେଷ ଘଟଣାମାନ ବର୍ଣ୍ଣନା

କରି ରଚିତ ଗୀତ ମାନଙ୍କୁ ଗାଥା କୁହାଗଲା । ଏହାଛଡା ପୁରାଣମାନଙ୍କରେ ଲୋକଶିକ୍ଷା ନିମିତ୍ତ କଳ୍ପନାର ଆଶ୍ରୟ ନେଇ କେତେକଥା କୁହାଗଲା । ଉଚ୍ଚ ତତ୍ତ୍ୱ ସବୁ ସତ୍ୟ ଘଟଣାର ଆଶ୍ରୟରେ କିଛି କଳ୍ପନା ଦେଇ ଚରିତ୍ର ଓ ରୂପକର ମାଧ୍ୟମରେ ସାହିତ୍ୟ ରସରେ ବର୍ଣ୍ଣନା କରାଗଲା ।

ବିଭିନ୍ନ ସ୍ଥାନର ଭିନ୍ନ ଭିନ୍ନ ସମାଜର ନରନାରୀମାନଙ୍କ ମଧ୍ୟରେ ଯେଉଁସବୁ ଲୋକକାହାଣୀ ପ୍ରଚଳିତ ଥିଲା ସେ ସବୁକୁ ଏକତ୍ର କରି ଆଧ୍ୟାତ୍ମିକ ଓ ନୈତିକ ଆଦର୍ଶ ମଣ୍ଡିତ କରି ଉପଦେଶମାନଙ୍କର ସହିତ ବ୍ୟାସଦେବ ପୁରାଣ ରଚନା କଲେ । ପ୍ରାଚୀନ କାଳରେ କ୍ଷତ୍ରୀୟ ପିତା ଓ ବ୍ରାହ୍ମଣୀମାତାର ସନ୍ତାନ ସୂତ ଜାତିର ଏକ ଶ୍ରେଣୀର ଲୋକଥିଲେ । ସେମାନେ ଦେବ ଦେବୀ ମୁନି ଋଷି ରାଜା ଓ ବିଶିଷ୍ଟ ବ୍ୟକ୍ତିମାନଙ୍କର କର୍ମ ଓ ବଂଶାବଳୀ ସମ୍ବନ୍ଧରେ ବିବରଣୀ ସଂଗ୍ରହ କରି ରଖୁଥିଲେ । ସେହିମାନଙ୍କ ମଧ୍ୟରେ ଜଣେ ସୂତଙ୍କରନାମ ଥିଲା ଲୋମହର୍ଷଣ । ସେ ବ୍ୟାସଦେବଙ୍କର ପ୍ରଧାନ ଶିଷ୍ୟ ଥିଲେ ଓ ଗୁରୁ ତାଙ୍କ ଉପରେ ପୁରାଣ ପ୍ରଚାରର ଭାର ନ୍ୟସ୍ତ କଲେ । ବେଦାନ୍ତ ମଧ୍ୟରେ ଯେଉଁ ସବୁ ଉଚ୍ଚ ତତ୍ତ୍ୱ ଓ ଦର୍ଶନ ନିହିତ ଅଛି ମହାନ ଗୁରୁଙ୍କର ମହାନ ବ୍ୟବସ୍ଥାରେ ସେ ସବୁ ଅଧିକାର ଭେଦରେ ସମାଜର ସବୁ ସ୍ତରରେ ନରନାରୀମାନଙ୍କ ଅବଗତ ନିମିତ୍ତ ପ୍ରଚାର କରିବା ତାଙ୍କ କର୍ତ୍ତବ୍ୟ ହେଲା । ମହାଗୁରୁଙ୍କଠାରୁ ଉଚ୍ଚ ତତ୍ତ୍ୱ ଶିକ୍ଷା ଲାଭ ପରେ ତାଙ୍କ ଦେହରେ ଲୋମଗୁଡିକ ହରଷିତ ହୋଇଯାଇଥିବାରୁ ତାଙ୍କ ନାମ ରୋମହର୍ଷଣ ଥିଲା । ବକ୍ତା ଭାବରେ ରୋମହର୍ଷଣ ଅସାଧାରଣ ଖ୍ୟାତି ଅର୍ଜନ କଲେ । ବ୍ୟାସଦେବଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ ଉଦ୍ଦେଶ୍ୟରେ ପୁରାଣ କଥକର ଆସନକୁ ବ୍ୟାସାସନ କୁହାଗଲା । ଛଅଜଣ ଋଷି ତାଙ୍କ ପାଖରେ ପୁରାଣ ଅଧ୍ୟୟନ କଲେ । ସେମାନଙ୍କୁ ପୌରାଣିକ ଆଖ୍ୟା ଦିଆଗଲା । ରୋମହର୍ଷଣ ଆସନରେ ବସି ନିଜ ଗୁରୁଙ୍କର ପ୍ରଚାରିତ ଜ୍ଞାନ ଓ ପୁରାଣ ଶାସ୍ତ୍ରର ବାଖ୍ୟା କରୁଥିବା ସମୟରେ ଶ୍ରୀକୃଷ୍ଣଙ୍କର ବଡଭାଇ ବଳରାମ ସେଠାରେ ପହଞ୍ଚିଲେ । ବଳରାମ ଅଂଶାବତାର ଥିଲେ । ତାଙ୍କୁ ସମ୍ମାନ ଜଣାଇବା ଉଦ୍ଦେଶ୍ୟରେ ଉପସ୍ଥିତ ସମସ୍ତ ମୁନି ଋଷି ଉଠି ଠିଆହେଲେ ମାତ୍ର ରୋମହର୍ଷଣ ବ୍ୟାସାସନରେ ବସି ଉପଦେଷ୍ଟା ସାଜିଥିବାରୁ ଉଠି ଠିଆହେଲେ ନାହିଁ । ବଳରାମ ଏଥିରେ କ୍ରୋଧ କଲେ । ନିଜକୁ ଅପମାନିତ ମନେ କରି ସେ ରୋମହର୍ଷଣଙ୍କର ଶିରଚ୍ଛେଦ କଲେ । ଫଳରେ ଉପସ୍ଥିତ ସମସ୍ତ ଋଷିମୁନିଙ୍କୁ ଏହା କ୍ରୋଧାନ୍ୱିତ କଲା । ସେମାନେ ବଳରାମଙ୍କୁ ହତ୍ୟାକାରୀ ଭାବରେ ଘୋଷଣା କରି ପାପର ଉଚିତ୍ ପ୍ରାୟଶ୍ଚିତ କରିବାକୁ ନିର୍ଦ୍ଦେଶ ଦେଲେ । ବଳରାମ ଏହି ସିଦ୍ଧାନ୍ତ ମାନି ନେଲେ । ରୋମହର୍ଷଣଙ୍କ ବଦଳରେ ସମବେତ ଶ୍ରୋତାମାନେ ତାଙ୍କ ପୁଅ ଉଗ୍ରଶ୍ରବାଙ୍କୁ ଯୋଗ୍ୟ ଭାବି ତାଙ୍କୁ ପୁରାଣ ବକ୍ତାଭାବରେ ବରଣ କଲେ । ଉଗ୍ରଶ୍ରବା ଅତି ନିଷ୍ଠାର ସହିତ ପୁରାଣ

ପ୍ରଚାରର ଦାୟିତ୍ୱ ନିଜେ ଗ୍ରହଣ କଲେ । ଏହିପରି ଭାବରେ ପୁରାଣ ସମାଜରେ ପ୍ରଚାରିତ ହୋଇ ଲୋକପ୍ରିୟତା ଅର୍ଜନ କଲା । ପରବର୍ତ୍ତୀ କାଳରେ ବିଭିନ୍ନ ଭାରତୀୟ ଭାଷାରେ ଏହି ପୁରାଣମାନ ଅନୁବାଦିତ ହେଲା । ପୁରାଣ ଶବ୍ଦର ମୂଳ ଅର୍ଥ ହେଲା ପ୍ରାଚୀନକଥା । ବ୍ୟୁତ୍ପତ୍ତିଗତ ଅର୍ଥ ହେଲା ପୁରାକାଳୀନ । ସେହିପରି ଇତିହାସ ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥ ହେଲା ଯାହା ଏହିପରି ଥିଲା । ବାଲ୍ମିକୀୟ ରାମାୟଣ ଓ ବ୍ୟାସଦେବ ରଚିତ ମହାଭାରତ ଇତିହାସ ଭାବରେ ଗଣିତ । ପୁରାଣ ଓ ଇତିହାସ ସ୍ମୃତିଶାସ୍ତ୍ର ଭାବେ ଅଭିହିତ ହୋଇ ପଞ୍ଚମବେଦର ମର୍ଯ୍ୟାଦା ପାଇଅଛି ।

ହିନ୍ଦୁ ଧର୍ମରେ ତେତିଶକୋଟି ଦେବାଦେବୀଙ୍କର ବର୍ଣ୍ଣନା ଥିଲେ ମଧ୍ୟ ବିସ୍ମୟକର ଭାବରେ ଏହା ଏକେଶ୍ୱରବାଦର ବିରୋଧୀ ନୁହେଁ । କୁହାଯାଉଛି ତେତିଶକୋଟି ଅର୍ଥ ତେତିଶ ଜଣ । ମହିମା ପ୍ରକାଶ ନିମିତ୍ତ ଗୋଟିକୁ 'କୋଟି' କୁହାଯାଇଥାଏ । ଏହି ତେତିଶ ଜଣ ଦେବତା ହେଲେ :- ଏକ ଇନ୍ଦ୍ର, ଏକ ପ୍ରଜାପତି

୩. ଅଷ୍ଟବସୁ, (ଦକ୍ଷକନ୍ୟା ବସୁର ଆଠପୁଅ (ଧର, ଧ୍ରୁବ, ସୋମ, ବିଷ୍ଣୁ, ଅନଳ,ଅନିଳ, (ଦ୍ୟୁ), ପ୍ରତ୍ୟୁଷ ଓ ପ୍ରଭାସ)

୪. ଏଗାର ରୁଦ୍ର (ଅହି, ବୁଧ୍ନ, ବିରୁପାକ୍ଷ, ରୈବତ, ହର, ବହୁରୂପ, ତ୍ର୍ୟମ୍ବକ, ସାବିତ୍ର, ଜୟନ୍ତ, ପିନକୀ, ଅଜୈକପାଦ ଓ ସୁରେଶ୍ୱର) । ୫. ବାର ଆଦିତ୍ୟ । (ଅଦିତିନନ୍ଦନ - ବିବସ୍ୱାନ, ଅର୍ଯ୍ୟମା, ପୁଷା, ତ୍ୱଷ୍ଟା, ସବିତା, ଭଗ, ଧାତ, ବିଧାତା, ବରୁଣ, ମିତ୍ର, ଶକ୍ର, ଓ ଉରୁକ୍ରମ) । ବୃହଦାରଣ୍ୟ ଉପନିଷଦରେ ଅଛି ଦେବତା ତେତିଶ ଜଣ ।

କୁହାଯାଇଛି ଯେ ଅଦ୍ୱିତୀୟ ଶକ୍ତି ବ୍ରହ୍ମର ବିଭିନ୍ନ ରୂପକୁ ସାଧକମାନଙ୍କ ହିତ ନିମିତ୍ତ କଳ୍ପିତ କରାଯାଇଅଛି । ଋକ ବେଦରେ କୁହାଯାଇଛି କେବଳ ମାତ୍ର ଏକ ଜଣକର ଅସ୍ତିତ୍ୱ ଅଛି, ଜ୍ଞାନୀମାନେ ତାଙ୍କୁ ବହୁନାମରେ ଓ ବହୁଭାବରେ ଉଲ୍ଲେଖ କରିଅଛନ୍ତି । ଏକେଶ୍ୱରବାଦ ଉପନିଷଦ ଓ ତନ୍ତ୍ରରେ ସର୍ବେଶ୍ୱରବାଦର ରୂପନେଇ ଶେଷରେ ପହଞ୍ଚିଛି ନିତ୍ୟ - ସତ୍ୟ ଅଦ୍ୱୈତବାଦରେ । ଏକେଶ୍ୱରବାଦ ଅନୁସାରେ ଜଣେ ମାତ୍ର ଈଶ୍ୱର ଅଛନ୍ତି ଓ ତାଙ୍କ ଅଧିନରେ ନିଖିଳବିଶ୍ୱ ଓ ଜୀବ ସମସ୍ତ ରହିଛନ୍ତି । ସର୍ବେଶ୍ୱରବାଦ ମତରେ ଈଶ୍ୱର ନିଜେ ସବୁ ହୋଇ ରହିଛନ୍ତି । ସବୁ ଈଶ୍ୱରଙ୍କର ରୂପ । ସେ ଏକା ଅଂଶୀ । ଆଉ ସବୁ ତାଙ୍କର ଅଂଶ ମାତ୍ର । ଶେଷରେ ଅଦ୍ୱୈତବାଦର ତତ୍ତ୍ୱ ହେଲା ବ୍ରହ୍ମ ଏକମାତ୍ର ଶକ୍ତି । ଯାହା କିଛି ଦେଖାଯାଉଛି ସେ ସବୁ ତାଙ୍କର କଳ୍ପିତ ଲୀଳାରୂପ, ଜୀବ ଚୈତନ୍ୟ ତାଙ୍କର ଚୈତନ୍ୟ । ସେ ହେଉଛନ୍ତି ସତ୍‌ଚିତ୍ ଆନନ୍ଦ ଯୁକ୍ତ ଅନାଦି ଅନନ୍ତ । ଏହି ଉଚ୍ଚ ଦାର୍ଶନିକ

ତତ୍ତ୍ୱସବୁ ଉଚ୍ଚତତ୍ତ୍ୱ ଅଧିକାର ଯୋଗୀ ଓ ଦାର୍ଶନିକ ମାନଙ୍କ ବ୍ୟତୀତ ଅନ୍ୟ କାହାର ବୋଧଗମ୍ୟହେବା କଷ୍ଟକର । ସେହି ଉଦ୍ଦେଶ୍ୟରେ ପୁରାଣକାର ସାଧାରଣ ମନୁଷ୍ୟର ସୁବିଧା ପାଇଁ ସେହି ଅରୂପ ଗୁଣାତୀତ ଅଦ୍ୱିତୀୟ ଶକ୍ତି ବ୍ରହ୍ମକୁ ତାର ଶକ୍ତିର ଗୋଟିଏ ବା ଏକାଧିକ ଗୁଣ ଆଶ୍ରୟ କରି ଦେବ ଦେବୀ ରୂପ କଳ୍ପନା କରାଇ ନେଇଛନ୍ତି । ଫଳରେ ସବୁ ଶ୍ରେଣୀର ଲୋକେ ତାଙ୍କର ପାଦ୍ୟ, ଅର୍ଘ୍ୟ ଧୂପ, ଦୀପ ନୈବେଦ୍ୟ ସହକାରେ ବାହ୍ୟିକ ପୂଜାର ନିକଟ ହେବାର ସୁଯୋଗ ପାଇବା ସହିତ ମାନସ ପୂଜାର ସହଜ ବ୍ୟବସ୍ଥା ମଧ୍ୟ ପାଇ ପାରିଛନ୍ତି ।

ଅନେକ ସମୟରେ କଠିନ ବିଷୟକୁ ସରଳ କରିବାପାଇଁ ଉପମାର ଆଶ୍ରୟ ନିଆଯାଇଥାଏ । ସେହିପରି ସର୍ବୈଶ୍ୱର୍ଯ୍ୟଶାଳୀ ବ୍ରହ୍ମକୁ ବିଭିନ୍ନ ଦେବଦେବୀ ରୂପ ପ୍ରତିମାର ସାହାଯ୍ୟରେ ସାଧକକୁ ମନନ କରିବାକୁ ସୁଯୋଗ ଦିଆଯାଇଛି ।

ଅବତାର ତତ୍ତ୍ୱ ପୁରାଣରେ ବିଶେଷଭାବରେ ପ୍ରଚାରିତ । ସନାତନ ଧର୍ମୀ ହିନ୍ଦୁମାନଙ୍କର ଏକାନ୍ତ ବିଶ୍ୱାସ ଯେ ଜଗତରେ ଯେତେବେଳେ ହିଂସା, ଅମାନୁଷିକତା ଓ ଅସାଧୁତା ପ୍ରବଳ ହୋଇ ସମାଜରେ ଘୋର ଦୁର୍ବିପାକ ସୃଷ୍ଟିକରେ ସେତେବେଳେ ଧର୍ମର ପୁନରୁତ୍ଥାନ ନିମିତ୍ତ ଓ ଧାର୍ମିକ ମାନଙ୍କୁ ରକ୍ଷା କରିବା ଉଦ୍ଦେଶ୍ୟରେ ଭଗବାନ ଜଗତରେ ମହାଶକ୍ତିଭାବରେ ଆବିର୍ଭୂତ ହୁଅନ୍ତି । ବୈଷ୍ଣବ ମାନେ ଦଶ ଅବତାରରେ ବିଶ୍ୱାସ କରନ୍ତି । ଭାଗବତ ପୁରାଣରେ ଅନେକ ଅବତାରର ବର୍ଣ୍ଣନା ରହିଛି । ଜୈବିକ ବିବର୍ତ୍ତନବାଦ ବୁଝାଇବା ଉଦ୍ଦେଶ୍ୟରେ ମତ୍ସ୍ୟ, କୂର୍ମ ବରାହ, ନରସିଂହ ବାମନ ଇତ୍ୟାଦି ଅବତାରର ପ୍ରଚଳନ ବୋଲି ଅନେକ ମନେ କରନ୍ତି । ଐତିହାସିକ ଦୃଷ୍ଟିରୁ ଅସାଧାରଣ ଚିରିତ୍ରକୁ ହିନ୍ଦୁଧର୍ମରେ ଅବତାରଭାବେ ଗ୍ରହଣ କରାଯାଇଛି । ଶିବ,ସତୀ ପାର୍ବତୀ, ବ୍ରହ୍ମା, ବାଗଦେବୀ, ରାମ, ସୀତା, କୃଷ୍ଣ, ରାଧା, ରୁକ୍ମିଣୀ, ବ୍ୟାସଦେବ, ନରନାରାୟଣ, ବୁଦ୍ଧଦେବ, ଦତ୍ତାତ୍ରେୟ, ପରଶୁରାମ, ବଳରାମ, ଲକ୍ଷ୍ମଣ, କପିଳ, ଦୁର୍ବାସା, ସୋମଦେବଙ୍କର ନାମ ଉଦାହରଣ ଦିଆଯାଇପାରେ । କଳ୍କୀ ରହିଅଛନ୍ତି ଭବିଷ୍ୟତ ଅବତାର ଭାବରେ । ସର୍ବଉପନିଷଦର ସାରରୂପେ ମହାଭାରତର ଅଂଶ ଶ୍ରୀମଦ୍ ଭାଗବତଗୀତାର ଯେପରି ଖ୍ୟାତି, ମାର୍କଣ୍ଡେୟ ମହାପୁରାଣର ଅଂଶ ସର୍ବତନ୍ତ୍ରର ସାରସ୍ୱରୂପ ବର୍ଣ୍ଣିତ ଶ୍ରୀଦେବୀ ମାହାତ୍ମ୍ୟଚଣ୍ଡୀ ସେହିପରି । ଚଣ୍ଡୀ ଓ ଗୀତା ଉଭୟ ପବିତ୍ର ଓ ବ୍ରହ୍ମବିଦ୍ୟା ଶାସ୍ତ୍ର ରୂପେ ଗୃହୀତ । ଗୀତାର ସଗୁଣ ବ୍ରହ୍ମ ଚଣ୍ଡୀର ମହାମାୟୀ । ପ୍ରକୃତ ପକ୍ଷରେ ଶକ୍ତିମାନ ବ୍ରହ୍ମ ଓ ଚୈତନ୍ୟମୟୀ ପରମାଶକ୍ତି ଏକ ସତ୍ତାର ଦୁଇ ପରିପ୍ରକାଶ । ମୂଳତଃ ଶକ୍ତି ଓ ବ୍ରହ୍ମ ଅଭେଦ ।

ମହାଋଷି କାଶ୍ୟପଙ୍କର ଦୁଇ ସ୍ତ୍ରୀ । ଅଦିତିଙ୍କର ଗର୍ଭରୁ ଦେବତାମାନେ ଦିତିଗର୍ଭରୁ ଦୈତ୍ୟମାନେ ଜନ୍ମ ନେଲେ । ଏମାନେ ପରସ୍ପର ଭଉଣୀ ଥିଲେ । ତେଣୁ ଦେବତା ଓ

ଦୈତ୍ୟ ପରସ୍ପରର ଆତ୍ମୀୟ । ପୁରାଣମାନଙ୍କରେ ଆମେ ମନୁଷ୍ୟ ବ୍ୟତୀତ ଗନ୍ଧର୍ବ ଯକ୍ଷ, କିନ୍ନର, ନାଗ, ରାକ୍ଷସମାନଙ୍କର ନାମ ପାଉ । ଭବିଷ୍ୟ ପୁରାଣରେ ହାର, ହୁଣ, ବର୍ବର ଗୁରଗୁ (ଇଂରେଜ) ଶକ, ଯବନ ପଲ୍ଲବ, ରୋମଜ, ଚୀନ, ଆଦି ମ୍ଳେଚ୍ଛମାନଙ୍କର ବର୍ଣ୍ଣନା ରହିଛି । ଏମାନଙ୍କ ମଧ୍ୟରେ କେବଳ ବସ୍ତୁଗତ ଓ ଅସ୍ତ୍ରଗତ କ୍ଷମତା ପ୍ରଭାବରେ ଯାହା ତାରତମ୍ୟ ଥିଲା । ଏହିମାନଙ୍କ ମଧ୍ୟରେ ଯାହା ଦ୍ୱନ୍ଦ୍ୱଥିଲା ତାହା ପ୍ରଧାନତଃ ବାସସ୍ଥାନ ଅଧିକାର, ସଭ୍ୟତା ଓ ସଂସ୍କୃତିରେ ସ୍ୱାତନ୍ତ୍ର୍ୟ ରକ୍ଷା ନିମିତ୍ତ । ପୁରାଣମାନଙ୍କରେ ଦେଖାଯାଏ ପ୍ରଧାନ ଦେବ୍‌ଦେବୀମାନଙ୍କ ବ୍ୟତୀତ ଆଉ ଅନେକ ଦେବଦେବୀ ଥିଲେ ଯେଉଁମାନେ ଯଜ୍ଞର ହବି ଭାଗ ଗ୍ରହଣ କରୁଥିଲେ । ସୁରାପାନ ଓ ନୃତ୍ୟଗୀତ ଦର୍ଶନରେ ବ୍ୟସ୍ତ ରହୁଥିଲେ । ଦୈତ୍ୟ ଓ ମନୁଷ୍ୟ ସମସ୍ତେ ତପସ୍ୟା କରୁଥିଲେ । ଦେବତାମାନେ ସେମାନଙ୍କର ତପ ନଷ୍ଟପାଇ ଚେଷ୍ଟା କରୁଥିଲେ । ବାରମ୍ବାର ଅପ୍‌ସରା ନର୍ତ୍ତକୀ ପଠାଇ ସେମାନଙ୍କର ଚରିତ୍ର ସଂହାର ଉଦ୍ୟମ କରୁଥିଲେ । ଦେବତାମାନଙ୍କର କାହାକୁ ତପଃ ସାଧନରେ ସାହାଯ୍ୟ କରିବା ମନୋବୃତ୍ତି ନଥିଲା । ସେମାନଙ୍କର ଭୟଥିଲା ଅନ୍ୟକେହି ତପସ୍ୟାର ଫଳ ପାଇଲେ ସେମାନଙ୍କର ସ୍ୱର୍ଗସୁଖ ଓ ଅଳସମୟ ଜୀବନର ପରିସମାପ୍ତି ଘଟିବ ।

ତପଃକାରୀ ପ୍ରତି ଦେବତାମାନେ ହିଂସା ଓ ଅସହିଷ୍ଣୁ ଆଚରଣ ଦେଖାଉଥିଲେ, ଅତ୍ୟାଚାର କରୁଥିଲେ । ଅନେକ କ୍ଷେତ୍ରରେ ଅତି ନିନ୍ଦନୀୟ ଭାବରେ ସେମାନଙ୍କର ହତ୍ୟା କରୁଥିଲେ । ଅସୁରମାତ୍ରେ ଘୃଣାର ପାତ୍ର ଦେଖାଯାଉଥିଲେ ମଧ ତ୍ରିଶିରା, ବୃତ୍ର, ଗୟାସୁର ଆଦି ବହୁ ଧାର୍ମିକ, ଜିତେନ୍ଦ୍ରିୟ, ସତ୍ୟପରାୟଣ, ସରଳ ବିଶ୍ୱାସୀ ଓ ମହାବୀର ପାଠକର ଶ୍ରଦ୍ଧାର ପାତ୍ର ହୁଅନ୍ତି । ସେମାନେ ଛଳନା ପ୍ରବଞ୍ଚନାକୁ ଘୃଣା କରିଛନ୍ତି, ଦଳବଦ୍ଧ ଭାବରେ ବିପଦ ବରଣ କରିଛନ୍ତି । ଶୃଙ୍ଖଳିତ ଆଚରଣ ଦେଖାଇଅଛନ୍ତି । ଦୋଷଗୁଣ ଦେବତା, ଦେବୀ ଉଭୟଙ୍କର ବର୍ଣ୍ଣନା କରାଯାଇଅଛି । ପ୍ରଧାନ କେତେକ ଦେବଦେବୀଙ୍କୁ ଛାଡିଦେଲେ ତୁଳନାତ୍ମକ ଭାବରେ ଦୈତ୍ୟମାନଙ୍କ ଅପେକ୍ଷା ଦେବତାମାନେ ବେଶି ହୀନଚେତା ବସ୍ତୁବାଦୀ । ଅଗ୍ରଗତି ଓ ଛଳନାରେ ବୁଦ୍ଧି ସଂପନ୍ନ ଏକ ଗୋଷ୍ଠୀ କ୍ଷମତାରକ୍ଷା ଲାଳସାରେ ନିଜକୁ ଦେବତାଭାବରେ ପରିଚିତ କରାଇ ପାରିଥିଲେ । ମାତ୍ର ସେମାନଙ୍କର ପ୍ରକୃତ ଦେବତ୍ୱ ନଥିଲା । ତେଣୁ ଦେବତାମାନେ ଉଚ୍ଚ ମାନସିକତାର ପବିତ୍ର ଆଚରଣର ବା ମଙ୍ଗଳମୟ କ୍ରିୟାର ପ୍ରତୀକ ଓ ଦୈତ୍ୟମାନେ ନିଷ୍ଠୁର ଅତ୍ୟାଚାରୀ ବା ଅଧାର୍ମିକ ଏହା ପୁରାଣ ପଢି ଭାବିନେବା ସମ୍ଭବ ହୁଏ ନାହିଁ ।

କେତେକ ପଣ୍ଡିତ ପୁରାଣକୁ ଚାରିଭାଗରେ (ମହାପୁରାଣ, ଉପପୁରାଣ, ପୁରାଣ ଓ ଅତିପୁରାଣ) ବିଭକ୍ତ କରି ପ୍ରତ୍ୟେକର ସଂଖ୍ୟା ଅଠର ଓ ମୋଟ ୭୨ ବୋଲି କହୁଛନ୍ତି । ସାଧାରଣତଃ ପୁରାଣ ଦୁଇଭାଗରେ ବିଭକ୍ତ ମହାପୁରାଣ ଓ ଉପପୁରାଣ । ପୁରାଣର ପାଞ୍ଚୋଟି

ଲକ୍ଷଣ- ହେଲା ୧. ସର୍ଗ (ବ୍ରହ୍ମାଣ୍ଡ ସୃଷ୍ଟିକାର୍ଯ୍ୟଃ ୨) ପ୍ରତିସର୍ଗ (ପ୍ରଳୟ) ୩. ବଂଶ (ଦେବତା ଓ ପିତୃପୁରୁଷମାନଙ୍କର ବଂଶାବଳୀ) ୪. ମନ୍ୱନ୍ତର (ବିଭିନ୍ନ ମନୁମାନଙ୍କର ଅଧିକାର ସମୟ) ୫. ବଂଶାନୁଚରିତ (ସୂର୍ଯ୍ୟ ଚନ୍ଦ୍ରବଂଶୀ ରାଜାମାନଙ୍କର ଚରିତ) । "ଯେଉଁ ଗ୍ରନ୍ଥମାନଙ୍କରେ ସ୍ଥାବର, ଜଙ୍ଗମ, ଦେବତା, ଅସୁର, ଗନ୍ଧର୍ବ ଯକ୍ଷ ଓ ମନୁଷ୍ୟମାନଙ୍କର ବୃତ୍ତାନ୍ତ, ସୃଷ୍ଟି ବିବରଣ, ବ୍ରହ୍ମ ଅନୁସନ୍ଧାନ, ସାକାର ନିରାକାର ବ୍ରହ୍ମର ବର୍ଣ୍ଣନା, ଅନ୍ତଃତତ୍ତ୍ୱନିର୍ଣ୍ଣୟ ଜ୍ୟୋର୍ତିବିଜ୍ଞାନ, ପୂର୍ବତନ ରାଜନ୍ୟବର୍ଗର ବଂଶାବଳୀ ଆଦି ନାନା ବିଷୟରେ ବିବରଣୀ ଅଛି ଓ ଯାହା ଜାଣିବା ଫଳରେ ଭୂତ, ବର୍ତ୍ତମାନ ଓ ଭବିଷ୍ୟତ ଅବସ୍ଥାର ପରିଜ୍ଞାନ, ଜ୍ଞାନର ନିର୍ମଳତା ଓ ବୁଦ୍ଧିର ପ୍ରଖରତା ଜନ୍ମିଥାଏ ତାହାର ନାମ ପୁରାଣ । ଏଥିରେ ବେଦାନ୍ତ ବିଶେଷ ଭାବରେ ବର୍ଣ୍ଣନା ହୋଇଥାଏ । (ପୌରାଣିକ ଅଭିଧାନ) ବ୍ରହ୍ମବୈର୍ବତ୍ତ ପୁରାଣରେ ଉପପୁରାଣର ପାଞ୍ଚଲକ୍ଷଣ ଓ ମହାପୁରାଣର ଦଶଲକ୍ଷଣ ଥାଏ ବୋଲି କୁହାଯାଇଛି ମାତ୍ର ଏସବୁ ଗ୍ରନ୍ଥମାନଙ୍କର ଏକ ବିଶେଷ ସାଧାରଣ ଲକ୍ଷଣ ଏକେଶ୍ୱରବାଦ । ମହାପୁରାଣର ସଂଖ୍ୟା ୧୮ ଗୋଟି । ଉପପୁରାଣ ମଧ୍ୟ ଅଠର ଗୋଟି ବୋଲି କୁହାଯାଇଛି ।

ଅଷ୍ଟାଦଶ ମହାପୁରାଣର ନାମ ଗୋଟିଏ ଶ୍ଳୋକରେ କହିଲେ -

"ଭ ଦ୍ୱୟଂ (ଭାଗବତ, ଭବିଷ୍ୟ)
ମ ଦ୍ୱୟଂ (ମତ୍ସ୍ୟ, ମାର୍କଣ୍ଡେୟ)
ବ୍ର ତ୍ରୟଂ (ବ୍ରହ୍ମ, ବ୍ରହ୍ମାଣ୍ଡ ବ୍ରହ୍ମବୈର୍ବତ୍ତ)
ବ ଚତୁଷ୍ଟୟ (ବାୟୁ, ବିଷ୍ଣୁ, ବରାହ, ବାମନ)
ଅନାପତ-ଲିଂଗକୂ-ସ୍କାନି (ଅଗ୍ନି, ନାରଦ, ପଦ୍ମ, ଲିଙ୍ଗ, ଗରୁଡ଼, କୂର୍ମ, ସ୍କନ୍ଦ)
ପୁରଣ ମିତି କଥ୍ୟତେ (ଏମିତି ଅଠର ଗୋଟି ପୁରାଣ)

ଉପପୁରାଣ ଗୁଡ଼ିକର ନାମ ଦେଇ ମତାନ୍ତର ଦେଖାଯାଏ । ଏହା କ୍ଷୁଦ୍ର ପୁରାଣ ଓ ଏହା ନାନା ମୁନିମାନଙ୍କର ରଚିତ । ଆଦି, ନୃସିଂହ, ବାୟୁ, ଶିବଧର୍ମ, ଦୁର୍ବାସା, ନାରଦ, ନନ୍ଦିକେଶ୍ୱର, ଉଶନ କପିଳ, ବରୁଣ, ଶାମ୍ବ, କାଳିକା, ମହେଶ୍ୱର, ପଦ୍ମ, ଦେବ, ପରାଶର, ମରୀଚ, ଭାସ୍କର ଏମିତି ଅଠରଗୋଟି । ମତାନ୍ତରେ ନନ୍ଦିକେଶ୍ୱର ପଦ୍ମ ଓ ଦେବ ପୁରାଣ ବଦଳରେ ବାମନ, ବ୍ରାହ୍ମଣ, ଭାସ୍କର । ମତାନ୍ତରେ ବାୟୁ ବାମନ ବ୍ରହ୍ମା ମରୀଚି ସ୍ଥଳେ ମାନବ ନନ୍ଦିକେଶ୍ୱର ଆଦିତ୍ୟ ଭାଗବତ ଓ ବଶିଷ୍ଠ । ଅନେକ ପୁରାଣକୁ ଉପପୁରାଣ ମଧ୍ୟରେ ସାମିଲ କରାଯାଇଛି । ବୈଷ୍ଣବମାନେ ଭାଗବତ ପୁରାଣ କହିଲେ ଶୀମଦ ଭାଗବତକୁ ବୁଝାଉଥିବା ବେଳେ ଶାକ୍ତମାନେ ଏହା ଦେବୀ ଭାଗବତ ବୋଲି ଗ୍ରହଣ କରିଥାନ୍ତି । କଳ୍କି ଏକ ଉପପୁରାଣ ଓ ଏହା ବିଶେଷ ଲୋକପ୍ରିୟତା ଅର୍ଜନ କରିଛି ।

ସତ୍ତ୍ୱ,ରଜ,ତମ ଭେଦରେ ପୁରାଣ ୩ ଭାଗରେ ବିଭକ୍ତ । ବିଷ୍ଣୁ, ନାରଦୀୟ, ଭାଗବତ ଗରୁଡ ପଦ୍ମ ଓ ବରାହ ବିଷ୍ଣୁ ପୁରାଣ ଶ୍ରେଣୀୟ, ସତ୍ତ୍ୱ ଗୁଣର । ମତ୍ସ୍ୟ, କୂର୍ମ, ଲିଙ୍ଗ, ଶିବ, ସ୍କନ୍ଦ ଓ ଅଗ୍ନି ତମଗୁଣର ଛଅଟି । ରଜଗୁଣ ଅନୁସାରେ ବ୍ରହ୍ମ, ବ୍ରହ୍ମାଣ୍ଡ, ବ୍ରହ୍ମବୈବର୍ତ୍ତ, ମାର୍କଣ୍ଡେୟ, ଭବିଷ୍ୟ, ଓ ବାମନ ପୁରାଣ ଚିହ୍ନିତ ।

କେତେଗୋଟି ପୁରାଣ ଭାଷାର ଐଶ୍ୱର୍ଯ୍ୟ, ଛନ୍ଦର ବୈଚିତ୍ର୍ୟ, ସାହିତ୍ୟ ଓ କାବ୍ୟସଂପଦ, ସ୍ତୋତ୍ର ସ୍ତବର ମାଧୁର୍ଯ୍ୟ ଓ ରସତତ୍ତ୍ୱର ବିଶ୍ଲେଷଣ ଦୃଷ୍ଟିରୁ ଅତୁଳନୀୟ । ମାର୍କଣ୍ଡେୟ, ଦେବୀ ଭାଗବତ, ଶ୍ରୀମଦ୍‌ଭାଗବତ, ବ୍ରହ୍ମବୈବର୍ତ୍ତ,ବିଷ୍ଣୁ, ନୃସିଂହପୁରାଣ, ପଦ୍ମ ବ୍ରହ୍ମା, ଶିବ, ଦେବୀ ଓ ହରିବଂଶ କାଳିକା ପୁରାଣର ନାମ ଏ ସଂକ୍ରାନ୍ତରେ ଉଲ୍ଲେଖଯୋଗ୍ୟ ।

ମାର୍କଣ୍ଡେୟ ପୁରାଣର ଦେବୀ ମାହାତ୍ମ୍ୟରେ ପ୍ରାଧାନିକ ରହସ୍ୟ ଅଛି । ସୃଷ୍ଟିର ଆରମ୍ଭରେ ତ୍ରିଗୁଣମୟୀ ମହାମାୟା ଯଥାକ୍ରମେ ରାଜସିକ, ତାମସିକ ଓ ସାତ୍ତ୍ୱିକ ଗୁଣ ଆଶ୍ରୟକରି ମହାଲକ୍ଷ୍ମୀ, ମହାକାଳୀ ଓ ମହାସରସ୍ୱତୀ ରୂପରେ ପ୍ରକଟିତ ହେଲେ । ତାହାପରେ ମହାଲକ୍ଷ୍ମୀଙ୍କ ଆହ୍ୱାନରେ ଦେବୀତ୍ରୟ ପ୍ରତ୍ୟେକ ଦ୍ୱିବିଧା ଭାଗରେ ବିଭକ୍ତ ହେଲେ ପୁରୁଷ ଓ ନାରୀ ରୂପରେ । ମହାଲକ୍ଷ୍ମୀଙ୍କଠାରୁ ବ୍ରହ୍ମା ଓ ଲକ୍ଷ୍ମୀ (ଶ୍ରୀଦେବୀ) ଆର୍ବିର୍ଭୂତ ହେଲେ । ମହାକାଳୀଙ୍କଠାରୁ ଶଙ୍କର ଓ ସରସ୍ୱତୀ, ମହାସରସ୍ୱତୀଙ୍କଠାରୁ ବିଷ୍ଣୁ ଓ ଦୁର୍ଗା ଆବିର୍ଭୂତ ହେଲେ । ଏହା ପରେ ବ୍ରହ୍ମା ଓ ସରସ୍ୱତୀ ସୃଷ୍ଟିକାର୍ଯ୍ୟରେ ମିଳିତ ହେଲେ । ବିଷ୍ଣୁ ଓ ଲକ୍ଷ୍ମୀ ସୃଷ୍ଟ ବସ୍ତୁ ସମୂହର ପାଳନ କାର୍ଯ୍ୟରେ ଓ ଶଙ୍କର ଓ ଦୁର୍ଗା ବସ୍ତୁ ସମୂହର ସଂହାର କାର୍ଯ୍ୟରେ ନିଯୁକ୍ତ ହେଲେ । ଏହାକୁ ଅନ୍ୟ ଭାଷାରେ କହିଲେ ଅଦ୍ୱିତୀୟ ଶକ୍ତି ବ୍ରହ୍ମର ପୁରୁଷଭାବେ ମୂଳ ବିଭୂତି ତ୍ରୟ ହେଲେ ବ୍ରହ୍ମା ବିଷ୍ଣୁ ଓ ଶଙ୍କର । ସ୍ତ୍ରୀ ଭାବରେ ହେଲେ ସରସ୍ୱତୀ ଲକ୍ଷ୍ମୀ ଓ ଦୁର୍ଗା । ଲୀଳାଶକ୍ତିର ମୂର୍ତ୍ତିରୂପ ହେଲେ ଗୋଲକ ଧାମର କୃଷ୍ଣ ଓ ରାଧା । ପୁରାଣ ସମୂହରେ ପ୍ରଧାନ ସ୍ଥାନ ଦିଆଯାଇଛି ଏହି ଆଠଜଣ ଦେବ ଦେବୀଙ୍କୁ । ବିଭିନ୍ନ ପୁରାଣମାନଙ୍କରେ ଏମାନଙ୍କ ବ୍ୟତୀତ କାଳିକା, ଚଣ୍ଡିକା, ଜଗଦ୍ଧାତ୍ରୀ, ଅନ୍ନପୂର୍ଣ୍ଣା, ଲଳିତା, ତ୍ରିପୁର-ସୁନ୍ଦରୀ, ଗାୟତ୍ରୀ, ସାବିତ୍ରୀ, ଦଶମହାବିଦ୍ୟା, ନବଦୁର୍ଗା, ଶୀତଳା, ମନସା, ଷଷ୍ଠୀଦେବୀ, ବିଶ୍ୱକର୍ମା, କାର୍ତ୍ତିକ, ଗଣେଶ, ସୂର୍ଯ୍ୟ, ଅଗ୍ନି, ଯମ, ମିତ୍ର, ବରୁଣ, ପବନ ଓ ଅଶ୍ୱିନୀ କୁମାର ଦ୍ୱୟ ଆଦି ଦେବଦେବୀଙ୍କର ବିଶେଷ ଉପାସନାର କଥା ଓ ଅନେକ କ୍ଷେତ୍ରରେ ତାଙ୍କୁ ଜଣଜଣକରି ସର୍ବେଶ୍ୱର ବା ସର୍ବେଶ୍ୱରୀ ରୂପେ ଅଭିହିତ କରାଯାଇ ଅନ୍ୟ ଦେବଦେବୀଙ୍କ ଅପେକ୍ଷା ଶ୍ରେଷ୍ଠ ପ୍ରତିପାଦନ କରିବାକୁ ଚେଷ୍ଟା କରାଯାଇଛି । ପୁରାଣ ସମୂହ ଏକେଶ୍ୱର ବାଦର ପ୍ରତିପାଦକ ଥିଲେ ମଧ୍ୟ ଏକ ଏକ ବିଶେଷ ଦେବତାବାଦ ଏକ ଏକ ପୁରାଣରେ ପ୍ରଚାର କରାଯାଇଛି । ଏହି ଏକ ମଧ୍ୟରେ ବୈଷମ୍ୟ, ପୁରାଣର ବିଶେଷ ଲକ୍ଷଣ ।

ଅବତାରବାଦ ପୁରାଣର ଏକ ମୁଖ୍ୟ ଅଙ୍ଗ । ସବୁ ପୁରାଣରେ ଅବତାର ପ୍ରସଙ୍ଗ ବର୍ଣ୍ଣିତ । ଶୈବମତ ପରିପୋଷକ ପୁରାଣରେ ଶିବଙ୍କର ଅନେକ ଅବତାର ଓ ବୈଷ୍ଣବ ପୁରାଣରେ ବିଷ୍ଣୁଙ୍କର ଅନେକ ଅବତାରର କୀର୍ତ୍ତନ କରାଯାଇଛି । ଅଥଚ କୁହାଯାଏ ଅବତାରବାଦ ଅତି ପ୍ରାଚୀନ ନୁହେଁ । ବୁଦ୍ଧଦେବ ଯେତେବେଳେ ବୌଦ୍ଧ ଅବତାର ବୋଲି କୁହାଗଲେ ସେତେବେଳେ ଏ ଅବତାର-ବାଦର ପ୍ରଚଳନ ହେଲା । ଏଥିରେ ମଧ୍ୟ ଭିନ୍ନ ଭିନ୍ନ ମତ ଅଛି । ସେମାନେ ବୈଦିକ ଗ୍ରନ୍ଥରେ ଅବତାର ସୂଚନା ଥିବା କଥା କହୁଛନ୍ତି । ସ୍କନ୍ଦ ପୁରାଣରେ କୁହାଯାଇଛି 'ଅଷ୍ଟାଦଶ ପୁରାଣେଷୁ ଦଶଭିର୍ଗୀୟତେ ଶିବଃଚତୁର୍ଭି ଭଗବାନ ବ୍ରହ୍ମା, ଦ୍ୱାଭ୍ୟାଂ ଦେବୀ ତଥା ହରିଃ' । ଅଠର ପୁରାଣ ମଧ୍ୟରୁ ଦଶଗୋଟିରେ ଶିବ, ଚାରଟିରେ ଭଗବାନ ବ୍ରହ୍ମା, ଦୁଇଟିରେ ଦେବୀ ଓ ଆଉ ଦୁଇଟିରେ ହରିଙ୍କର ଗୁଣ ବର୍ଣ୍ଣନା କରାଯାଇଅଛି । ଶିବ, ଭବିଷ୍ୟ, ମାର୍କଣ୍ଡେୟ, ଲିଙ୍ଗ, ବରାହ, ସ୍କନ୍ଦ, ମତ୍ସ୍ୟ, କୂର୍ମ, ବାମନ ଓ ବ୍ରହ୍ମାଣ୍ଡ ଏ ଦଶ ମହାପୁରାଣ ଶୈବ ଅଟେ । ଏହି ସବୁ ଗ୍ରନ୍ଥରେ ପ୍ରାୟ ତିନିଲକ୍ଷ ଶ୍ଳୋକରେ ଶିବଙ୍କର ମହିମା ପ୍ରକାଶିତ ହୋଇଅଛି । ବିଷ୍ଣୁପୁରାଣ, ଭାଗବତ, ନାରଦ ପୁରାଣ, ଗରୁଡ ପୁରାଣ, ଏହି ଚାରି ପୁରାଣ ବୈଷ୍ଣବ ଓ ଏଥିରେ ବିଷ୍ଣୁଙ୍କର ମହିମା କୁହାଯାଉଅଛି । ବ୍ରହ୍ମ ଓ ପଦ୍ମ ଦୁଇ ପୁରାଣ ବ୍ରହ୍ମାଙ୍କ ମହିମା, ଅଗ୍ନିପୁରାଣ କେବଳ ଅଗ୍ନିଙ୍କର ଓ ବ୍ରହ୍ମ ବୈବର୍ତ୍ତପୁରାଣ କେବଳ ସବିତାଙ୍କର ମହିମା ବର୍ଣ୍ଣନା କରିଅଛି । ଚାରିଗୋଟି ବୈଷ୍ଣବ ପୁରାଣରେ ଶିବ ଓ ବିଷ୍ଣୁଙ୍କର ସାମ୍ୟ ଦେଖାଯାଇଛି । ଏଥିରୁ ଜଣାଯାଉଛି ଯେ ବ୍ରହ୍ମାଆଦିଙ୍କ ଅପେକ୍ଷା ଜଗତପତି ଭଗବାନ ଅଧିକ ମାନ୍ୟ । ବ୍ରହ୍ମ ପୁରାଣରେ ବ୍ରହ୍ମା ବିଷ୍ଣୁ ଓ ଶିବ ତିନିଜଣଙ୍କରେ ଏକତ୍ର ବର୍ଣ୍ଣନା ଥିଲେ ମଧ୍ୟ ସମସ୍ତଙ୍କ ଅପେକ୍ଷା ବ୍ରହ୍ମାଙ୍କୁ ଶ୍ରେଷ୍ଠ କୁହାଯାଇଛି । ଭଗବାନ ସୂର୍ଯ୍ୟଙ୍କୁ ବ୍ରହ୍ମା ବିଷ୍ଣୁ ଶିବାତ୍ମକ ଭାବେ ଚିତ୍ରିତ କରାଯାଇଅଛି । ଗୋଟିଏ ପୁରାଣରେ ଅନ୍ୟ ଦେବତାଙ୍କର ପ୍ରଶଂସା କରାଯାଇଥିଲେ ମଧ୍ୟ ପ୍ରତ୍ୟେକ ପୁରାଣ ଏକ ବିଶେଷ ଉଦ୍ଦେଶ୍ୟରେ ରଚିତ ଓ ସେଥିପାଇଁ ଏଥିରେ ଏକ ବିଶେଷ ଧର୍ମ ସଂପ୍ରଦାୟର ଭାବ ବର୍ଣ୍ଣନା ମୁଖ୍ୟ ସ୍ଥାନ ପାଇଛି । ଶିବ ପୁରାଣରେ ଶିବଙ୍କୁ ବ୍ରହ୍ମା ଓ ବିଷ୍ଣୁଙ୍କର ସ୍ରଷ୍ଟା, ବିଷ୍ଣୁପୁରାଣରେ ବିଷ୍ଣୁଙ୍କୁ ବ୍ରହ୍ମା ଓ ଶିବଙ୍କର ନିର୍ମାତା, ଦେବୀ ଭାଗବତରେ ଭଗବତୀ, ବ୍ରହ୍ମା ବିଷ୍ଣୁ ଶିବଙ୍କର ପ୍ରସବ-କାରିଣୀ, ଓ ସୂର୍ଯ୍ୟ ପୁରାଣରେ ସୂର୍ଯ୍ୟଦେବ ସମସ୍ତଙ୍କର ସବିତା ଭାବରେ ସ୍ଥାନ ପାଇଛନ୍ତି । ପୁରାଣ ମାନଙ୍କରେ ବିରୋଧତାଥିବା କୁହାଯାଇଥିଲେ ମଧ୍ୟ ଏକ ଜଗଦୀଶ୍ୱରଙ୍କର ବହୁତ ବିଗ୍ରହ ନମସ୍ତେ ଅନନ୍ତାୟ ସହସ୍ରମୂର୍ତ୍ତୟେ' ମନେକରି ଏକୋ ଦେବଃ ସର୍ବ ଗୁଢ଼ଃ ଭାବ ଗ୍ରହଣ କରି, ଏସବୁ କେବଳ ନାମର ଭେଦ, ବିସ୍ତୁଭେଦ ନୁହେଁ ବୋଲି ଧରିବା ଯୁକ୍ତିସଙ୍ଗତ ହେବ ।

"ବ୍ରହ୍ମାଣଂ କେଶବଂ ରୁଦ୍ରଂ ଭେଦଭାବେନ ମୋହିତାଃ
ପଶ୍ୟନ୍ତ୍ୟେକନଜାନାନ୍ତି ପାଖଣ୍ଡୋପହତା ଜନାଃ ।"

ଭେଦଭାବରେ ମୋହିତ ପାଖଣ୍ଡମତଦ୍ୱାରା ପ୍ରଭାବିତ ହୋଇ ମନୁଷ୍ୟ ବ୍ରହ୍ମା ବିଷ୍ଣୁ ମହାଦେବଙ୍କୁ ପୃଥକ ପୃଥକ ମନେ କରନ୍ତି ଏକ ନୁହେଁ ଭାବିଥାନ୍ତି । ବାସ୍ତବରେ ଏସବୁ ଏକ । ସବୁ ପୁରାଣ ଏହାର ପ୍ରମାଣ, ଏହାର ସଂକଳନ ଏକ ବେଦବ୍ୟାସ କରିଅଛନ୍ତି । ପୁରାଣମାନଙ୍କରେ ପଞ୍ଚଦେବତା ଓ ସବୁ ସଂପ୍ରଦାୟର ଉତ୍କୃଷତା ଦେଖାଇ ଦିଆଯାଇଅଛି । ପାଠକ ନିଜ ରୁଚି ଅନୁସାରେ କାହାକୁ ନିକୃଷ୍ଟ ନ ଭାବି ଶ୍ରେଷ୍ଠକୁ ଗ୍ରହଣ କରିବ । ସେଇଥିପାଇଁ କୁହାଯାଇଛି -

"ଅଷ୍ଟାଦଶ ପୁରାଣାନାଂ ନାମଧେୟାନି ଯଃ ପଠେତ୍ ।
ତ୍ରିସଂଧ୍ୟଂ ଜପତେ ନିତ୍ୟଂ ସୋଽଶ୍ୱମେଧଫଳଂ ଲଭେତ ।"(ମାର୍କଣ୍ଡେୟ)
ଯେ ତ୍ୱେତାନି ସମସ୍ତାନି ପୁରାଣାନି ଚ ଜାନତେ
ଭାରତଂ ଚ ମହାବାହୋ ତେ ସର୍ବଜ୍ଞା ମତାନୃଣାମ୍ ।। (ଭବିଷ୍ୟ)

ଅଠରଟି ପୁରାଣର ଯେ ନାମ ପଢ଼ନ୍ତି ତିନିକାଳ ସଂଧ୍ୟାରେ ନିତ୍ୟ ଯେ ଜପ କରନ୍ତି ସେ ଅଶ୍ୱମେଧଯଜ୍ଞର ଫଳ ପାଆନ୍ତି । ହେ ମହାବାହୁ ଯେ ଏହି ସଂପୂର୍ଣ୍ଣ ପୁରାଣ ଓ ମହାଭାରତକୁ ଜାଣନ୍ତି ସେ ସର୍ବଜ୍ଞ ଭାବରେ ପରିଗଣିତ ହୁଅନ୍ତି । ପୁରାଣ ମାନଙ୍କର ଶ୍ଳୋକ ସଂଖ୍ୟା ମଧ୍ୟ ସର୍ବସମ୍ମତ ନୁହେଁ ।

ସେମାନଙ୍କର ବିଷୟବସ୍ତୁ ନିମ୍ନପ୍ରକାର :-

**୧. ବ୍ରହ୍ମପୁରାଣ**

ଏହି ପୁରାଣ ସର୍ବ ପ୍ରଥମେ ରଚନା କରାଯାଇଥିବାରୁ ଏହାକୁ ଆଦି ପୁରାଣ କୁହାଯାଉଛି । ଏହି ପୁରାଣର ପ୍ରଥମାଂଶରେ ସୃଷ୍ଟି ପ୍ରକ୍ରିୟା ଦେବତା ଓ ଅସୁରମାନଙ୍କର ଜନ୍ମ ସହିତ ସୂର୍ଯ୍ୟ ଓ ଚନ୍ଦ୍ର ବଂଶର ବିବରଣୀ ଅଛି । ଏହା ପରେ ବିଶ୍ୱର ବର୍ଣ୍ଣନା ଦ୍ୱୀପ, ବର୍ଷ, ସ୍ୱର୍ଗ, ନରକ, ପାତାଳ ଆଦିର ବିବରଣୀ ଅଛି । ଶେଷଭାଗରେ ଶ୍ରୀକୃଷ୍ଣ ଜୀବନଚରିତ ଯୋଗ ଶାସ୍ତ୍ରର ବାଖ୍ୟା କରାଯାଇଅଛି । ଏହାର ଶ୍ଳୋକ ସଂଖ୍ୟା ସତୁରି ହଜାର । ଅନ୍ୟମତେ ପଚିଶ ହଜାର । ତୀର୍ଥ ମାହାତ୍ମ୍ୟ ସହିତ ଓଡ଼ିଶାର ମନ୍ଦିରଗୁଡିକ ଯଥା କୋଣାର୍କର ବର୍ଣ୍ଣନା ଥିବାରୁ ଏହାକୁ ୧୨ଶ ବା ୧୩ଶ ଶତାବ୍ଦୀର ଲେଖାବୋଲି କେହି କେହି କହୁଛନ୍ତି । ତେଣୁ ଏହାର ଆଦିପୁରାଣ ନାମ ବୃଥା ।

**୨. ପଦ୍ମପୁରାଣ**

ଯେତେବେଳେ ବିଶ୍ୱବ୍ରହ୍ମାଣ୍ଡ ଏକ ସ୍ୱର୍ଣ୍ଣ ପଦ୍ମ ରୂପେ ବିରାଜିତ ଥିଲା ସେହି ସମୟର ଘଟଣାବଳୀ ଏହି ପୁରାଣରେ ଲେଖାଯାଇଅଛି । ତେଣୁ ଏହାର ଏପରି ନାମ । ୫୫ ହଜାର ଶ୍ଳୋକ ବିଶିଷ୍ଟ ଏହି ପୁରାଣର ୫ଟି ଖଣ୍ଡ ଅଛି, ଯଥା ସୃଷ୍ଟି, ଭୂମି, ସ୍ୱର୍ଗ, ପାତାଳ,

ଓ ଉତ୍ତରଖଣ୍ଡ। ଏହାର ପ୍ରଧାନ ବିଷୟ ହେଲା ସୃଷ୍ଟିର ଆଦିକ୍ରମ ତାରକାସୁର କାହାଣୀ, ଗୋମାହାତ୍ମ୍ୟ, ବୃତ୍ରବଧ, ପୃଥୁଚରିତ, ବେଣ ରାଜା ଉପାଖ୍ୟାନ, ନହୁଷ ଓ ଯଯାତିଙ୍କର କାହାଣୀ ବ୍ରହ୍ମାଣ୍ଡର ଉତ୍ପତ୍ତି କୁରୁକ୍ଷେତ୍ର ଆଦି ତୀର୍ଥ ବିବରଣ, କାଶୀ, ଗୟା ପ୍ରୟାଗ ପ୍ରଭୃତିର ମାହାତ୍ମ୍ୟ କୀର୍ତ୍ତନ, କର୍ମଯୋଗ ନିରୂପଣ, ଅଗସ୍ତ୍ୟାଦି ଋଷିଙ୍କର ଆଗମନ, ରାବଣ ଉପାଖ୍ୟାନ ଜଗନ୍ନାଥଙ୍କର ବିବରଣ, ଶ୍ରୀକୃଷ୍ଣଙ୍କର ନିତ୍ୟଲୀଳା କଥନ, ଦଧିଚି ଉପାଖ୍ୟାନ, ଶିବ ମାହାତ୍ମ୍ୟ, ଗୌତମ ଉପାଖ୍ୟାନ, ଜଳନ୍ଧର ଦୈତ୍ୟର କଥା, ସାଗର ଉପାଖ୍ୟାନ ଗଙ୍ଗା ମାହାତ୍ମ୍ୟ, ଏକାଦଶୀ ମାହାତ୍ମ୍ୟ, ବ୍ରତ ମାହାତ୍ମ୍ୟ, ନୃସିଂହ ଉତ୍ପତ୍ତି, ଜମ୍ବୁଦ୍ୱୀପ ଅନ୍ତର୍ଗତ ତୀର୍ଥମାନଙ୍କର ମାହତ୍ମ୍ୟ ଭାଗବତ ମାହାତ୍ମ୍ୟ ମତ୍ସ୍ୟ ଆଦି ଅବତାର ପ୍ରଭୃତି । ଶେଷ ଖଣ୍ଡଟି କ୍ରିୟା ଯୋଗ ସାଗର ।

### ୩. ବିଷ୍ଣୁ ପୁରାଣ

ପୁରାଣର ପଞ୍ଚଲକ୍ଷଣ ସଂପୂର୍ଣ୍ଣ ଭାବରେ ଏହି ପୁରାଣରେ ଦେଖିବାକୁ ମିଳେ । ଏହା ଛଅଭାଗରେ ବିଭକ୍ତ । ୨୩ ହଜାର ଶ୍ଳୋକ ଏଥିରେ ଅଛି । ଏଥିରେ ଦେଖିବାକୁ ମିଳେ ।

୧) ବିଷ୍ଣୁ ଓ ଲକ୍ଷ୍ମୀଙ୍କର ଉତ୍ପତ୍ତି, ଧ୍ରୁବଚରିତ ପ୍ରହଲ୍ଲାଦ, ଚରିତ ଉପାଖ୍ୟାନ ଆଦି

୨) ପୃଥିବୀ, ସପ୍ତଦ୍ୱୀପ, ସପ୍ତସମୁଦ୍ର ।

୩) ବ୍ୟାସ ଦେବଙ୍କର ବେଦ ବିଭାଗ, ଶାଖା ବିଭାଗ, ଆଶ୍ରମଧର୍ମ ଆଦି

୪) ସୂର୍ଯ୍ୟ ଓ ଚନ୍ଦ୍ରବଂଶ ବ୍ୟତୀତ ଅନ୍ୟ ବଂଶମାନଙ୍କର ବର୍ଣ୍ଣନା ।

୫) କୃଷ୍ଣ ଚରିତ, ବୃନ୍ଦାବନ ଲୀଳା, ରାସଲୀଳା ଆଦି ।

୬) ବିଷ୍ଣୁଭକ୍ତି, ଯୋଗ ଓ ମୁକ୍ତିର କଥା ।

### ୪. ବାୟୁପୁରାଣ

ଏହା ୨୪ ହଜାର ଶ୍ଳୋକ ବିଶିଷ୍ଟ ଓ ଚାରି ଭାଗରେ ବିଭକ୍ତ ହୋଇ ଏଥିରେ ଅଛି

୧) ବ୍ରହ୍ମାଣ୍ଡ ଓ ଜୀବର ସୃଷ୍ଟି ।

୨) କଳ୍ପଆଦି, ଋଷି ବଂଶାବଳୀ ବ୍ରହ୍ମାଣ୍ଡର ବର୍ଣ୍ଣନା, ମନ୍ୱନ୍ତର ଓ ଶୈବ ଆଖ୍ୟାନ ଆଦି ।

୩) ଜୀବଜନ୍ତୁ ଓ ଚନ୍ଦ୍ର ସୂର୍ଯ୍ୟବଂଶର ବିବରଣ ।

୪) ଯୋଗଶାସ୍ତ୍ର ଯୋଗୀ ଓ ଶିବଙ୍କର ମାହାତ୍ମ୍ୟ

**୫. ଭାଗବତ ପୁରାଣ**

ଏହା ଶ୍ରୀମଦ୍‌ଭାଗବତ ନାମରେ ବିଶେଷ ଲୋକପ୍ରିୟ । ଦ୍ୱାଦଶ ସ୍କନ୍ଦରେ ବିଭକ୍ତ ଏହି ପୁରାଣରେ ସୃଷ୍ଟିତତ୍ତ୍ୱ ମାୟାବାଦ ଇତ୍ୟାଦିର ବର୍ଣ୍ଣନା, ବ୍ରହ୍ମାଙ୍କ ସୃଷ୍ଟି, ବିଷ୍ଣୁଙ୍କର ବରାହ ଅବତାର, କପିଳ ଅବତାର, ବେଣ ରାଜା ଚରିତ, ଧ୍ରୁବଚରିତ, ପୃଥୁ ଓ ଭରତ ଉପାଖ୍ୟାନ, ପ୍ରହଲ୍ଲାଦଚରିତ୍ର ଚନ୍ଦ୍ର ଓ ସୂର୍ଯ୍ୟ ବଂଶର ବିବରଣ, ଶ୍ରୀକୃଷ୍ଣ ଚରିତ, ମଥୁରା ଓ ବୃନ୍ଦାବନ ଲୀଳା, ଯଦୁବଂଶ ଧ୍ୱଂସ, ଶ୍ରୀକୃଷ୍ଣଙ୍କର ସ୍ୱଧାମ ପ୍ରସ୍ଥାନ ଓ ଶେଷରେ ଭବିଷ୍ୟତର ରାଜାମାନଙ୍କର ବିବରଣ ରଖାଯାଇଅଛି । ଏହାର ଶ୍ଳୋକ ସଂଖ୍ୟା ୧୮ ହଜାର । ବିଷ୍ଣୁଙ୍କର ସବୁ ଅବତାର ଏଥିରେ ବର୍ଣ୍ଣିତ ।

**୬. ନାରଦୀୟ ପୁରାଣ**

ଏହି ପନ୍ଦର ହଜାର ଶ୍ଳୋକ ବିଶିଷ୍ଟ ପୁରାଣରେ ନାରଦ ଋଷି,ବୃହତକଳ୍ପରେ ଯେଉଁ ସମସ୍ତ କର୍ତ୍ତବ୍ୟ ପାଳନ କରଯାଉଥିଲା ତାହାର ବିସ୍ତୃତ ବର୍ଣ୍ଣନା କରିଅଛନ୍ତି । ଏହି ପୁରାଣରେ ବିଷ୍ଣୁସ୍ତୁତି, ବୈଷ୍ଣବ ଆଖ୍ୟାନ, ବୈଷ୍ଣବ ଧର୍ମ, ବୈଷ୍ଣବ ଆଚରଣ ହରି ଭକ୍ତି ଆଦି ବିଷୟ ବର୍ଣ୍ଣନା କରାଯାଇଛି। ଏଥିରେ ପଚିଶ ହଜାର ଶ୍ଳୋକ ଅଛି ବୋଲି ଭିନ୍ନ ମତ ଅଛି ।

**୭. ମାର୍କଣ୍ଡେୟ ପୁରାଣ**

ନଅ ହଜାର ଶ୍ଳୋକ ଯୁକ୍ତ ଏହି ପୁରାଣ ନାନା ଉପାଖ୍ୟାନରେ ପରିପୂର୍ଣ୍ଣ । ଏହି ପୁରାଣରେ ମାର୍କଣ୍ଡେୟ ମୁନି ଧର୍ମାଧର୍ମଭିଜ୍ଞ ପକ୍ଷୀମାନଙ୍କର ବିଷୟ ବର୍ଣ୍ଣନା କରିବାକୁ ଯାଇ ଜୈମିନିଙ୍କର ସବୁ ପ୍ରଶ୍ନର ଉତ୍ତରଦେଇ ତାଙ୍କର ଶଙ୍କା ସମାଧାନ କରିଛନ୍ତି । ଏଥିରେ ବଶିଷ୍ଠ ବିଶ୍ୱାମିତ୍ରଙ୍କର କଳହ, ଚଣ୍ଡୀ, ଦୁର୍ଗା କଥା, ଶ୍ରୀକୃଷ୍ଣଙ୍କର ବାଲ୍ୟଲୀଳା, ହରିଶ୍ଚନ୍ଦ୍ର ଉପାଖ୍ୟାନ, ମଦାଳସା ଉପାଖ୍ୟାନ, ରୁଦ୍ରାଦି ସୃଷ୍ଟି,ମାର୍କଣ୍ଡେୟ ଜନ୍ମ, ଇକ୍ଷ୍ୱାକୁ ଚରିତ, ରାମଚନ୍ଦ୍ରଙ୍କର ଉପାଖ୍ୟାନ କୁଶବଂଶ ନିରୂପଣ ପୁରୁରବା ଉପାଖ୍ୟାନ ଯୋଗ ଧର୍ମ ପ୍ରଭୃତି ବର୍ଣ୍ଣନା କରାଯାଇଛି ।

**୮. ଅଗ୍ନିପୁରାଣ**

ସର୍ବପ୍ରଥମେ ଅଗ୍ନିଦେବତାଙ୍କର ମୁଖରୁ ନିର୍ଗତ ବୋଲି ଏହାର ଏପରି ନାମ । ଅଗ୍ନିଦେବଙ୍କର ମୁଖରୁ ନିଃସୃତ ଏହି ପୁରାଣ ମହାମୁନି ବଶିଷ୍ଠଙ୍କୁ ବ୍ରହ୍ମ ଜ୍ଞାନ ଶିକ୍ଷା ଦେବାକୁ ଉଦ୍ଦିଷ୍ଟ । ପ୍ରଧାନତଃ ଶିବ ମାହାତ୍ମ୍ୟ ପ୍ରଚାର ଏହାର ଉଦ୍ଦେଶ୍ୟ ହେଲେ ମଧ୍ୟ ଏଥିରେ ବିବିଧ ବିଷୟରେ ପ୍ରଶ୍ନ ପୂର୍ବକ ଅବତାର କଥା ବ୍ୟାଖ୍ୟା କରାଯାଇଅଛି । ବିଷ୍ଣୁ ପୂଜା ଆଦି

ନିୟମ ଶାଳଗ୍ରାମକ୍ଷଣ ଓ ପୂଜା ତୀର୍ଥ ମାହାତ୍ମ୍ୟ, ଶ୍ରାଦ୍ଧବିଧି, ପ୍ରାୟଶ୍ଚିତ ବିଧି, ଗାୟତ୍ରୀର ଅର୍ଥ ଧର୍ନୁବିଦ୍ୟା ଓ ବ୍ୟବହାର ବିଧି ପଶୁଚିକିତ୍ସା ନାନାବିଧି ପୂଜାବିଧି ଶବ୍ଦାନୁଶାସନ ନରକ ବର୍ଣ୍ଣନ ବ୍ରହ୍ମଜ୍ଞାନ ପ୍ରଭୃତି ବିଷୟ ଏହି ପୁରାଣରେ ଅଂଶୀଭୂତ ।

## ୯. ଭବିଷ୍ୟ ପୁରାଣ

ସୃଷ୍ଟି ପ୍ରକ୍ରିୟା ଚର୍ତୁବର୍ଣ୍ଣର ସଂସ୍କାର, ଆଶ୍ରମ, ଧର୍ମ, ସୂର୍ଯ୍ୟଙ୍କର ମାହାତ୍ମ୍ୟ, ଶ୍ରୀକୃଷ୍ଣ ତାଙ୍କ ପୁତ୍ର ଶାମ୍ବ ବଶିଷ୍ଠ ନାରଦ ବ୍ୟାସଙ୍କର କଥୋପକଥନ ଓ ସୂର୍ଯ୍ୟମହାତ୍ମ୍ୟ ଏଥିରେ ବର୍ଣ୍ଣନା କରାଯାଇଅଛି । ଏଥିରେ ଶ୍ଳୋକ ସଂଖ୍ୟା ଚଉଦ ହଜାର। ଏହି ପୁରାଣ ସୂର୍ଯ୍ୟମନୁଙ୍କୁ ବର୍ଣ୍ଣନା କରିଅଛନ୍ତି ।

## ୧୦. ବ୍ରହ୍ମବୈବର୍ତ୍ତପୁରାଣ

ଏଥିରେ ଶ୍ଳୋକ ସଂଖ୍ୟା ଅଠର ହଜାର । ସାବର୍ଣ୍ଣି ପ୍ରଥମେ ଏହା ନାରଦଙ୍କୁ କହିଥିଲେ । ଏଥିରେ କୃଷ୍ଣ ମାହାତ୍ମ୍ୟ କୁହାଯାଇଅଛି । ଏହା ଚାରିଖଣ୍ଡରେ ବିଭକ୍ତ ଯଥା ବ୍ରହ୍ମ, ପ୍ରକୃତି, ଗଣେଶ ଓ କୃଷ୍ଣଖଣ୍ଡ । ସାବିତ୍ରୀ ସତ୍ୟବାନ, ସୁରଭି, ସ୍ୱାହା ସ୍ୱଧା, ସୁରଥ, କାର୍ତ୍ତବୀର୍ଯ୍ୟ, ପରଶୁରାମ ଆଦି ଉପାଖ୍ୟାନ ଏଥିରେ ବର୍ଣ୍ଣିତ ମାତ୍ର ଅନ୍ୟଦେବତାଙ୍କ ତୁଳନାରେ ଏଥିରେ ଶ୍ରୀକୃଷ୍ଣଙ୍କର ଲୀଳା ଓ ସ୍ତୁତି ବେଶି ଭାବରେ ବୁଝାଯାଇଛି ।

## ୧୧. ଲିଙ୍ଗ ପୁରାଣ :

ଏହି ପୁରାଣରେ ମହେଶ୍ୱର ଅଗ୍ନିଲିଙ୍ଗ ମଧ୍ୟରୁ ଅଗ୍ନିକଳ୍ପାନ୍ତ କାଳରେ ଧର୍ମ, ଅର୍ଥ, କାମ, ମୋକ୍ଷ ବିଷୟକ ତଥ୍ୟ ବ୍ୟକ୍ତ କରିଅଛନ୍ତି । ଏଥିରେ ଥିବା ୧୧ ହଜାର ଶ୍ଳୋକ ଦୁଇ ଭାଗରେ ବିଭକ୍ତ । ଲିଙ୍ଗର ଉତ୍ପତ୍ତି, ଲିଙ୍ଗ ପୂଜା, ଦଧିଚି ଉପାଖ୍ୟାନ, ଯୁଗଧର୍ମ ନିର୍ଣ୍ଣୟ, ଲିଙ୍ଗ ପ୍ରତିଷ୍ଠା, ଶିବବ୍ରତ, ପ୍ରାୟଶ୍ଚିତ, କାଶୀ ବର୍ଣ୍ଣନା ବରାହ ଚରିତ ନୃସିଂହ ଚରିତ, ଶିବସହସ୍ର ନାମ, ଦକ୍ଷଯଜ୍ଞ ବିନାଶ, ମଦନଭସ୍ମ ଶେଷରେ ପାର୍ବତୀଙ୍କ ସହିତ ଶିବଙ୍କର ବିବାହ, ବିନାୟକ ଉପାଖ୍ୟାନ, ଶିବନୃତ୍ୟ, ଉପମନ୍ୟୁ ଉପାଖ୍ୟାନ, ଅମ୍ବରୀଶ ଉପାଖ୍ୟାନ, ଶିବ ମାହାତ୍ମ୍ୟ, ସୂର୍ଯ୍ୟପୂଜା ବିଧି, ଶିବ ପୂଜାବିଧି, ଦାନ ପ୍ରକରଣ ଶ୍ରାଦ୍ଧ ପ୍ରକରଣ ଆଦି ଏହାର ବିଷୟ ବସ୍ତୁ ।

## ୧୨. ବରାହ ପୁରାଣ

ଏହି ପୁରାଣରେ ମାନବକଳ୍ପ ପ୍ରସଙ୍ଗରେ ଭଗବାନ ବିଷ୍ଣୁଙ୍କର ବରାହ ଅବତାର ଧାରଣ ଓ ଏହାର ମାହାତ୍ମ୍ୟ ବର୍ଣ୍ଣନା କରାଯାଇଅଛି । ଏଥିରେ ପ୍ରାୟ ୨୪ ହଜାର ଶ୍ଳୋକ ରହିଛି ଓ ଏହା ଦୁଇ ଭାଗରେ ବିଭକ୍ତ । ପୂର୍ବଭାଗରେ ରମ୍ଭା ଚରିତ, ଶ୍ରାଦ୍ଧ ବିଧି, ଗୌରୀଙ୍କର

ଉତ୍ପତ୍ତି ବ୍ରତ ନିର୍ଣ୍ଣୟ, ମହିଷାସୁର ବଧନିମିତ୍ତ ତ୍ରିଶକ୍ତିଙ୍କ ଦେହରୁ ଦେବୀଙ୍କର ଉତ୍ପତ୍ତି, ଦେବୀ ମାହାତ୍ମ୍ୟ, ବିବିଧ ପ୍ରକାର ଅପରାଧର ପ୍ରାୟଶ୍ଚିତ, କର୍ମବିପାକ ଦିଆଯାଇଥିବା ବେଳେ ଉତ୍ତରଭାଗରେ ପୁଲସ୍ତ୍ୟ - କୁରୁରାଜ ସମ୍ବାଦ ସର୍ବତୀର୍ଥ ମାହାତ୍ମ୍ୟ, ବହୁବିଧ ଧର୍ମଲକ୍ଷଣ ଆଦି ବର୍ଣ୍ଣନା କରାଯାଇଅଛି ।

**୧୩. ସ୍କନ୍ଦ ପୁରାଣ**

ପୂର୍ବକାଳରେ କୈଳାସ ଶିଖରରେ ବ୍ରହ୍ମା ଆଦି ଅନ୍ୟ ଦେବତାମାନଙ୍କ ସମ୍ମୁଖରେ ପିନାକୀ (ଶିବ) ପାର୍ବତୀଙ୍କୁ ସ୍କନ୍ଦ ପୁରାଣ କହିଥିଲେ । ପାର୍ବତୀ ଷଡ଼ାନନ କାର୍ତ୍ତୀକେୟଙ୍କୁ କହିଲେ । କାର୍ତ୍ତୀକେୟ ନନ୍ଦୀଙ୍କ ନିକଟରେ ଓ ନନ୍ଦୀ ଅତ୍ରି କୁମାରଙ୍କୁ କହିଲେ । ଅତ୍ରିକୁମାରଙ୍କଠାରୁ ବ୍ୟାସ ଶୁଣିଲେ ସେ ଏହା ସୂତଙ୍କୁ କହିଥିଲେ । ତେଣୁ ବ୍ୟାସ ଏହାର କର୍ତ୍ତା । ବ୍ୟାସଦେବ ସାତଖଣ୍ଡର ବିଭକ୍ତ କରି ଏଥିରେ ଆଠଲକ୍ଷ ଅଣାନବେ ହଜାର ଶ୍ଳୋକ ରଖିଥିଲେ । ଆଦି ଭାଗରେ ସ୍କନ୍ଦ ମାହାତ୍ମ୍ୟ ଯୁକ୍ତ ମାହେଶ୍ୱର ଖଣ୍ଡ ୨ୟରେ ବୈଷ୍ଣବଖଣ୍ଡ ୩ୟରେ ସଂକ୍ଷେପରେ ସୃଷ୍ଟି ବର୍ଣ୍ଣନା ସୂଚକ ବ୍ରହ୍ମଖଣ୍ଡ, ୪ର୍ଥରେ କାଶୀ ମାହାତ୍ମ୍ୟ ଯୁକ୍ତ କାଶୀଖଣ୍ଡ, ୫ମରେ ଉଜ୍ଜୟିନୀ କଥାଯୁକ୍ତ ରେବାଖଣ୍ଡ, ଷଷ୍ଠରେ କଳ୍ପ ପୂଜା ବିଶ୍ୱକଥା ଓ ତାପ୍ତୀ ମାହାତ୍ମ୍ୟକୁ ନେଇ ତାପ୍ତୀ ଖଣ୍ଡ ଓ ପ୍ରଭାସର କଥାଯୁକ୍ତ ପ୍ରଭାସଖଣ୍ଡ ଶେଷ ସପ୍ତମ ଖଣ୍ଡ । ବୈଷ୍ଣବଖଣ୍ଡରେ ପୁରୁଷୋତ୍ତମ ମାହାତ୍ମ୍ୟ କୀର୍ତ୍ତିତ ଓ ଏହା ଉତ୍କଳଖଣ୍ଡ ନାମରେ ସୁପରିଚିତ । ଆଗ୍ରହୀ ଓଡ଼ିଆ ପାଠକମାନଙ୍କ ଉତ୍କଣ୍ଠା ନିବାରଣ ନିମିତ୍ତ ଏଥିରେ ପଞ୍ଚାବନ ଅଧ୍ୟାୟର ବିଷୟବସ୍ତୁ ନିମ୍ନରେ ଦିଆଗଲା ।

୧. ଜୈମିନି ଆଦି ମୁନିମାନଙ୍କର ସମ୍ବାଦରେ ଜଗନ୍ନାଥ ପ୍ରସଙ୍ଗ, ବ୍ରହ୍ମା ବିଷ୍ଣୁ ସମ୍ବାଦ, ସାଗରର ଉତ୍ତର ଓ ମହାନଦୀର ଦକ୍ଷିଣରେ ଭଗବତ୍ କ୍ଷେତ୍ର ନିର୍ଣ୍ଣୟ ।

୨. ନୀଳମାଧବ ବ୍ୟାଖ୍ୟାନ, ଯମକର୍ତ୍ତୃକ ନୀଳମାଧବ ସ୍ତବ ।

୩. ମାର୍କଣ୍ଡେୟ ଆଖ୍ୟାନ ।

୪. ଯମେଶ୍ୱର ନୀଳକଣ୍ଠ ଆଖ୍ୟାନ, ବିମଳା ନୃସିଂହ ଅଷ୍ଟଶକ୍ତି ଓ ଅଷ୍ଟ ଲିଙ୍ଗ ମାହାତ୍ମ୍ୟ, ଇନ୍ଦ୍ରଦ୍ୟୁମ୍ନଙ୍କର ନୀଳାଚଳ ମାହାତ୍ମ୍ୟ ଶ୍ରବଣ ଓ ଏହି ସ୍ଥାନକୁ ବ୍ରାହ୍ମଣ ପ୍ରେରଣ ।

୫. ବ୍ରାହ୍ମଣ କ୍ଷତ୍ରୀୟଙ୍କର ନୀଳାଚଳ ଦର୍ଶନ, ପୁଣ୍ଡରୀକ କର୍ତ୍ତୃକ ପୁରୁଷୋତ୍ତମ ସ୍ତୋତ୍ର, ଅମ୍ବରିଷ କର୍ତ୍ତୃକ ସ୍ତବ, ଭଗବାନଙ୍କର ବିଭୂତି ଦର୍ଶନ ।

୬. ଉତ୍କଳ ପ୍ରଶଂସା

୭. ଇନ୍ଦ୍ରଦ୍ୟୁମ୍ନଙ୍କର ଆଖ୍ୟାନ ଆରମ୍ଭ, ନୀଳଗିରିର ମାହାତ୍ମ୍ୟ ଶୁଣି ନିଜ ପୁରୋହିତ ପ୍ରେରଣ, ବିଶ୍ୱାବସୁ ଶବର ଓ ପୁରୋହିତ ସମ୍ବାଦ ।

୮. ଶିବଦ୍ୱାର ରୋହିଣି ଆଦି ତିର୍ଥ ପ୍ରଦର୍ଶନ ପୁରୋହିତଙ୍କର ଅବନ୍ତୀପୁରରେ ଇନ୍ଦ୍ରଦ୍ୟୁମ୍ନଙ୍କ ନିକଟ ଗମନ ।

୯. ପୁରୋହିତ ଦ୍ୱାରା ନୀଳମାଧବଙ୍କ ବର୍ଣ୍ଣନ ଇନ୍ଦ୍ରଦ୍ୟୁମ୍ନଙ୍କର ନୀଳମାଧବ ଆଦିଙ୍କ ସ୍ତବ ବିଦ୍ୟାପତିଙ୍କ ଦ୍ୱାରା ନୀଳମାଧବଙ୍କ ରୂପ ବର୍ଣ୍ଣନ ।

୧୦. ବିଦ୍ୟାପତିଙ୍କ ଦ୍ୱାରା କ୍ଷେତ୍ର ଓ ଦେବତାଙ୍କର ମାନ କଥନ, ଇନ୍ଦ୍ରଦ୍ୟୁମ୍ନ ନାରଦ ସଂବାଦ, ନାରଦଙ୍କର ବିଷ୍ଣୁଭକ୍ତି କଥନ ।

୧୧. ନାରଦଙ୍କ ସହିତ ଇନ୍ଦ୍ରଦ୍ୟୁମ୍ନଙ୍କର ନୀଳାଚଳ ଯାତ୍ରା, ପ୍ରସଙ୍ଗ, ନୀଳାଚଳ ଆସି ଉତ୍କଳ ଅଧିପତିଙ୍କର ସହିତ ସଂଭାଷଣ ।

୧୨. ନାରଦଙ୍କର ଏକାମ୍ର କାନନ ମାହାତ୍ମ୍ୟ କଥନ ।

୧୩. ଇନ୍ଦ୍ରଦ୍ୟୁମ୍ନ ଓ ନାରଦଙ୍କର ଏକାମ୍ର ବନକୁ ଆଗମନ ବିନ୍ଦୁତିର୍ଥ ଓ ଲିଙ୍ଗ ଆଦି ଦର୍ଶନ ।

୧୪. କପୋତେଶ୍ୱର ସ୍ଥଳୀ ଓ ବିଲ୍ୱେଶ ମାହାତ୍ମ୍ୟ ।

୧୫. ବିଦ୍ୟାପତି ଦ୍ୱାରା ନୀଳମାଧବଙ୍କର ଅନ୍ତର୍ଦ୍ଧ୍ୟାନ ଶୁଣି ଇନ୍ଦ୍ରଦ୍ୟୁମ୍ନଙ୍କର ମୋହ, ନାରଦଙ୍କର ଆଶ୍ୱାସନା ଶ୍ୱେତଦ୍ୱୀପରୁ ନାରଦଙ୍କର ମୂର୍ତ୍ତି ଆଣିବା ପ୍ରସଙ୍ଗ ।

୧୬. ଇନ୍ଦ୍ରଦ୍ୟୁମ୍ନ କୃତ ପୁରୁଷୋତ୍ତମ ସ୍ତବ ।

୧୭. ରାଜା ଅଭିପ୍ରାୟରୁ ବିଶ୍ୱକର୍ମା କର୍ତ୍ତୃକ ନରସିଂହ ପ୍ରାସାଦ ନିର୍ମାଣ, ଇନ୍ଦ୍ରଦ୍ୟୁମ୍ନଙ୍କର ନରସିଂହ ସ୍ତବ ଓ ନରସିଂହ କ୍ଷେତ୍ର ମାହାତ୍ମ୍ୟ ।

୧୮. ଇନ୍ଦ୍ରଦ୍ୟୁମ୍ନଙ୍କର ଅଶ୍ୱମେଧ, ସହସ୍ର ଅଶ୍ୱମେଧର ଅନ୍ତରେ ଧ୍ୟାନରେ ଇନ୍ଦ୍ରଦ୍ୟୁମ୍ନଙ୍କର ପୁରୁଷୋତ୍ତମାଦି ମୂର୍ତ୍ତି ଦର୍ଶନ ଓ ସ୍ତୋତ୍ର ।

୧୯. ସମୁଦ୍ର ତଟରେ ମହାବୃକ୍ଷ ଦର୍ଶନ କରି ରାଜାଙ୍କୁ ସେବକଙ୍କର ନିବେଦନ, ନାରଦଙ୍କର ଶ୍ୱେତଦ୍ୱୀପର ବିଷ୍ଣୁଙ୍କର ବୃକ୍ଷୋତ୍ପତ୍ତି କଥନ, ଇନ୍ଦ୍ରଦ୍ୟୁମ୍ନଙ୍କର ଚତୁର୍ଭୁଜରୂପୀ ବୃକ୍ଷ ଦର୍ଶନ, ମହୋତ୍ସବ ପୂର୍ବକ ସ୍ଥାପନ, ବୃଦ୍ଧ ବ୍ରାହ୍ମଣ ବେଶରେ ବିଷ୍ଣୁଙ୍କର ମୂର୍ତ୍ତି ନିର୍ମାଣ ନିମିତ୍ତ ଆଗମନ । ଜଗନ୍ନାଥ ବଳଭଦ୍ର ସୁଭଦ୍ରା ଓ ସୁଦର୍ଶନ ମୂର୍ତ୍ତିଙ୍କର ବର୍ଣ୍ଣନ ।

୨୦. ଇନ୍ଦ୍ରଦ୍ୟୁମ୍ନ କୃତ ସ୍ତବ, ନାରଦଙ୍କ ଉପଦେଶ ଅନୁସାରେ ଇନ୍ଦ୍ରଦ୍ୟୁମ୍ନଙ୍କର ବାସୁଦେବ ବଳଭଦ୍ର ଓ ସୁଭଦ୍ରାଙ୍କର ପୂଜା ।

୨୧. ନାରଦଙ୍କ ଦ୍ୱାରା ତାରକ ବ୍ରହ୍ମଙ୍କର ଅପୌରୁଷେୟ ମୂର୍ତ୍ତୀ ଓ ଶ୍ରୁତି ପ୍ରମାଣତା କଥନ, ଇନ୍ଦ୍ରଦ୍ୟୁମ୍ନ ଦ୍ୱାରା ଜଗନ୍ନାଥଙ୍କର ପ୍ରାସାଦ ନିର୍ମାଣ ଓ ପ୍ରତିଷ୍ଠା କରିବା ନିମିତ୍ତ ବ୍ରହ୍ମଲୋକକୁ ଯିବାର ଉଦ୍ୟମ ।

୨୨. ଇନ୍ଦ୍ରଦ୍ୟୁମ୍ନଙ୍କର ବ୍ରହ୍ମଲୋକକୁ ଯାତ୍ରା ।

୨୩. ନାରଦଙ୍କ ସହିତ ଇନ୍ଦ୍ରଦ୍ୟୁମ୍ନଙ୍କର ବ୍ରହ୍ମ ଦର୍ଶନ ଓ ଦାରୁବ୍ରହ୍ମ ପ୍ରତିଷ୍ଠା କରିବା ନିମିତ୍ତ ରାଜାଙ୍କୁ ନିବେଦନ, ଦେବଗଣ କର୍ତ୍ତୃକ ବ୍ରହ୍ମାଙ୍କ ନିକଟରେ ନୀଳମାଧବଙ୍କର ଦାରୁବ୍ରହ୍ମ ସ୍ୱରୂପର କାରଣ ଜିଜ୍ଞାସା ।

୨୪. ଦେବଗଣ-ଇନ୍ଦ୍ରଦ୍ୟୁମ୍ନ ସମ୍ବାଦ ।

୨୫. ତିନି ରଥର ନିର୍ମାଣ, ବିଭିନ୍ନ ରଥ ଲକ୍ଷଣ, ରଥ ପ୍ରତିଷ୍ଠା ବିଧି ।

୨୬. ଗାଲ ନାମକ ରାଜା ତାଙ୍କ ଦ୍ୱାରା ମାଧବଙ୍କର ପ୍ରସ୍ତରମୟ ପ୍ରାସାଦ ନିର୍ମାଣ କଥନ ଗାଲ ଓ ଇନ୍ଦ୍ରଦ୍ୟୁମ୍ନଙ୍କର ସଂଭାଷଣ ।

୨୭. ବାସୁଦେବ ଆଦିଙ୍କର ରଥଯାତ୍ରା ଓ ତିନି ମୂର୍ତ୍ତିଙ୍କର ସ୍ତବ ଭରଦ୍ୱାଜଙ୍କ ଦ୍ୱାରା ପ୍ରାସାଦରେ ଦେବ ପ୍ରତିଷ୍ଠା ।

୨୮. ବ୍ରହ୍ମାଙ୍କ ଦ୍ୱାରା ନୃସିଂହ ସ୍ତୋତ୍ର, ନୃସିଂହ ପ୍ରଶଂସା ।

୨୯. ଦାରୁବ୍ରହ୍ମ କର୍ତ୍ତୃକ ନୀଳାଚଳ କ୍ଷେତ୍ରରେ ଅବସ୍ଥାନ କାଳ ଗୁଣ୍ଡିଚା ଆଦି ମହାଯାତ୍ରା କଥନ ।

୩୦. ଭଗବାନଙ୍କର ଜ୍ୟେଷ୍ଠ ସ୍ନାନ ବିଧି ।

୩୧. ନରସିଂହ ସ୍ନାନ ବିଧି, ସ୍ନାନ ଯାତ୍ରା ଫଳ ।

୩୨. ଦକ୍ଷିଣା ମୂର୍ତ୍ତି ବିଧି ।

୩୩. ବିଭିନ୍ନ ରଥ ପ୍ରତିଷ୍ଠା ବିଧି ।

୩୪. ଅଶ୍ୱମେଧ ମାହାତ୍ମ୍ୟ ମହାବେଦୀ ମାହାତ୍ମ୍ୟ ।

୩୫. ରଥ ରକ୍ଷା ବିଧି ।

୩୬. ଶୟନୋତ୍ସବ, ଦକ୍ଷିଣାୟନ ବିଧି, ଶ୍ୱେତରାଜା ଉପାଖ୍ୟାନ ।

୩୭. ଭଗବାନଙ୍କର ନିର୍ମାଲ୍ୟର ମାହାତ୍ମ୍ୟ ।

୩୮. ଯୁଗଧର୍ମ ।

୩୯. ଯାତ୍ରାନ୍ତର ଫଳ ନିର୍ଣ୍ଣୟ ।

୪୦. ପ୍ରାବରଣ ଉତ୍ସବ ଉତ୍ତରାୟଣ ଉତ୍ସବ ।

୪୧. ବୈଷ୍ଣବ ଅଗ୍ନି ସଂସ୍କାର ବିଧି ।

୪୨. ଦୋଳାରୋହଣ ବିଧି ।

୪୩. ସାମ୍ବତ୍ସର ବ୍ରତ କଥନ ।

୪୪. ଦମନ ଭଞ୍ଜିକା ଅକ୍ଷୟ ଯାତ୍ରା, ଦକ୍ଷା ଖ୍ୟାନ, ଜଗକୃତ ଜଗନ୍ନାଥ ସ୍ତବ ।

୪୫. ଭଗବାନଙ୍କର ଭୂତି ଓ ମହାଭୂତିର ଉପାୟ ନିର୍ଣ୍ଣୟ ।

୪୬. କ୍ଷେତ୍ର ମାହାତ୍ମ୍ୟ ।

୪୭. ମୋକ୍ଷ ସ୍ୱରୂପ ନିର୍ଣ୍ଣୟ ।

୪୮. ମୁକ୍ତି ଦ୍ୱାରା ମାହାତ୍ମ୍ୟ ।

୪୯. ଦୁର୍ବାସାଙ୍କର କ୍ଷେତ୍ରକୁ ଆଗମନ ।

୫୦. ଦୁର୍ବାସାଙ୍କର ବିସ୍ମୟ ।

୫୧. ନାମ ଓ ସ୍ନାନ ମାହାତ୍ମ୍ୟ ।

୫୨. ମହାମାଘୀ ସ୍ନାନ ବିଧି ।

୫୩. ମହାମାଘୀ ସ୍ନାନ ମହାତ୍ମ୍ୟ ।

୫୪. କର୍ତ୍ତୃ ନାମକ ମୁନିଙ୍କ କଥା, ମହାଦେବ କଥିତ ଅର୍ଦ୍ଧୋଦୟ ଓ ମହାଦାନ ମାହାତ୍ମ୍ୟ ।

୫୫. ସ୍କନ୍ଦ- ମହାଦେବ ସମ୍ବାଦରେ ଦଶାବତାର ମାହାତ୍ମ୍ୟ । ଇନ୍ଦ୍ର ଆଦିଙ୍କର ଅବତାର କଥା ।

(ଉପରୋକ୍ତ ଗ୍ରନ୍ଥ ସୂଚୀ- ବିଦ୍ୟାବାରିଧି ପଣ୍ଡିତ ଜ୍ୱାଲା ପ୍ରସାଦ ମିଶ୍ରଙ୍କର ଅଷ୍ଟାଦଶ ପୁରାଣ ଦର୍ପଣ ଗ୍ରନ୍ଥରୁ ଉଦ୍ଧୃତ) ।

**୧୪. ବାମନ ପୁରାଣ**

ଦଶହଜାର ଶ୍ଳୋକ ବିଶିଷ୍ଟ ଏହି ପୁରାଣରେ ବାମନ ମୂର୍ତ୍ତିଧାରୀ ବିଷ୍ଣୁଙ୍କର ଛଳନାରେ ଦାନ ଗ୍ରହଣ, ଦାନ ମାହାତ୍ମ୍ୟ, ଦେବ ଦାନବ ଯୁଦ୍ଧ, ମହିଷାସୁର ବଧ, ଦକ୍ଷଯଜ୍ଞ, ମଦନଭସ୍ମ,

ଶିବଙ୍କର ଉମାଙ୍କ ସହିତ ବିବାହ, କୁମାରଙ୍କ ଜନ୍ମ ସହିତ ବହୁ ତୀର୍ଥର ବର୍ଣ୍ଣନା କୁହାଯାଇଅଛି । ତୀର୍ଥ ମହାତ୍ମ୍ୟ ବର୍ଣ୍ଣନ ପୁରାଣର ମୁଖ୍ୟ ଉଦ୍ଦେଶ୍ୟ ବୋଲି ଜଣାଯାଏ ।

### ୧୫. କୂର୍ମ ପୁରାଣ

ଏହି ପୁରାଣରେ ବିଷ୍ଣୁ କୂର୍ମ ରୂପ ଧାରଣ କରି ଧର୍ମ, ଅର୍ଥ, କାମ ଓ ମୋକ୍ଷର ମାହାତ୍ମ୍ୟ ପୃଥକ ପୃଥକ ଭାବରେ ବର୍ଣ୍ଣନା କରିଅଛନ୍ତି । ଏଥିରେ ଭୃଗୁବଂଶ ଚରିତ, କାଳ ପରିମାଣ, ପାର୍ବତୀଙ୍କର ସହସ୍ରନାମ, ବ୍ୟାସ ଗୀତା, ଈଶ୍ୱରଗୀତା, ତୀର୍ଥ ମାହାତ୍ମ୍ୟ ବର୍ଣ୍ଣାଚାର ପ୍ରଭୃତି ସହିତ ଜାତି ଶଙ୍କର ବିଷୟ ମଧ୍ୟ ବିଶଦଭାବରେ ଆଲୋଚନା କରାଯାଇଛି । ଶ୍ଲୋକ ସଂଖ୍ୟା ଆଠ ହଜାର ଏଥିରେ ଇନ୍ଦ୍ରଦ୍ୟୁମ୍ନ କାହାଣୀ ମଧ୍ୟ ଅଛି ।

### ୧୬. ମତ୍ସ୍ୟପୁରାଣ

ଏହା ଷୋଳହଜାର ଶ୍ଲୋକ ବିଶିଷ୍ଟ । ଭଗବାନ ବିଷ୍ଣୁ ମୀନ ଅବତାର ଧାରଣ କରି ମନୁଙ୍କୁ ସୃଷ୍ଟିପ୍ରକ୍ରିୟା, ରାଜବଂଶବର୍ଣ୍ଣନା, ନର୍ମଦା ମାହାତ୍ମ୍ୟ, ଧର୍ମ ନୀତି, ମନ୍ଦିର ଓ ପ୍ରତିମା ନିର୍ମାଣ ଆଦି କଥା ପ୍ରଧାନ ବିଷୟ ଭାବରେ ବର୍ଣ୍ଣନା କରିଅଛନ୍ତି ।

### ୧୭. ଗରୁଡପୁରାଣ

ଏହି ପୁରାଣରେ ଗରୁଡ କଳ୍ପରେ ବିଷ୍ଣୁ, ଗରୁଡର ବିନତା ଗର୍ଭରେ ଉତ୍ପତ୍ତି ସବିସ୍ତାର ବର୍ଣ୍ଣନା କରିଛନ୍ତି । ଏହା ଦୁଇ ଖଣ୍ଡରେ ବିଭକ୍ତ - ପୂର୍ବଖଣ୍ଡ, ଉତ୍ତର ଖଣ୍ଡ । ପୂର୍ବଖଣ୍ଡରେ ବିଷ୍ଣୁଙ୍କର ସହସ୍ରନାମ, ବିବିଧ ପୂଜାବିଧି, ଦିକ୍ଷାବିଧି, ଆର୍ଯ୍ୟୁର୍ବେଦ, ପ୍ରାୟଶ୍ଚିତ ବିଧି ପ୍ରଭୃତି ଦିଆଯାଇଥିବା ବେଳେ ଉତ୍ତର ଖଣ୍ଡରେ ଅନ୍ତ୍ୟେଷ୍ଟି କ୍ରିୟା, ଯମପୁରୀ ବର୍ଣ୍ଣନା ଶ୍ରାଦ୍ଧ ବିଧି ପ୍ରେତତ୍ୱର କାରଣ, ମୃତ୍ୟୁର ପୂର୍ବାପର ବିଷୟ ପ୍ରଭୃତି ବୁଝାଯାଇଅଛି । ଏଥିରେ ୧୬ ହଜାର ଶ୍ଲୋକ ଅଛି । ଜ୍ୟୋତିର୍ବିଦ୍ୟା ବ୍ୟାକରଣ ମଧ୍ୟ ଅଛି ।

### ୧୮. ବ୍ରହ୍ମାଣ୍ଡ ପୁରାଣ

ବାରହଜାର ଶ୍ଲୋକ ବିଶିଷ୍ଟ ଏହି ପୁରାଣ ପ୍ରକ୍ରିୟା ପାଦ, ଅନୁଷଙ୍ଗ ପାଦ ଉପାଦଘାତ ଓ ଉପସଂହାର ପାଦନାମରେ ଚାରି ପାଦରେ ବିଭକ୍ତ ହୋଇଛି । ଏଥିରେ ସୃଷ୍ଟି, କଳ୍ପ, ଯୁଗଭେଦ, ମନ୍ୱନ୍ତର, ରାଜବଂଶ, ବର୍ଷ ଭାରତବର୍ଷ ଓ ଦ୍ୱୀପ ଆଦିର ବର୍ଣ୍ଣନା ଦିଆଯାଇଛି । ପୁରାଣ ବର୍ଣ୍ଣନା ଅନୁସାରେ କୁହାଯାଇଛି ମନୁଷ୍ୟମାନଙ୍କର ୪୩୨ କୋଟି ବର୍ଷରେ ବ୍ରହ୍ମାଙ୍କର ଏକ ଅହୋରାତ୍ର ହୁଏ ମତାନ୍ତରେ ୪୩୨ କୋଟି ବର୍ଷରେ ବ୍ରହ୍ମାଙ୍କର ଏକ ଦିନ । ବ୍ରହ୍ମାଣ୍ଡର ମାହାତ୍ମ୍ୟ ଅର୍ଥାତ୍ ବିଶ୍ୱଜଗତରେ ଉତ୍ପତ୍ତି ଏଥିରେ ମୁଖ୍ୟ ବର୍ଣ୍ଣନା । ମତାନ୍ତରେ ୪୩୨ କୋଟି ବର୍ଷରେ ବ୍ରହ୍ମାଙ୍କର ଏକ ଦିନ । ଏହି ପରିମାଣ କାଳରେ

ବ୍ରହ୍ମାଙ୍କର ଏକ ରାତ୍ରି ହୁଏ । ଦିନରେ ବ୍ରହ୍ମାଣ୍ଡ ସୃଷ୍ଟି ହୁଏ ଓ ରାତ୍ରକାଳରେ ତାହା ଲୟ ପ୍ରାପ୍ତ ହୁଏ । ଏହି ସୃଷ୍ଟି ଲୟ ପ୍ରକ୍ରିୟାକୁ କଳ୍ପ କୁହାଯାଇଛି । ଏକ ସପ୍ତତି (ସତୁରୀ) ଦେବଯୁଗରେ ଏକ ମନ୍ୱନ୍ତର ଓ ୧୪ ମନ୍ୱନ୍ତରରେ ଏକ କଳ୍ପ । ଏହି କଳ୍ପ ବିଧାତାଙ୍କର ଏକ ଦିନ ।

ପୁରାଣ ରଚନା କାଳ ବିଚାରରେ କେତେକ ଗବେଷକ ବର୍ତ୍ତମାନ ପ୍ରଚଳିତ ପୁରାଣର ସଂକଳନ ଗୁପ୍ତଯୁଗ ବା ତାହାପରେ ବୋଲି ମତ ଦିଅନ୍ତି । ତେବେ ପୁରୁଷାନୁକ୍ରମେ ଶତାବ୍ଦୀ ପରେ ଶତାବ୍ଦୀ ସ୍ମୃତିରେ ଓ ଲୋକମୁଖରେ ବର୍ଣ୍ଣିତ ଘଟଣାମାନ ପରସ୍ପର ଅଜ୍ଞାତ ସାରରେ କିଛି ଓଲଟପାଲଟ ହୋଇ ଯାଇଥିବା ଅସ୍ୱଭାବିକ ନୁହେଁ । ପ୍ରାଚୀନ କାଳରୁ ମହାଭାରତୀୟ ଯୁଗ ପର୍ଯ୍ୟନ୍ତ ଏହି ବିରାଟ ଭୂଖଣ୍ଡର ସଭ୍ୟତା ଓ ସଂସ୍କୃତିର ବିବର୍ତ୍ତନ, ଇତିହାସ ଓ ଅନ୍ୟାନ୍ୟ ତଥ୍ୟ ଜାଣିବାକୁ, ମଧ୍ୟଯୁଗର ନୈତିକ ଆଧାତ୍ମିକ ଲୋକଶିକ୍ଷାର ପରିପ୍ରଚାର ନିମିତ୍ତ ପୁରାଣ ବିରାଟ ଅବଲମ୍ବନ ଏହା ନିଃସନ୍ଦେହରେ ସ୍ୱୀକାର କରିହେବ । ପୁରାଣରେ ଯେଉଁ ସମସ୍ତ ତୀର୍ଥ ନଦନଦୀ, ଅରଣ୍ୟ, ଜନପଦର ବର୍ଣ୍ଣନା ରହିଛି ତାହା ବର୍ତ୍ତମାନ ମଧ ଭିନ୍ନ ନାମରେ ଦେଖାଯାଏ । କାଳର ବ୍ୟବଧାନରେ ପରିବର୍ତ୍ତନ ଅବଶ୍ୟମ୍ଭାବୀ ହୋଇ ପଡିଛି । ଇତିହାସରେ ଏହା ଘଟୁଛି । ପୁରାଣରେ ଘଟିବା ସ୍ୱାଭାବିକ । ଯାନ୍ତ୍ରୀକ ସଭ୍ୟତାର ବିବରଣ ପୁରାଣରେ ଦିଆଯାଇଛି । ବିଭିନ୍ନ ଅଦ୍‌ଭୂତ ଔଷଧ, ସୂକ୍ଷ୍ମ ଯନ୍ତ୍ର, ଅସ୍ତ୍ରଶସ୍ତ୍ର, ଯାନବାହନକୁ ପ୍ରକୃତ ବସ୍ତୁ ବୋଲି ନ ଧରିଲେ ମଧ ହଜାର ହଜାର ବର୍ଷ ତଳର କଳ୍ପନା ଶକ୍ତି ଦୂରଦୃଷ୍ଟି ଓ ନୈତିକ ଆଧାତ୍ମିକ ଦିଗକୁ ଅତିମାନବୀୟ ଭାବରେ ଗ୍ରହଣ କରିବାକୁ ହେବ ।




ସହାୟକ ଗ୍ରନ୍ଥ

୧. ପୌରାଣିକ ଅଭିଧାନ (୧୯୮୫) (ବଙ୍ଗଳା)
 - ସୁଧୀର ଚନ୍ଦ୍ର ସରକାର ସଂକଳିତ ।

୨. ଅଷ୍ଟାଦଶ ପୁରାଣ ଦର୍ପଣ ୧୯୯୫ (ହିନ୍ଦି)
 - ଜ୍ୱାଲା ପ୍ରସାଦ ମିଶ୍ର ।

# ପୂଜ୍ୟ ବାୟାବାବାଙ୍କ ସାନ୍ନିଧରେ

୧୯୭୦ ମସିହା ଡିସେମ୍ବର ମାସ । କାମାକ୍ଷାନଗରରୁ ବଦଳି ହୋଇ କେନ୍ଦ୍ରାପଡ଼ାରେ ଅବସ୍ଥାପିତ । ମୋର ଜନ୍ମ ଗ୍ରାମରୁ କେନ୍ଦ୍ରାପଡ଼ା ତଳ ବାଟେ ଅତି ନିକଟ । ତଥାପି ବଳଦେବ ଜୀଉଙ୍କର ଦର୍ଶନ ଆଗରୁ ଭାଗ୍ୟରେ ଘଟି ନ ଥାଏ । ବିଖ୍ୟାତ ଦେୱାନୀ ଓକିଲ କୁଞ୍ଜବାବୁଙ୍କ ସାଙ୍ଗରେ ଆଗରୁ ପରିଚୟ ଥାଏ । ମୋର ଆଗରୁ ବୈଷ୍ଣବ ବିରୋଧୀ ମନୋଭାବ କୁଞ୍ଜବାବୁଙ୍କୁ ଅଛପା ନ ଥାଏ । ସେମାନଙ୍କର ଉଚ୍ଚାରଣ ଓ ଆଚରଣ ମଧ୍ୟରେ ଗଭୀର ପାର୍ଥକ୍ୟକୁ ମୁଁ ଖୋଲା ସମାଲୋଚନା କରୁଥାଏ । କୁଞ୍ଜବାବୁ ମତେ ନେଇଗଲେ ନୃସିଂହ ଟିକିରି ମଠରେ ବାୟା ବାବାଙ୍କ ବସିବା ଜାଗାକୁ । ବହୁତ ଲୋକ ସମାଗମ । ସମାଜର ବିଭିନ୍ନ ଶ୍ରେଣୀର ବିଭିନ୍ନ ବର୍ଗର ବୟସ ଓ ବ୍ୟବସାୟ ରୁଚିର ନାରୀ ପୁରୁଷମାନଙ୍କ ସମାବେଶ । ପାନ ପ୍ରସାଦ ମିଳିଗଲା । ପାନ ନ ଖାଇବା ଅଭ୍ୟାସ ଥିଲେ ମଧ୍ୟ ପ୍ରସାଦ ଜ୍ଞାନରେ ଖାଇଲି । ୰ରାଜ କିଶୋର ଦାସଙ୍କ ସଂପାଦିତ ଭାଗବତ ଏକାଦଶ ସ୍କନ୍ଧର ୧୨ଶ ଅଧ୍ୟାୟ ପାଠ ଚାଲୁଥାଏ ।

ସାଧୁଙ୍କ ତିରିଶ ଲକ୍ଷଣ — ଉଦ୍ଧବ ସାବଧାନେ ଶୁଣ
ସମଦରଶୀ ସତ୍ୟସାର — ଶୁଦ୍ଧ ବିବେକ ମତି ଯାର
ଦ୍ରୋହ ବର୍ଜିତ ଶାନ୍ତିପର — ତ୍ୟାଗ ସ୍ୱଭାବ ମହାଧୀର
କୃପାଳୁ ସର୍ବ ଲୋକହିତ — ଶୁଚି ଦରିଦ୍ର ଦୃଢ଼ବ୍ରତ
ଅଳ୍ପ ଭୋଜନ ଧର୍ମେସ୍ଥିର — ମୃଦୁ ପ୍ରସନ୍ନ ଧୃତିଶୀଳ
ସୁକଲ୍ୟ, ଅମାନୀ, ମାନଦ — କବି ମଇତ୍ର ଶୁଦ୍ଧବୋଧ
ଜିତ ଷଡ଼ଗୁଣ ଅପ୍ରମାଦୀ — ଗଭୀର ଚିତ୍ତ ଧୀର ବୁଦ୍ଧି
ଏ ଆଦି ସପ୍ତବିଂଶ ଗୁଣ — ବିଶେଷେ ମୋହର ଶରଣ
ଏତେ ଲକ୍ଷଣ ଲକ୍ଷି ଯହିଁ — ନିଶ୍ଚୟ ବୈଷ୍ଣବଟି ସେହି । ୨୮-୩୦

ମୋର ଅଭିଯୋଗ ଥାଏ ଚୈତନ୍ୟ ପନ୍ଥୀ ବୈଷ୍ଣବ ମାନେ ସଂକୀର୍ଣ୍ଣମନା । କେବଳ ଭଗବାନ ଶ୍ରୀକୃଷ୍ଣଙ୍କ ବ୍ୟତୀତ ଅନ୍ୟ ଦେବ ଦେବୀଙ୍କର ପୂଜା ବା ଚରିତ ଆଲୋଚନାର ବିରୋଧ କରିଥାନ୍ତି ଯଦିଚ ଆମ ସଂସ୍କୃତିରେ ପଞ୍ଚ ଦେବତାଙ୍କର ପୂଜା ଆରଧନାର ବ୍ୟବସ୍ଥା ଅଛି ଓ ଆମ୍ଭେମାନେ ପରିବାରରେ ବର୍ଷର ବିଭିନ୍ନ ସମୟରେ ବିଭିନ୍ନ ଦେବଦେବୀଙ୍କର ପୂଜା କରିଥାଉ ।

ଦେବତା ଯେ ଭଗବାନଙ୍କର ଗୋଟିଏ ଗୋଟିଏ ରୂପ ଏ ମତ ବୈଦିକ କାଳରୁ ଏ ଦେଶରେ ଚଳିଆସୁଛି । "ଏକ ସଦ୍ବିପ୍ରା ବହୁଧା ବଦନ୍ତ୍ୟଗ୍ନିଂ ଯମଃ ମାତରିଶ୍ୱାନ ମାହୁଃ" ?

ପରମେଶ୍ୱର ଏକ କିନ୍ତୁ ବ୍ରାହ୍ମଣମାନେ ତାଙ୍କୁ ଅଗ୍ନି ଯମ ମାତରିଶ୍ୱା ବା ବାୟୁ ବୋଲି କୁହନ୍ତି । ପୁଣି ଗୀତାର ଦଶମ ଅଧ୍ୟାୟରେ ବିଭୂତି ଯୋଗ ବର୍ଣ୍ଣନାରେ ଏହା ସ୍ପଷ୍ଟ ଭାବରେ ବ୍ୟାଖ୍ୟା ହୋଇଛି । ମହାଭାରତ ଶାନ୍ତି ପର୍ବରେ ମଧ୍ୟ ଅଛି । ଯେଉଁମାନେ ପିତୃଗଣ ଦେବଗଣ ଗୁରୁ ଅତିଥି ଗୋ ବ୍ରାହ୍ମଣ ପୃଥିବୀ ପ୍ରଭୃତିଙ୍କୁ କର୍ମ ମନ ଓ ବଚନରେ ସେବା କରନ୍ତି ସେମାନେ ବିଷ୍ଣୁଙ୍କର ହିଁ ପୂଜା କରିଥାଆନ୍ତି । ଏସବୁ ସ୍ଥଳରେ ଭକ୍ତି ହିଁ ମୁଖ୍ୟ, ଦେବତା ରୂପ ପ୍ରତୀକ - ଗୌଣ । ଏପରି ଅବସ୍ଥାରେ ବୈଷ୍ଣବ ଗାଣପତ୍ୟ ଶାକ୍ତ ପ୍ରଭୃତିଙ୍କ ମଧ୍ୟରେ ପରସ୍ପର ମତାନ୍ତର ଓ ବିବାଦ ଦୁର୍ଭାଗ୍ୟଜନକ ଓ ଅଶୋଭନୀୟ । କାଳକ୍ରମେ ଏ ସବୁ ମତାମତ ସେଠାରେ ଆଲୋଚନା ହେଉଥିବା ଦେଖିଲି ।

ସେହିଦିନୁ ସମୟ ପାଇଲେ ମୁଁ ନୃସିଂହ ଟିକିର ଓ ପରେ ଭୁବନେଶ୍ୱର କଳ୍ପତରୁ ସେବାଶ୍ରମକୁ ଯିବା ଆରମ୍ଭ କଲି । ବୁଦ୍ଧ ଦେବଙ୍କ ଉପଦେଶରେ ଅଛି ଯେ, ସବୁ ଶିଷ୍ୟ ବା - କୌଣସି ଗୁରୁଙ୍କ ପାଖକୁ ଯେଉଁ ଜିଜ୍ଞାସୁ ଆସନ୍ତି ସାଧାରଣତଃ ସେମାନେ ତିନି ଶ୍ରେଣୀର ହୋଇଥାନ୍ତି । ସେଥି ମଧ୍ୟରୁ ଅଧିକାଂଶ 'ଅଧୋମୁଖ କୁମ୍ଭ' ଶ୍ରେଣୀର । ମାଠିଆକୁ ତଳ ମୁହାଁ କରି ଯେତେ ଇଚ୍ଛା ସେତେ ସମୟ ପାଣିରେ ବୁଡ଼ାଇ ରଖିଲେ ତା ଭିତରେ ଟୋପାଏ ହେଲେ ପାଣି ପଶି ନ ଥାଏ । ପାଣିରୁ କାଢ଼ି ନେବା ବେଳକୁ ତାର ଭିତରେ ପାଣିରେ ପୁରାଇବାବେଳେ ଯେପରି ଖାଲି ଥିଲା ସେହିପରି ରହିଥାଏ। ମୋ ଭଳି ସେମିତି ବହୁତ ଶିଷ୍ୟ ଆସନ୍ତି ବାବାଙ୍କ ପାଖରେ ବସନ୍ତି । ବହୁତ ଉପଦେଶ ଶୁଣନ୍ତି । ମାତ୍ର ସେ ସବୁଦ୍ୱାରା ନିଜର ଆଚରଣ ଶୁଦ୍ଧି ବା ଜୀବନ ଗଠନର ପ୍ରୟାସ ଯେଉଁ ଫମ୍ପାକୁ ସେଇଆ । ଏଇମାନେ ଅଧମ ଶ୍ରେଣୀର ଭକ୍ତ ବା ଶିଷ୍ୟ । ଆଉ ଏକ ଶ୍ରେଣୀର ଅଛନ୍ତି ଯେଉଁମାନଙ୍କୁ କୁହାଯାଏ 'ଉତ୍‌ସଙ୍ଗବଦର' । ବଦରି ବା ବଦରର ଅର୍ଥ ବରକୋଳି । ବରକୋଳି ଗଛ ତଳେ ଜଣେ ମଣିଷ ବସିଛି । ଟପାଟପ ହୋଇ ଗୋଟିକ ପରେ ଗୋଟିଏ କୋଳି ସେ ନିଜ ଦେହରେ ପଡ଼ିବାର ଅନୁଭବ କରେ ମାତ୍ର ଗଛ ମୂଳରୁ ଉଠିଗଲା ବେଳେ ସେ ଯଦି

ଗୋଟିଏ ଗାମୁଛା ବା ଲୁଗାକାନିରେ ସେ କୋଳିମାନ ବାନ୍ଧି ଘରକୁ ନ ନେଇଥାଏ ତାହାହେଲେ ସେ ଘରେ ସେମିତି ଶୂନ୍ୟ ହାତରେ ପହଞ୍ଚିବ । କୋଳିଗୁଡିକ ସେଇ ଗଛ ତଳେ ସେମିତି ପଡ଼ିଥିବ । ସେମିତି ବାବାଙ୍କ ପାଖକୁ ବହୁତ ଶିଷ୍ୟ ବା ଭକ୍ତ ଆସନ୍ତି । ଦିନ ଦିନ ବର୍ଷ ବର୍ଷ ଧରି ତାଙ୍କର ସତ୍‌ସଙ୍ଗ ସୁଖଲାଭ କରି ଥାନ୍ତି ଉପଦେଶମାନ ଶୁଣି କିଛି ହୃଦୟଙ୍ଗମ କରି ନ ଥାନ୍ତି । ନିଜର ଅନ୍ଧ ସଂସ୍କାର, ବଡ଼ ପଣିଆ, ଜିଦ, ଅହଂକାର ସେମିତି ଅବ୍ୟାହତ ଥାଏ । ଖାଲି ଗୁରୁଙ୍କ ମୁହଁରେ ଶୁଣିଥିବା କିଛି ବଛାବଛା ବୋଲି ଶିଖିଥାଆନ୍ତି । ସେଇଆ ବେଳଦେଖି ଆଉଡ଼ାନ୍ତି ଓ ତାକୁ କହି ନିଜକୁ ବଡ଼ ଜ୍ଞାନୀ, ପଣ୍ଡିତ ବୋଲି ପରିଚୟ ଦେଇ ଚାଲବାଜି ଭାବରେ ଦିନ କଟାନ୍ତି । ଏଇମାନେ ମଧ୍ୟମ ଶ୍ରେଣୀର ଭକ୍ତ । ମାତ୍ର ସେଇ ଧର୍ମାର୍ଥୀ ଶିଷ୍ୟ ବା ଭକ୍ତମାନଙ୍କ ମଧ୍ୟରେ ଏପରି କେତେକ ଥାଆନ୍ତି ଯେଉଁମାନେ କି ଯଥାର୍ଥ ଧର୍ମ ଜୀବନ ଲାଭ ପାଇଁ ଯଥୋଚିତ ଆର୍ତ୍ତି ଓ ଶରଣାଗତି ହୃଦୟରେ ଧରି ମହାପୁରୁଷଙ୍କ ପାଖକୁ ଆସିଥାନ୍ତି । ସେମାନେ ଆନ୍ତରିକ ଭାବେ ଗୁରୁଙ୍କର ଉପଦେଶ ଗ୍ରହଣ କରିଥାନ୍ତି ଓ ସେଇ ଅନୁସାରେ ନିଜ ଜୀବନ ଗଠନରେ ବ୍ରତୀ ହୁଅନ୍ତି । ସେମାନଙ୍କର ସାଧନାରେ ଶୈଥିଲ୍ୟ ନ ଥାଏ । ଜୈବ ଜୀବନରେ ଯେଉଁ ସବୁ ତ୍ରୁଟି ବା ଭ୍ରାନ୍ତ ସଂସ୍କାର ଥାଏ ତାହା ସବୁ ମନରୁ ଦୂର କରିବାକୁ ଉଦ୍ୟତ ରହନ୍ତି । ଅସମର୍ଥ ହେଲେ ଚକ୍ଷୁରୁ ଲୋତକ ଢାଳି ତାଙ୍କଠାରେ କୃପା ଭିକ୍ଷା କରନ୍ତି । ଏହି ଧରଣର ଭକ୍ତମାନଙ୍କର ଜୀବନ ଅବଶେଷରେ ଧର୍ମମୟ ଜୀବନରେ ପରିଣତ ହୋଇଥାଏ । ଗୋଟିଏ ଖାଲି ମାଠିଆକୁ ଉପର ମୁହଁ କରି ପାଣିରେ ଭରି ବୁଡ଼ାଇ ବସିଲେ ଯେମିତି ଧିରେ ଧିରେ ଏଥିରେ ଜଳଭରି ହୋଇଯାଏ ସେହିପରି ନିର୍ବିଚାର ଭାବରେ ଯେଉଁମାନେ ଗୁରୁଙ୍କଠାରେ ଆତ୍ମ ସମର୍ପଣ କରିଥାଆନ୍ତି ସେମାନେ ତାଙ୍କର ଜୀବନ ଓ ବାଣୀର ଅନୁସରଣ ଅନୁବର୍ତ୍ତନ ଓ ଅନୁଶୀଳନ କରି ନିଜକୁ ଅନ୍ୟ କରନ୍ତି । ଏହି ସର୍ବୋତ୍ତମ ଶ୍ରେଣୀର ଭକ୍ତମାନେ 'ଉର୍ଦ୍ଧ୍ୱମୁଖ କୁମ୍ଭ' ଶ୍ରେଣୀର ।

ଶ୍ରୀପାଦ ବାୟାବାବାଙ୍କ ପାଖରେ ସୌଭାଗ୍ୟକୁ ଏହି ତିନିଶ୍ରେଣୀର ଭକ୍ତ ବା ଜିଜ୍ଞାସୁମାନଙ୍କୁ ଭେଟିବାର ସୌଭାଗ୍ୟ ମିଳିଥିଲା । ତାଙ୍କର ଅବର୍ତ୍ତମାନରେ କେଉଁ ଶ୍ରେଣୀର ପ୍ରାଧାନ୍ୟ ରହିଛି କିଏ କହିବ ?



# ଉତ୍କଳୀୟ ବୈଷ୍ଣବ ପରମ୍ପରାରେ ବାୟାବାବା

ପ୍ରାୟ ଦୁଇଶ ବର୍ଷ ପଛକୁ ଦୃଷ୍ଟି ପକେଇବା ।୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶା ଜୟ କଲାପରେ ବିଖଣ୍ଡିତ ଓଡ଼ିଆ ଭାଷାଭାଷୀମାନେ ଛିନ୍ନଛତର ହୋଇ ରହିଗଲେ । ତାର ବହୁତ ଆଗରୁ ୧୭୫୮ ମସିହାରେ ପଲାଶି ଯୁଦ୍ଧ ପରେ ଇଂରେଜମାନେ ବଙ୍ଗଦେଶ ଜୟ କରି ସେଠାରେ ନିଜ ଆସ୍ଥାନ ଜମାଇଥିଲେ । ପାଶ୍ଚତ୍ୟ ଶିକ୍ଷା ପାଇବାରେ ବଙ୍ଗାଳିମାନେ ଅଗେଇଥିଲେ । ବଙ୍ଗ, ବିହାର, ଓଡ଼ିଶା ଗୋଟିଏ ଶାସନ ଅଧିନରେ ରହିଲା । ୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ ହେବା ପର୍ଯ୍ୟନ୍ତ ପୁଣି ବିହାର ଓଡ଼ିଶା ଗୋଟିଏ ପ୍ରଦେଶ ହୋଇଥିଲା । ଓଡ଼ିଶାରେ ଉଚ୍ଚ ପଦାଧୀକାରୀମାନଙ୍କ ମଧ୍ୟରୁ ଅଧିକାଂଶ ବଙ୍ଗାଳି ଓ ଅଳ୍ପ ବିହାରୀ ଥିଲେ । ସ୍ୱତନ୍ତ୍ର ଆଇନ ବଳରେ ଓଡ଼ିଶାର ବହୁତ ବଡ଼ ବଡ଼ ଜମିଦାରୀ ବଙ୍ଗାଳିମାନଙ୍କ ହାତକୁ ଚାଲି ଯାଇଥିଲା । ଛୋଟ ବଡ଼ ଅନ୍ୟାନ୍ୟ ଜମିଦାରୀ ବ୍ୟତୀତ ଉପକୂଳବର୍ତ୍ତୀ ହରିଶପୁର, ମରିଚିପୁର, ବିଶୁନପୁର, କୁଜଙ୍ଗ ପ୍ରଭୃତି ଗଡ଼ମାନ ସେଇମାନଙ୍କ ହାତରେ ଥିଲା । ଜମିଦାର ରହୁଥିଲେ କଲିକତା ବା ବଙ୍ଗଦେଶରେ ଅନ୍ୟତ୍ର । ଓଡ଼ିଶାରେ ସେମାନଙ୍କର ନାଏବମାନେ କ୍ଷମତାପତ୍ର ଧରି ପ୍ରଜାପାଳନ ନାଁରେ ଶୋଷଣ କରୁଥିଲେ । ସାଧାରଣ ପ୍ରଜାଙ୍କର ସୁଖଦୁଃଖ ସେମାନଙ୍କର ଗୁମାସ୍ତା (ତହସିଲଦାର) ମାନଙ୍କ ହାତରେ ରହୁଥିଲା । ଖଜଣା ନ ଦେଲେ ସେମାନେ କୋର୍ଟ କଚେରୀରେ ମକଦମା ଚଳାଉଥିଲେ । ଜମିବାଡ଼ି କୋରକ କରି ନେଇ ପ୍ରଜାଙ୍କୁ ସର୍ବସ୍ୱାନ୍ତ କରୁଥିଲେ । ପ୍ରଜାର ନିଜ ଜମିରେ ଗଛମାଛ ଉପରେ ଅଧିକାର ନଥିଲା । ଜମି ହସ୍ତାନ୍ତର ହେଲେ ଦାଖଲ ଖାରଜ ନାଁରେ ବହୁତ ପାଉଣା ଦେବାକୁ ପଡୁଥିଲା । ଏହା ବାଦେ ବେଠି ବେଗାରି ପାଇ ମଧ୍ୟ ପ୍ରଚୁର ଖଟଣି, ନ ହେଲେ ପ୍ରତିଦାନରେ ଅର୍ଥ ଦେବାକୁ ପଡୁଥିଲା । ବଙ୍ଗ ଦେଶାଗତ ଧର୍ମପ୍ରଚାରକ ଓ ବୈଷ୍ଣବ ମାନଙ୍କ ଦ୍ୱାରା ପ୍ରଭାବିତହୋଇଥିବା ହାକିମମାନଙ୍କ ସୁନଜର ପଡ଼ିବା ନିମିତ୍ତ ଗୁମାସ୍ତାମାନେ ସେମାନଙ୍କର ମନୋରଞ୍ଜନ ପାଇଁ ଚିତାଚଇତନ କରୁଥିଲେ । ମାଳା ଗଡ଼ାଉଥିଲେ, ନାମସଂକୀର୍ତ୍ତନ କରୁଥିଲେ । ବାବାଜି



ବୈଷ୍ଣବ ତିଳକ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି

ପୂଜ୍ୟ ଶ୍ରୀରାଧା-ରମଣ ଦେବ (ବଡ଼ବାବାଜି) ମହାଶୟ ଓଡ଼ିଶାକୁ ଆସି ଏହି ଉଚ୍ଚପଦାସୀନ କର୍ମଚାରୀମାନଙ୍କ ଗହଣରେ ରହି 'ନିତାଇ ଗୌର ରାଧେଶ୍ୟମ, ହରେକୃଷ୍ଣ ହରେ ରାମ ମନ୍ତ୍ର' ନୂତନ କରି ପ୍ରଚାର କଲେ। ଚତୁର୍ଥ ପ୍ରହରୀ, ଅଷ୍ଟ ପ୍ରହରୀ ଆଦି ସଂକୀର୍ତ୍ତନ ପ୍ରବର୍ତ୍ତନ କଲେ। ତାଙ୍କର ସୁଶିଷ୍ୟ ବାବାଜି ଶ୍ରୀ ରାମଦାସ (ବାବାଜି ମହାଶୟ) ଏହି ପରଂପରା ଅକ୍ଷୁର୍ଣ୍ଣ ରଖିଲେ । ଏହାର ସୁଫଳ ଧର୍ମଭାବାପନ୍ନ ସାଧାରଣ ଓଡ଼ିଆଙ୍କ ଉପରେ ଯଥେଷ୍ଟ ଦେଖାଗଲା ମାତ୍ର ବିଦେଶୀ ଜମିଦାରଙ୍କର ଶୋଷଣ ଆୟୁଧ କର୍ମଚାରୀଗୋଷ୍ଠି ଲୋକ ଦେଖାଣିଆ ଭାବରେ ଏହା ପାଳନ କରୁଥିଲେ ମଧ୍ୟ ଏମାନଙ୍କର ଆଚରଣ ଅନୁକରଣୀୟ ନ ଥିଲା । ପୋଇଲି ରଖିବା ନାଁରେ ବହୁତ ନିରାଶ୍ରିତ ବିଧବାଙ୍କୁ ଏମାନେ ନିଜର ଭୋଗ୍ୟ ବସ୍ତୁ କରି ରଖୁଥିଲେ । ସେମାନଙ୍କର ଉଚ୍ଚାରଣ ଓ ଆଚରଣ ମଧ୍ୟରେ ଆକାଶ ପାତାଳ ପ୍ରଭେଦ ଥିଲା । ଦୁଃଖୀଦରିଦ୍ରଙ୍କୁ ତଣ୍ଡି ଖାଇବା ରାଣ୍ଡିଖଣ୍ଡିଙ୍କ ଜମିବାଡ଼ି କରାୟତ୍ତ କରି ନିଜର ଅସଦ ଉପାୟରେ ଅର୍ଜିତ ଭୂ ସଂପତ୍ତିର ବୃଦ୍ଧି କରିବା ଏମାନଙ୍କର ମୁଖ୍ୟ ଜୀବିକା ଥିଲା । ଚିତା ଚଇତନକଟା ଏହି ଶ୍ରେଣିର ଲୋକମାନଙ୍କ ପ୍ରତି ଜନମାନସରେ ଏକ ପ୍ରଚ୍ଛନ୍ନ ବେରଭାବ ଥିଲା, ଏମାନେ ପ୍ରାୟତଃ କରଣ, ଖଣ୍ଡାୟତ ଜାତିର ଲାକ ଥିଲେ । ତେଣୁ ଧାର୍ମିକ ଚିନ୍ତାରେ ସେମାନଙ୍କର ବିଶ୍ୱସ୍ତନିୟତା ଆଦୌ ନଥିଲା କହିଲେ ଚଳେ । ସେମାନେ ବିରାଡ଼ି ବୈଷ୍ଣବ ବୋଲି ଖ୍ୟାତି ଅର୍ଜନ କଲେ । ଗାଁ ଗହଳିରେ ବିଶେଷ କରି ଶୀତଦିନେ ଗାଷକାମ ସାରି ସାଧାରଣ ଲୋକ ଏହି ଅଷ୍ଟପ୍ରହର ନାମ ସଂକୀର୍ତ୍ତନରେ ସକ୍ରିୟ ଅଂଶ ଗ୍ରହଣକରି ନିଜକୁ ଚରିତାର୍ଥ କରୁଥିଲେ । ମାତ୍ର ମୁଖ୍ୟ ଧର୍ମ ପ୍ରଚାରକମାନେ ଗ୍ରାମାଭିମୁଖି ନ ହୋଇ କେବଳ ସହରରେ ରହୁଥିବାରୁ ଏହାର ପ୍ରଭାବ କ୍ଷଣସ୍ଥାୟୀ ଥିଲା । ଓଡ଼ିଶାରେ ବୈଷ୍ଣବ ଧର୍ମର ଚଳଣି କିଛି ନୂଆ କଥା ନଥିଲା । ଷୋଡ଼ଶ ଶତାବ୍ଦୀର ପ୍ରଥମ ଦଶକରେ ଶ୍ରୀ ଚୈତନ୍ୟ ମହାପ୍ରଭୁ ଓଡ଼ିଶାରେ ପଦାର୍ପଣ କରି ନିଜ ମତବାଦ ପ୍ରଚାରକଲେ । ମାତ୍ର ଏକାଦଶ ଶତାବ୍ଦୀରେ ଦାକ୍ଷିଣାତ୍ୟରୁ ଆସି ଚୋଡ଼ଗଙ୍ଗଦେବ ଉତ୍କଳର ଶେଷ କେଶରୀ ରାଜାଙ୍କୁ ପରାସ୍ତକରି ଗଙ୍ଗବଂଶ ସ୍ଥାପନ କଲାପରଠାରୁ ଦାକ୍ଷିଣାତ୍ୟରେ ବୈଷ୍ଣବଧର୍ମର ଶ୍ରେଷ୍ଠଗୁରୁ ବିଶିଷ୍ଟାଦ୍ୱୈତବାଦର ପ୍ରବର୍ତ୍ତକ ଶ୍ରୀ ରାମାନୁଜାଚାର୍ଯ୍ୟଙ୍କର ପ୍ରଭାବ ଓଡ଼ିଶାରେ ପଡ଼ି ରହିଥିଲା । ସେ ଶ୍ରୀକ୍ଷେତ୍ରକୁ ଆଶି ପୁରୀରେ ଦୁଇଗୋଟି ମଠ ପ୍ରତିଷ୍ଠା କରିଥିଲେ । ତାମିଲନାଡୁର ଜଣେ ଅଲୱାର (ଧର୍ମଗୁରୁ) ପୁରୀ ନିକଟ ଅଲାରନାଥଠାରେ ଶ୍ରୀକୃଷ୍ଣ ବିଗ୍ରହ ପ୍ରତିଷ୍ଠା କରିଥିଲେ । ଅଣସର ସମୟରେ ଶ୍ରୀ ଚୈତନ୍ୟ ମହାପ୍ରଭୁ ଏଠାକୁ ଯାଉଥିବାରୁ ବର୍ତ୍ତମାନ ମଧ୍ୟ ସେଇ ସମୟରେ ସେଠାରେ ଜନଗହଳି ହୋଇଥାଏ । ଏହିପରି ଅନେକ ଧର୍ମଗୁରୁ ଧର୍ମ ପ୍ରଚାର ଉଦ୍ଦେଶ୍ୟରେ ଓଡ଼ିଶାକୁ ଆସିଥିଲେ। ଶ୍ରୀ ଚୈତନ୍ୟ ମହାପ୍ରଭୁ ରାଜକୀୟ ପୃଷ୍ଟପୋଷକତା ଲାଭ କଲେ । ଭାଗବତକାର ଜଗନ୍ନାଥ ଦାସଙ୍କ ପାଣ୍ଡିତ୍ୟରେ ସେ ମୁଗ୍ଧ ହୋଇ ତାଙ୍କୁ ଅତିବଡ଼ି ଉପାଧି

ପ୍ରଦାନ କଲେ । ତତ୍‌କାଳିନ ପଞ୍ଚସଖା ଜଗନ୍ନାଥ, ବଳରାମ, ଅଚ୍ୟୁତ, ଅନନ୍ତ ଓ ଯଶୋବନ୍ତଙ୍କୁ ନିଜ ଧର୍ମମାର୍ଗରେ ପ୍ରଭାବିତ କରି ସେ ନିଜ ମତବାଦର ପ୍ରସାର ଲୋଡ଼ିଲେ । ଉତ୍କଳ ବୈଷ୍ଣବ ତିଳକ ଅଧାପକ ଆର୍ତ୍ତବଲ୍ଲଭ ଓ ବିହାରର ଅଧାପକ ବିମାନ ବିହାରୀଙ୍କ ମତାନୁସାରେ ଶ୍ରୀ ଚୈତନ୍ୟଙ୍କର ଓଡ଼ିଶା ଆଗମନ ପୂର୍ବରୁ ଓଡ଼ିଶାରେ ଦୁଇଟି ବୈଷ୍ଣବୀୟ ଚିନ୍ତାଧାରା ଥିଲା । ଶ୍ରୀ ରାଧାଙ୍କୁ କେନ୍ଦ୍ରକରି ବିଶୁଦ୍ଧ ଭକ୍ତିମାର୍ଗ ଓ ବୁଦ୍ଧରୂପୀ ଜଗନ୍ନାଥଙ୍କୁ କେନ୍ଦ୍ରକରି ଜ୍ଞାନମିଶ୍ରା ଭକ୍ତିର ପ୍ରଚଳନଥିଲା । ଓଡ଼ିଶାରେ ଧର୍ମର ପ୍ରତୀକ ଶ୍ରୀ ଜଗନ୍ନାଥ ମହାପ୍ରଭୁ । ସେ ସର୍ବଧର୍ମର ସମନ୍ୱୟ, ଏହା ଜାଣି ମଧ ଶ୍ରୀ ଚୈତନ୍ୟ ତାଙ୍କଠାରେ କୃଷ୍ଣତ୍ୱ ଆରୋପ କଲେ । ବଡ଼ଦେଉଳରେ ସେହି ସମୟରୁ କୃଷ୍ଣାୟ ଗୋବିନ୍ଦାୟ ମନ୍ତ୍ରରେ ପୂଜାର ପ୍ରଚଳନ ହେଲା । ଓଡ଼ିଶାରେ ଶୁଦ୍ଧ ଭକ୍ତିମାର୍ଗର ପ୍ରସାର ଓ ପ୍ରଭାବ ଦେଖି ଉତ୍କଳୀୟ ବୈଷ୍ଣବମାନେ ଗୌଡ଼ିୟ ମାର୍ଗର କେତେକ ନୀତି ଗ୍ରହଣ କରି ନିଜ ମାର୍ଗରେ ମିଶାଇ ଦେଲେ । ପଞ୍ଚସଖା ସାହିତ୍ୟ ସୃଷ୍ଟି ମାଧମରେ ଏହାକୁ ଲୋକପ୍ରିୟ କଲେ । ଅଧାପକ ଆର୍ତ୍ତବଲ୍ଲଭ ଓଡ଼ିଶାରେ ପ୍ରଚଳିତ ବୈଷ୍ଣବ ଧର୍ମକୁ ଦୁଇ ଭାଗରେ ବିଭକ୍ତ କରି ଓଡ଼ିଶୀ ଓ ଗୌଡ଼ୀୟ ବୈଷ୍ଣବ ଆଖ୍ୟା ଦେଇଛନ୍ତି। ଜ୍ଞାନ ମିଶ୍ରା ଉପାସ୍ୟ ଶ୍ରୀ ଜଗନ୍ନାଥଙ୍କ ସ୍ଥାନରେ ଶୁଦ୍ଧା ଭକ୍ତିର ଉପାସ୍ୟ ଶ୍ରୀ କୃଷ୍ଣଙ୍କୁ ବହୁ କବି ନିଜ ରଚନା ମଧ୍ୟରେ ଲୋକପ୍ରିୟ କରାଇଲେ । ମତବାଦର ପ୍ରଚାର ବ୍ୟତୀତ ଏହା ଲୋକ ଚରିତ୍ରକୁ ପ୍ରଭାବିତ କଲା । ଏହି ଗ୍ରନ୍ଥମାନଙ୍କ ମଧ୍ୟରେ ଜଗନ୍ନାଥ ଦାସଙ୍କ ଭାଗବତ, ବଳରାମ ଦାସଙ୍କ ଦାଣ୍ଡି ରାମାୟଣ, ଅଚ୍ୟୁତାନନ୍ଦଙ୍କ ହରିବଂଶ ପ୍ରଧାନ । ବର୍ତ୍ତମାନର ଜଣେ ଅଧାପକ କହନ୍ତି ଯେ ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀରେ କବିମାନେ ମୁଖ୍ୟତଃ ଶୁଦ୍ଧାଭକ୍ତି ବା ରାଗାନୁଗା ଭକ୍ତିକୁ ଆଶ୍ରୟ କରି ସେମାନଙ୍କର କାବ୍ୟ କବିତା ରଚନା କଲେ । ସେଥିରେ ରାଧାକୃଷ୍ଣଙ୍କର ପ୍ରେମଲୀଳା ବର୍ଣ୍ଣନା କଲେ । ମାତ୍ର ୧୮ଶ ଶତାବ୍ଦୀରେ କବି ଅଭିମନ୍ୟୁ ବିଦଗ୍ଧ ଚିନ୍ତାମଣି ରଚନା କଲାବେଳକୁ ଗୌଡ଼ିୟ ଓ ଉତ୍କଳୀୟ ଦୁଇ ମତବାଦର ଏକ ମିଶ୍ରିତ ରୂପ ବୈଷ୍ଣବ ଧର୍ମ ବୋଲି ପ୍ରଚଳିତ ରହୁଥିଲା । ସେ ଜଗନ୍ନାଥଙ୍କୁ ଉପେକ୍ଷା ନ କରି ତାଙ୍କୁ ଅବତାରୀ ରୂପେ ଗ୍ରହଣ କରି ଶ୍ରୀ କୃଷ୍ଣଙ୍କୁ ତାଙ୍କର ଅଂଶ ରୂପେ ଚିହ୍ନିତ କରାଇଲେ। ଉତ୍କଳୀୟ ବୈଷ୍ଣବମାନେ କୃଷ୍ଣଲୀଳା ତରଙ୍ଗିଣୀ ସୃଷ୍ଟି କରିଗଲେ । ଉତ୍କଳୀୟ ଭାଷା, ସାହିତ୍ୟ ଓ ଧର୍ମମତ ସହିତ ସଂପୂର୍ଣ୍ଣ ଅପରିଚିତ ଥାଇ ବଂଗଦେଶୀୟ ବୈଷ୍ଣବମାନେ ଚେତନ୍ୟ ଚରିତାମୃତ ଓ ଚୈତନ୍ୟ ଭାଗବତ ବ୍ୟତୀତ ଅନ୍ୟ ଓଡ଼ିଆ ଧର୍ମଗ୍ରନ୍ଥମାନ ଜାଣୁନଥିଲେ । ତେଣୁ ଉତ୍କଳର ଅନ୍ୟ ଧର୍ମଗ୍ରନ୍ଥର ବିଷୟବସ୍ତୁ ବା ଚିନ୍ତାଧାରା ସେମାନଙ୍କୁ ଅଜ୍ଞେୟ ରହିଗଲା । ଶ୍ରୀ ମନ୍ଦିରରେ ପଠିତ ଗୀତଗୋବିନ୍ଦକୁ ନିଜର ବୋଲି ଦାବି କରିଥିଲେ ମଧ ଏହାର ପ୍ରସାର ଉଦ୍ୟମ କଲେ ନାହିଁ । ରସ କଲ୍ଲୋଳ ମଥୁରା ମଙ୍ଗଳ, ବିଦଗ୍ଧ ଚିନ୍ତାମଣି ଆଦି କୃଷ୍ଣଲୀଳାତ୍ମକ ଗ୍ରନ୍ଥର ରସାସ୍ୱାଦନରୁ ଏମାନେ କେବଳ ବଞ୍ଚିତ ନ ଥିଲେ, ସେମାନଙ୍କର ଓଡ଼ିଆ ଅନୁଗାମୀମାନେ ଏହାର

ଚର୍ଚ୍ଚାପାଇ ସୁଯୋଗ ପାଇଲେ ନାହିଁ । ଫଳରେ ଏମାନେ ଓଡ଼ିଆ ସାହିତ୍ୟ, ସଙ୍ଗୀତ ଓ ସଂସ୍କୃତିରୁ ସଂପୂର୍ଣ୍ଣ ଖାପଛଡ଼ା ଜଣା ପଡୁଥିଲେ । ଉଲ୍ଲେଖଯୋଗ୍ୟ ଦୀନକୃଷ୍ଣ, ଅଭିମନ୍ୟୁ, ଗୋପାଳକୃଷ୍ଣ, କବିସୂର୍ଯ୍ୟ, ଯଦୁମଣି ପ୍ରମୁଖ ସେମାନଙ୍କର କାବ୍ୟ କବିତାରେ ରାଧାକୃଷ୍ଣାଶ୍ରିତ କଥାବସ୍ତୁକୁ ଗ୍ରହଣ କରିଅଛନ୍ତି ।

ଶ୍ରୀ ଚୈତନ୍ୟଙ୍କ ...କ୍ତି ଓ ପ୍ରେମବାଦର ତାତ୍ତ୍ୱିକ ବାଖ୍ୟା କରି ଜଣେ ବିଶିଷ୍ଟ ଓଡ଼ିଆ ବିଶ୍ଳେଷକ କହନ୍ତି ରାଧା ଓ କୃଷ୍ଣ ଜୀବାତ୍ମା ଓ ପରମାତ୍ମା ପ୍ରତୀକ । ରାଧା ସ୍ୱରୂପିଣୀ ଜୀବାତ୍ମା କେବଳ ଶ୍ରଦ୍ଧା ବିଶ୍ୱାସ ଓ ଆତ୍ମ ନିବେଦନ ମଧ୍ୟରେ ରହି କୃଷ୍ଣରୂପୀ ପରମାତ୍ମାଙ୍କର ସାମୀପ୍ୟ ଓ ସାଯୁଜ୍ୟ ପ୍ରାପ୍ତି ହୁଏ ତର୍କରେ ନୁହେଁ, ସଂଶୟରେ ନୁହେଁ, ବିଚାରରେ ନୁହେଁ । ସ୍ୱାମୀ ବିବେକାନନ୍ଦ ଗୋପୀପ୍ରେମ ବିଷୟରେ କହନ୍ତି -

"ପ୍ରଥମେ ଏଇ କାଞ୍ଚନ, ନାମ, ଯଶ, ଏଇ କ୍ଷୁଦ୍ର ମିଥ୍ୟା ସଂସାର ପ୍ରତି ଆସକ୍ତି ଛାଡ଼ । ସେତେ୍ବେଳେ କେବଳ ଗୋପୀ ପ୍ରେମ କି ତାହା ବୁଝିପାରିବ । ପ୍ରତି ମୁହୂର୍ତ୍ତରେ ଯାହା ହୃଦୟରେ କାମ, କାଞ୍ଚନ, ଯଶୋଲିପ୍ସାର ବୁଦ୍‌ବୁଦ୍ ଉଠୁଅଛି ସେମାନେ ଗୋପୀ ପ୍ରେମ ବୁଝିବେ କ'ଣ ? କୃଷ୍ଣ ଅବତାରର ମୁଖ୍ୟ ଗୋପୀ ପ୍ରେମ ଶିକ୍ଷା । ଗୀତ ମଧ୍ୟ ସେଇ ଅପୂର୍ବ ପ୍ରେମୋନ୍ମତ୍ତ ଭାବ ନିକଟରେ ତିଷ୍ଠି ପାରିବ ନାହିଁ, କାମନା ଶୂନ୍ୟ ଶୁଦ୍ଧଚିତ୍ତ ହୋଇ ଗୋପୀମାନଙ୍କର ଅହେତୁକୀ ପ୍ରେମ ବୁଝିହୁଏ ।" କାଳକ୍ରମେ ପ୍ରେମବାଦର ଏହି ନୂତନ ସହଜିଆ ଧର୍ମ ମଧ୍ୟରେ ଯୁଗ ଯୁଗ ବ୍ୟାପୀ ନିଗୃହୀତ ଉଗ୍ର କାମନା ଓ ଦୈହିକ ବାସନା ଉଦଗତ ହୋଇ ଏହାକୁ ମନୁଷ୍ୟର ସଂଯମ ଓ ସାଧନାର ସହାୟକ ହେବା ପରିବର୍ତ୍ତେ ଅଧୋଗାମୀ କଲା । ଉତ୍କଳୀୟ ବୈଷ୍ଣବ ଧର୍ମର ପ୍ରତୀକ ଶ୍ରୀ ଜଗନ୍ନାଥଙ୍କ ଧର୍ମରେ କାୟ ସାଧନା, ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ ପ୍ରଭୃତି ଏପରି ଭାବରେ ନିହିତ ଥିଲା ଯେ ତହିଁରେ ଧର୍ମ ନାମରେ ବ୍ୟଭିଚାରର ଅବକାଶ ନ ଥିଲା । କାଳକ୍ରମେ ଯେତେବେଳେ ଏ ଦେଶରେ ଗୌଡ଼ିୟ ଧର୍ମର ସହଜିଆମାର୍ଗ ବା ରାଗାନୁଗା ଭକ୍ତି ପ୍ରଚଳନ ହେଲା ସେତେବେଳେ ପରକିୟା ବାଦକୁ କେନ୍ଦ୍ରକରି ଧର୍ମପ୍ରାଣ ବ୍ୟକ୍ତିମାନେ ତାହାର ନିନ୍ଦାବାଦ କରିଥିବେ ଏଥିରେ ସନ୍ଦେହ ନାହିଁ । ସେମାନଙ୍କୁ ଗୌଡ଼ୀୟ ମିସନର ପଣ୍ଡିତମାନେ ଖଳ ମୂର୍ଖ ଓ ଅଜ୍ଞାନୀ ବୋଲି ଧରି ନେଇ ଥାଆନ୍ତି । ସାମାଜିକ ସଚେତନାରେ ବ୍ୟଭିଚାର ଗ୍ରହଣଯୋଗ୍ୟ ହୋଇ ନପାରେ ତେଣୁ ପରକିୟା ପ୍ରୀତିକୁ ଗୋବିନ୍ଦରସଭୁକ୍ତ କରି ଶ୍ରୀକୃଷ୍ଣ ନାମରେ ପାପକ୍ଷୟ ଯେତେ, ପାପୀ ନକରି ପାରେ ପାପ ତେତେ' ନଜିର ଦେଇ ପବିତ୍ର କରିବା ପ୍ରୟାସ କେତେକ ତଥାକଥିତ ଧାର୍ମିକମାନଙ୍କୁ ଅସାମାଜିକ କାର୍ଯ୍ୟରେ ପ୍ରେରଣା ଯୋଗାଇଲା । କଟକ ଜିଲ୍ଲାର ମୁଖ୍ୟ ବଙ୍ଗଳି ଜମିଦାରମାନଙ୍କର ସିରସ୍ତାରେ କାଗଜପତ୍ର ବଙ୍ଗଳାରେ ଚାଲୁଥିଲା । ଅମଲାମାନେ ବଙ୍ଗଳା କହୁଥିଲେ । ଧର୍ମଗୁରୁମାନେ ମଧ୍ୟ

ଓଡ଼ିଶାରେ ରହି ଓଡ଼ିଆଭାଷା ଶିକ୍ଷା ନକରି ନିଜ ଭାଷାକୁ ପ୍ରଚାର ମାଧ୍ୟମ କରିବାରେ ଲାଗିଲେ । ପାଶ୍ଚାତ୍ୟ ଶିକ୍ଷା ପ୍ରଚଳନ କଲା ବେଳେ ମାକଲେଙ୍କ ଲକ୍ଷ୍ୟଥିଲା ଏହି ଶିକ୍ଷାପ୍ରାପ୍ତ ଯୁବକମାନଙ୍କର ଶରୀର ରଙ୍ଗ ମାଟିଆ ରହିବ ମାତ୍ର ରଚି ମତାମତ ଓ ନୈତିକତା ଉପରେ ସେମାନେ ଇଂରେଜମାନଙ୍କର ଏକାନ୍ତ ଅନୁଗତ ହେବେ । ସେମିତି ବଙ୍ଗୀୟ ଧର୍ମଗୁରୁମାନଙ୍କର ଅନ୍ଧ ଅନୁକରଣ କରି ଓଡ଼ିଆ ଭକ୍ତମାନେ ନିଜର ସାହିତ୍ୟ ସଙ୍ଗୀତ ଓ ସଂସ୍କୃତିକୁ ପାସୋରିବାକୁ ବସିଲେ । ଜଗନ୍ନାଥଦାସଙ୍କ ଭାଗବତ ବଦଳରେ ଶ୍ରୀ ଚୈତନ୍ୟଚରିତାମୃତ, ଓଡ଼ିଶୀ, ସଙ୍ଗୀତ ଉପରେ ବଙ୍ଗୀୟ ପରିବର୍ତ୍ତେ ମୂଳକ କୀର୍ତ୍ତନ ସେମାନଙ୍କର ରୁଚିକୁ ପ୍ରଭାବିତ କଲା । ଭାଷାର ଦୁର୍ଗତି ଦେଖି କାନ୍ତିଲାଲ ଭଟ୍ଟାଚାର୍ଯ୍ୟଙ୍କ ଭଳିଆ ପଣ୍ଡିତମୂର୍ଖ ଓଡ଼ିଆ ଏକ ସ୍ୱତନ୍ତ୍ର ଭାଷା ନୟ'ରବ ଉଠାଇବାକୁ ମଧ୍ୟ ସାହସ କଲେ । ଆଗରୁ ଜମିଦାରମାନଙ୍କର ଶୋଷଣର ପ୍ରତିକ୍ରିୟା ସ୍ୱରୂପ ଗାଁ ଗହଳିରେ ବଙ୍ଗୀୟ ଧର୍ମଗୁରୁଙ୍କ ପ୍ରତି ପ୍ରଚ୍ଛନ୍ନ କ୍ରୋଧ ଭାବ ଥିଲା । ଓଡ଼ିଆ ଧର୍ମଗ୍ରନ୍ଥ ଓ ପୁରାଣମାନଙ୍କର ପ୍ରସାର ଓ ପ୍ରଚାର ଛାପାଖାନା ଯୋଗୁ ବୃଦ୍ଧି ପାଇଲା । ତେଣୁ ଯୁବକମାନେ ବଙ୍ଗାଳି ଧର୍ମଗୁରୁ ମାନଙ୍କର ଏହା ପ୍ରତି ଅନାଦର ଭାବ ଦେଖି ବିଶେଷ କ୍ଷୁବ୍ଧ ହୋଇ ଉପଯୁକ୍ତ ସମୟ ଓ ସୁଯୋଗର ଅପେକ୍ଷା କଲେ । ସ୍ୱତନ୍ତ୍ର ପ୍ରଦେଶ ଗଠନ ଉଦ୍ୟମ ଦୃଢତର ହେଉଥାଏ ।

ଓଡ଼ିଆମାନେ ଏହି ପରି ଏକ ମାନସିକ ଦ୍ୱନ୍ଦ୍ୱ ମଧ୍ୟରେ ଥିବା ସମୟରେ ନାମାଚାର୍ଯ୍ୟ ବାୟାବାବାଙ୍କର ଆବିର୍ଭାବ ଓ ବାର୍ତ୍ତା ପ୍ରଚାର ସେମାନଙ୍କୁ ନୂତନ ଦିଗଦର୍ଶନ ଯୋଗାଇଲା । ବାବାଜି ଶ୍ରୀରାମଦାସଙ୍କ ଠାରୁ ସେ ଦୀକ୍ଷା ଗ୍ରହଣ କରିଥିଲେ ମାତ୍ର ନିଜର ଲୀଳା ମାଧ୍ୟମରେ ସେ ନିଜର ବୈଶିଷ୍ଟ୍ୟ ପ୍ରକଟିତ କଲେ । ବୈଷ୍ଣବମାନେ ସଂକୀର୍ଣ୍ଣ ମନୋଭାବାପନ୍ନ ଥାଇ କେବଳ ଶ୍ରୀଚୈତନ୍ୟଙ୍କୁ ଶ୍ରୀକୃଷ୍ଣଙ୍କର ଅବତାର ରୂପେ ଗ୍ରହଣ କରି ଅନ୍ୟ ଦେବଦେବୀମାନଙ୍କର ପୂଜା ପ୍ରାର୍ଥନାର ବିରୋଧ କରୁଥିଲେ । ଶ୍ରୀ ରାଧାରମଣ ଦେବଙ୍କର ଓଡ଼ିଶା ଆଗମନ ପୂର୍ବରୁ ବୈଷ୍ଣବମାନେ ଶ୍ରୀ ଲିଙ୍ଗରାଜ ଦେବଙ୍କର ପ୍ରସାଦ ଗ୍ରହଣ କରୁ ନ ଥିଲେ ମାତ୍ର ମନ୍ଦିରରେ ହରିହର ଉଭୟଙ୍କର ସମାବେଶ ଓ ପୂଜା ପଦ୍ଧତି ଜାଣି ବଡ଼ ବାବାଜି ମହାଶୟ ଏହି ପ୍ରସାଦ ସେବନ କରି ଅନ୍ୟମାନଙ୍କର ଗ୍ରହଣୀୟ କରାଇଲେ । ଶ୍ରୀମଦ ଭାଗବତ ଗୀତାରେ ଅଲଗା ଅଛି "ଯେ ପ୍ୟନ୍ୟ ଦେବତା ଭକ୍ତା ଯଜନ୍ତେ ଶ୍ରଦ୍ଧୟାନିତ୍ୱାଃ, ତେଽପି ମାମେବ କୌନ୍ତେୟ ଯଜନ୍ତ୍ୟ ବିଧିପୂର୍ବକମ୍: (ଅ ୯/୨୩) ମାତ୍ର ଏହା ସତ୍ତ୍ୱେ ପଞ୍ଚଦେବତା (ଗଣପତି, ନାରାୟଣ, ରୁଦ୍ର, ଅମ୍ବିକା, ଭାସ୍କର)ଙ୍କ ଉପାସନା କଲେ ବୈଷ୍ଣବମାନେ ଏଥିପ୍ରତି ବିତସ୍ପହ ଓ ଅସହିଷ୍ଣୁ ଭାବ ପୋଷଣ କରୁଥିଲେ । ବର୍ତ୍ତମାନ ମଧ୍ୟ ଅନେକ ଧର୍ମ ପ୍ରଚାରକଙ୍କର ଓଡ଼ିଶାରେ ଶିଷ୍ୟ ଅଛନ୍ତି, ଯେଉଁମାନେ ଶିବପୀଠ ଚଣ୍ଡି ବା ଦୁର୍ଗାମନ୍ଦିର ଯାଆନ୍ତି ମାତ୍ର ତାଙ୍କ ପ୍ରସାଦ ଗ୍ରହଣ କରନ୍ତି ନାହିଁ । କେତେକ

ଲୋକପ୍ରିୟ ବୈଷ୍ଣବ ମଠମନ୍ଦିରରେ ମଧ୍ୟ ଶ୍ରୀ ଚୈତନ୍ୟଙ୍କ ବ୍ୟତିତ ଅନ୍ୟ ଦେବ ଦେବୀ ବିଗ୍ରହର ସ୍ଥାନ ନାହିଁ । ଏସମସ୍ତଙ୍କୁ ନୂଆ ଦିଗଦର୍ଶନ ବାୟାବାବା ଦେଲେ । ନିଜର ପ୍ରତିଷ୍ଠିତ ମଠମାନଙ୍କରେ ସେ ସବୁ ଦେବଦେବୀଙ୍କର ପୂଜା ଆରାଧନା ଆରମ୍ଭ କଲେ । ତାଙ୍କର ଶିଷ୍ୟ ଓ ପରିପୋଷକ ମାନଙ୍କ ସମାବେଶରେ ଜଗନ୍ନାଥଦାସଙ୍କ ଭାଗବତ ଗ୍ରନ୍ଥ, ତୁଳସୀଦାସଙ୍କର ରାମଚରିତମାନସ ଓ ଶ୍ରୀ ଚୈତନ୍ୟ ଚରିତାମୃତ ସହିତ ସମାନ ଲୋକପ୍ରିୟତା ଅର୍ଜନ କଲା । ଦୈନିକ ଭାଗବତ ଗ୍ରନ୍ଥ ପାଠ ସହିତ ଏକାଦଶ ସ୍କନ୍ଦର ଗୋଟିଏ ଅଧ୍ୟାୟ ନିଶ୍ଚିତଭାବେ ପାରାୟଣ ହେଉଥିଲା ଓ ଆଲୋଚନା କରାଯାଉଥିଲା । ଆନନ୍ଦର ବିଷୟ ଏହି ସୁସ୍ଥ ପରଂପରା ବର୍ତ୍ତମାନ ମଧ୍ୟ ବଜାୟ ଅଛି । ଗୁରୁଭାଇ ବାଣୀକଣ୍ଠ ନିମାଇ ହରିଚନ୍ଦନଙ୍କ ଠାରୁ ଆରମ୍ଭ କରି ଅନେକ ପ୍ରତିଷ୍ଠିତ କଣ୍ଠ ଶିଳ୍ପୀ ଆସି ତାଙ୍କ ପାଖରେ ଓଡ଼ିଆ ଭଜନ ଜଣାଣ ଓ ଛାନ୍ଦମାନ ସୁଲଳିତ ସ୍ୱରରେ ଗାନ କରି ଏହାର ଲୋକପ୍ରିୟତା ବୃଦ୍ଧିରେ ସହାୟକ ହେଲେ । ରସକଲ୍ଲୋଳ, ମଥୁରାମଙ୍ଗଳ ଶ୍ରୀ କିଶୋର ଚନ୍ଦ୍ରାନନ୍ଦ ଚମ୍ପୁ ନିୟମିତ ଗାନ କରାଯାଉଥିଲା । ନିଜର ସଂସ୍କୃତି ସାହିତ୍ୟ ଓ ସଙ୍ଗୀତକୁ ଅଧ୍ୟୟନ କରିବାରେ ଓ ଅନ୍ୟମାନଙ୍କୁ ଆକର୍ଷିତ କରିବାରେ ଏହା ଏକାନ୍ତ ସହାୟକ ହେଲା । ପଞ୍ଚଦେବତାଙ୍କ ପୂଜା ବ୍ୟତୀତ ରଜ, ପ୍ରଥମାଷ୍ଟମୀ, ନୂଆଖାଇ ଆଦି ଖାଣ୍ଟି ଓଡ଼ିଆ ପର୍ବପର୍ବାଣୀ ସହିତ ବିଭିନ୍ନ ଓଡ଼ିଆ ପୁରାଣ ପାଠ ହେଉଥିଲା ଏହା ସହିତ ହିନ୍ଦି ସାହିତ୍ୟର ଲୋକପ୍ରିୟ ଭାଗବତୀକଥା (ଓଡ଼ିଆ ଅନୁବାଦର ଅଭାବରେ), ବଙ୍ଗଳାରେ ଭାରତର ସାଧକ ଆଦି ଗ୍ରନ୍ଥମାନ ତାଙ୍କ ଗହଣରେ ପାଠ କରାଯାଇ ଶ୍ରୋତାମାନଙ୍କୁ କର୍ତ୍ତବ୍ୟ ଓ ଧର୍ମ ମାର୍ଗରେ ନିୟନ୍ତ୍ରିତ ହେବାକୁ ଉଦ୍‌ବୁଦ୍ଧ କରୁଥିଲା । ବୈଷ୍ଣବ ଧର୍ମର କୌଣସିତାତ୍ତ୍ୱିକ ବାଖ୍ୟା ପରିବର୍ତ୍ତେ ସେ 'ଆପନି ଆଚରି ଧର୍ମ ଅପରେ ଶିଖାଏ ଉପରେ ଜୋର' ଜୋର ଦେଉଥିଲେ । ସବୁ କ୍ଷେତ୍ରରେ ଆଚରଣ ଓ ଉଚ୍ଚାରଣ ମଧ୍ୟରେ କୌଣସି ପାର୍ଥକ୍ୟ ନ ଦେଖାଇବାକୁ ସେ ଉପଦେଶ ଦେଉଥିଲେ । ଏହି ଛଳରେ ସେ କେତେକ ହାସ୍ୟରସାତ୍ମକ ଶିକ୍ଷାମୂଳକ ଗଳ୍ପ ମଧ୍ୟ ଶୁଣାଉଥିଲେ । ନିଶ୍ଚିତ ଭାବରେ ଏହା ଲୋକ ଚରିତ୍ରରେ ପ୍ରଭାବ ପକାଉଥିଲା । ବିଭିନ୍ନ ଜନ୍ମଜୟନ୍ତୀ ପର୍ବ ପାର୍ବଣରେ ସର୍ବ ଦେବାଦେବୀଙ୍କର ସମନ୍ୱୟ ପ୍ରାର୍ଥନା କରାଯାଉଥିଲା । ଯେପରି ଶିବରାତ୍ରି ଜାଗରଣ ସମୟରେ ଭଜନଥିଲା " ଜୟତୁ ଶିବାଶିବ ଜାନକୀରାମ ଗୌରିଶଙ୍କର ସୀତାରାମ୍ ବୋଲା ଯାଉଥିଲା 'ନମଃ ଶିବାୟ ବିଷ୍ଣୁ ରୂପାୟ ଶିବରୂପାୟ ବିଷ୍ଣବେ' ।

ଆଲୋଚନା କରାଯାଉଥିଲା

> ନ ଶିବେନ ବିନାଶକ୍ତି ନଶକ୍ତି ରହିତଃ ଶିବଃ
> ଉମା ଶଙ୍କରୟୋ ରୈକାଂ ଯପଶ୍ୟତି ସ ପଶ୍ୟତି

ବ୍ୟକ୍ତ ସର୍ବ ଉମା ରୂପ ମୁବ୍ୟତନ୍ତୁ ମହେଶ୍ୱରଂ
ଉମା ଶଙ୍କରୟେ ର୍ଯୋଗଃ ସ ଯୋଗୋ ବିଷ୍ଣୁ ରୁଚ୍ୟତେ

ଅର୍ଥାତ୍ ଯାହା କିଛି ବସ୍ତୁ ବା ବ୍ୟକ୍ତି ଦେଖୁଛେ ସେସବୁ ଉମାଙ୍କର ବ୍ୟକ୍ତରୂପ ମହେଶ୍ୱର ଅଛନ୍ତି ମାତ୍ର ସେ ଅବ୍ୟକ୍ତ । ଉମା ଶଙ୍କର ଏହି ଯୋଗକୁ ବିଷ୍ଣୁ କୁହାଯାଏ-(ରୁଦ୍ର ହୃଦୟ ଉପନିଷଦ) କୁହା ଯାଉଥିଲା

ଯଥା ଶିବମୟୋ ରାମରେବଂ ରାମମୟଃ ଶିବଃ ସୀକ
ଯଥା ନ୍ତରନ ପଷ୍ୟାମି ତଥା ମେ ସ୍ୱସ୍ତିରାୟୁଷି
ଯଥା ଅନ୍ତରଂ ନ ଭେଦାସ୍ୟୁ ଶିବରାଘବୟୋସ୍ତଥା ।

ଅର୍ଥାତ ରାମଚନ୍ଦ୍ର ଯେପରି ଶିବମୟ ଶିବ ମଧ୍ୟ ସେହିପରି ରାମମୟ । ମୋର ଜୀବନ ଏପରି ଭାବରେ ମଙ୍ଗଳମୟ ହେଉ ଯେପରି ମୁଁ ଭେଦଦର୍ଶନ କରି ନ ପାରେ । ଅବାନ୍ତର ଭେଦ ସମୂହର ବିନାଶ ପରି ଶିବ ଓ ରାମଙ୍କର ଭେଦଦର୍ଶନ ନଷ୍ଟ ହେଉ ।

ଓଡ଼ିଶା ସଂସ୍କୃତିର ପ୍ରତୀକ ସର୍ବଧର୍ମସମନ୍ୱୟ ଶ୍ରୀ ଜଗନ୍ନାଥଙ୍କର ଲୀଳା ଆଶ୍ରମରେ ତାଙ୍କ ସମ୍ମୁଖରେ ଆଲୋଚିତ ହେଉଥିଲା । ପ୍ରତିବର୍ଷ ସ୍ନାନ ପୂର୍ଣ୍ଣିମା ଦିନ ସେ ଯେଉଁ ସ୍ଥାନରେ ଥିଲେ ମଧ୍ୟ ଶ୍ରୀକ୍ଷେତ୍ରକୁ ବିଜେକରି ବଡ଼ଦାଣ୍ଡରେ ସ୍ନାନବେଦୀ ଉପରେ ଆସୀନ ବିଗ୍ରହମାନଙ୍କ ଉଦ୍ଦେଶ୍ୟରେ ସାଷ୍ଟାଙ୍ଗ ପ୍ରଣାମ କରୁଥିଲେ । ତାମିଲ ପୁରାଣ କୁରାଳରେ କୁହାଯାଇଛି ଯେ ଜଣେ ଅସଲ ଈଶ୍ୱରାଶ୍ରିତ ସାଧକର ପରୀକ୍ଷା ହେଲା ସେ ନିଜେ ଅର୍ଜନ କରିଥିବା ଭଗବଦଭକ୍ତି ବୀଜ ଅନ୍ୟମାନଙ୍କର ହୃଦୟରେ ରୋପଣ କରିବାକୁ ସକ୍ଷମ କି ? ଏହି ରୋପିତ ଭକ୍ତିବିଶ୍ୱାସବୀଜ କାଳକ୍ରମେ ପୁଷ୍ପିତ ଓ ପଲ୍ଲବିତ ହୋଇ ତାକୁ ଲୋଭ ଘୃଣା ଓ ଭୟରୁ ମୁକ୍ତ କରିଥାଏ । ନାମାଚାର୍ଯ୍ୟ ବାବା ଯେ ଏପରି ଜଣେ ଈଶ୍ୱରାଶ୍ରିତ ସାଧକ ଥିଲେ ଏହା ତାଙ୍କ ଉପଦେଶ ଓ ଶିକ୍ଷା ଅନୁଧ୍ୟାନ କରିଥିବା ଯେ କୌଣସି ଜିଜ୍ଞାସୁ ବ୍ୟକ୍ତି ମୁକ୍ତ କଣ୍ଠରେ ସ୍ୱୀକାର କରିବ । କଠୋପନିଷଦରେ କୁହାଯାଇଛି

ନାୟମାତ୍ମା ପ୍ରବଚନେନଲଭ୍ୟୋ
ନ ମେଧୟା ନ ବହୁନା ଶ୍ରତେନ
ଯମେବୈଷ ବୃଣୁତେ ତେନ ଲଭ୍ୟ
ସ୍ତସ୍ୟୈଷ ଆତ୍ମା ବିବୃଣୁତେ ତୁନଂସ୍ୱାମ୍ । (୧/୨/୨୩)

ବ୍ୟକ୍ତି ପରମାତ୍ମାର ଅନୁଗ୍ରହରେ ସାଧକ ହୁଏ । ଏହି ଆତ୍ମାକୁ ବହୁବେଦ ଆୟତ କରିବା ଫଳରେ ଅଥବା ଧାରଣାଶକ୍ତ ସହାୟତାରେ କିମ୍ବା ବହୁଶାସ୍ତ୍ର ଶ୍ରବଣ ଦ୍ୱାରା ଜଣାଯାଇ

ନଥାଏ । ଅର୍ଥାତ ପ୍ରବଚନର ଅତିରିକ୍ତ ଅପର ଏକ ଜିନିଷ - ଈଶ୍ୱର ଅନୁଗ୍ରହଥାଏ, ଯାହାପ୍ରତି ସେ ଅର୍ଥାତ ଅନ୍ତର୍ଯ୍ୟାମୀ ବା ଆଚାର୍ଯ୍ୟରୁପେ ଅବସ୍ଥିତ ଏହି ଆତ୍ମ ଅନୁଗ୍ରହ କରନ୍ତି ସେ ଏହା ଲାଭ କରେ । ସେହି ଅନୁଗୃହୀତ ଓ ଅଭେଦ ଅନୁସନ୍ଧାନକାରୀ ସାଧକ ସକାଶେ ଏହି ଆତ୍ମା ନିଜରୂପ ପ୍ରକଟିତ କରେ । ସେହି ଈଶ୍ୱରାଶ୍ରିତ ଶ୍ରୀପଦ ବାୟାବାବାଙ୍କର କୃପା ଆମ୍ଭମାନଙ୍କ ଉପରେ ବର୍ଷିତ ହେଉ ।

ମୋର ଉପସ୍ଥାପନାର ସାରାଂଶ, ଓଡ଼ିଆ ସାହିତ୍ୟ ସଙ୍ଗୀତ ଓ ସଂସ୍କୃତିକୁ ଓଡ଼ିଶୀ ବୈଷ୍ଣବ ଜଗତରେ ଏକ ଦୁର୍ଦ୍ଦିନରେ ରକ୍ଷା କରିବାକୁ ବାୟାବାବା ସମର୍ଥ ହୋଇଛନ୍ତି । ଜ୍ଞାନମିଶ୍ରାଭକ୍ତି ଓ ଶୁଦ୍ଧାଭକ୍ତି ଉଭୟ ମତବାଦକୁ ସେ ଯଥେଷ୍ଟ ସମ୍ମାନ ପ୍ରଦାନ କରି ଏକକୁ ଅନ୍ୟର ପରିପୂରକ ବୋଲି ଗ୍ରହଣ କରିଥିଲେ । କୌଣସି ଏକ ମତବାଦରେ କାଳକ୍ରମେ ପ୍ରବେଶ କରିଥିବା ଲୋକ ଅଗ୍ରହଣୀୟ ନୀତିକୁ ସେ ଉପେକ୍ଷା କରିଛନ୍ତି । ଅପ୍ରାକୃତ ପ୍ରେମମୂର୍ତ୍ତି ଅବତାର ରାଧା ଓ ହରିଙ୍କର ଅବ୍ୟକ୍ତ ଲୀଳାକୁ ସେ ଐଶ୍ୱରୀୟ କାର୍ଯ୍ୟ ଓ ଜନ ସାଧାରଣପକ୍ଷରେ ଅନନୁକରଣୀୟ ବୋଲି ପ୍ରଚାର କରିଛନ୍ତି । ଆଚରଣ ଆଦର୍ଶ ସ୍ଥାନୀୟ ଓ ଅନୁକରଣୀୟ ହେବାକୁ ଶିକ୍ଷା ଦେଇଛନ୍ତି । ଏହା ହିଁ ତାଙ୍କର ସମାଜକୁ ଶ୍ରେଷ୍ଠ ଦାନ ।

ଏକାନ୍ତ ବ୍ୟକ୍ତିଗତ ଦୃଷ୍ଟିଭଙ୍ଗିଥିବା ଏହି ପ୍ରବନ୍ଧରେ କାହାପ୍ରତି ଆକ୍ଷେପ କରାଯାଇନାହିଁ । ଅଜ୍ଞତାବଶତଃ ଏପରି ହୋଇଥିବାର କେହି ମତପୋଷଣ କଲେ ଅଜ୍ଞ ଲେଖକର ଦୋଷ ମାର୍ଜନା କରିବାକୁ ବିନମ୍ର ଅନୁରୋଧ ।





ତ୍ରିଭଙ୍ଗ ଠାଣୀରେ ମୋଦକହସ୍ତ
ଗଣ ବିଭୂ



ଭଗ୍ନଦନ୍ତ ମୋଦକହସ୍ତ ଗଣପତି
ପରାହାଟ



ବରଦ ମୁଦ୍ରାହସ୍ତ
ଗଦାଧର ବିଷ୍ଣୁ
ଦରଭା



ଦରଭା
ବାମନ ତ୍ରିବିକ୍ରମ ବିଷ୍ଣୁଙ୍କୁ
ବଳି ଦାନଦେବା



ଦରଭା
ଭୀମେଶ୍ୱର ମନ୍ଦିର
ବିଷ୍ଣୁ ଓ ଗରୁଡ଼



ପରାହାଟ
ଭଗବତୀଙ୍କ ପାଖ ବିଷ୍ଣୁମୂର୍ତ୍ତି



ପରାହାଟ
ଭଗବତୀଙ୍କ ଜଗମୋହନରେ
ବିଷ୍ଣୁମୂର୍ତ୍ତି
ଶ୍ରୀଦେବୀ ଭୂଦେବୀ ସହିତ



ପରାହାଟ
ମହିଷା ମର୍ଦ୍ଦିନୀ ଠାଣୀରେ
ଭଗବତୀ



୧୯୨୨ ମସିହା ନଭେମ୍ବର ପଚିଶ ତାରିଖ ଓଢ଼ଣ ଷଷ୍ଠୀ ଦିନ ପିତା କାଙ୍ଗାଳି ଚରଣ ଓ ମାତା କୋକିଳ ଦେବୀଙ୍କ ସନ୍ତାନଭାବେ ଲେଖକ ବିଷ୍ଣୁଚରଣ ମହାନ୍ତିଙ୍କ ଜନ୍ମ । ରେଭେନ୍ସା କଲେଜ୍‌ରୁ ଅର୍ଥନୀତି ଅନର୍ସ ସହିତ ବି.ଏ. ପାସ୍ କରି ୧୯୪୬ ମସିହାରେ ସବ୍‌ଡେପୁଟି କଲେକ୍ଟର ଭାବେ ନିଯୁକ୍ତ ପାଇ ପରେ ୧୯୮୦ ମସିହାରେ ଗୋପବନ୍ଧୁ ପ୍ରଶାସନ ଏକାଡେମୀର ଉପ ନିର୍ଦ୍ଦେଶକ ପଦରୁ ଅବସର । ବିନା ପାରିଶ୍ରମିକରେ ଆଇନ୍‌ସେବା ଓ ସାହିତ୍ୟ ରଚନାରେ ସମୟ ଅତିବାହିତ କରନ୍ତି ସେ । ତାଙ୍କର ଲେଖକୀୟ କୃତିଗୁଡ଼ିକ ହେଲା :- ରୋମନ୍ଥନ ଏକ ବ୍ୟର୍ଥ ଅତୀତର (୧୯୮୯), ପାରଳା ପ୍ରତିଭା (୧୯୯୧), ପାରଳାର ଗଜପତି (୨୦୦୨), ଉତ୍କଳ ମିଳନର ବିସ୍ମୃତ ନବରତ୍ନ (୨୦୦୦), ସେକାଳ ଓ ତା'ପରେ (୨୦୦୧), ହନୁମାନ ସହସ୍ରନାମର ଟୀକା (୧୯୯୩), ମହାଭାରତର ଷୋଳଟି ଗୀତାର ସାର (୨୦୦୩), ସ୍ମୃତିବାସୀ (୨୦୦୬) ଏବଂ A Magistrate speaks : nothing but the truth (2000) । ଲେଖକ ଶ୍ରୀ ମହାନ୍ତି ନିଜର ସାରସ୍ୱତ ସାଧନା ପାଇଁ ହୀରାଖଣ୍ଡ ନାଗରିକ ପରିଷଦ, ସମ୍ବଲପୁର, ଭାଗବତ ତୁଙ୍ଗି ପ୍ରଚାର ସମିତି, ଭୁବନେଶ୍ୱର, ଅଙ୍କୁର ସାହିତ୍ୟ ସଂସ୍କୃତି ସଂସଦ, ବାଲିକୁଦା, ପିପୁଲସ୍ ଆସୋସିଏସନ୍, ଜଗତ୍‌ସିଂହପୁର ଓ ଓଡ଼ିଶା ସାହିତ୍ୟ ଏକାଡେମୀ ତରଫରୁ ସମ୍ବର୍ଦ୍ଧିତ ହୋଇଛନ୍ତି ।

-ପ୍ରକାଶକ